ଭକ୍ତକବି ୰ ରାମଦାସଙ୍କ ବିରଚିତ

# ଦାର୍ଢ୍ୟତାଭକ୍ତି

## ରସାମୃତ

ପ୍ରଥମ ଓ ଦ୍ୱିତୀୟ ଭାଗ ଏକତ୍ର

ନୂତନ ମୁଦ୍ରଣ


**ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର, କଟକ-୨
ଫୋ ନଂ-୨୨୪୭୯୭

ବନ୍ଧାଇ ସହ                ମୂଲ୍ୟ—ଦଶଟଙ୍କା ମାତ୍ର

## ✻ ପ୍ରଥମ ଭାଗର ସୂଚିପତ୍ର ✻





## ବିଷୟ ❋ ଦ୍ୱିତୀୟ ଭାଗର ସୂଚିପତ୍ର ❋ ପୃଷ୍ଠାଙ୍କ

ଭକ୍ତକବି ୰ ରାମଦାସଙ୍କ ବିରଚିତ

# ଦାର୍ଢ୍ୟତାଭକ୍ତି

## ରସାମୃତ

( ପ୍ରଥମ ଭାଗ )

ନୂତନ ମୁଦ୍ରଣ



ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର, କଟକ-୨
ଫୋନ୍ ନଂ—୨୪୭୯୬

ମୂଲ୍ୟ—ଟ ୪-୦୦ ଚାରିଟଙ୍କା ମାତ୍ର

ପ୍ରଥମ ଦ୍ୱିତୀୟ ଏକତ୍ର ଦଶଟଙ୍କା

# ପ୍ରଥମ ଭାଗର ସୂଚିପତ୍ର

# ମୁଖବନ୍ଧ

## 'ଭକ୍ତକବି ରାମଦାସ ଓ ଦାର୍ଢ୍ୟତାଭକ୍ତି ରସାମୃତ'

( ପ୍ରବନ୍ଧଟି ତା ୮-୪-୧୯୬୫ ରଖରେ ଢୁରି ହାଇସ୍କୁଲର ପୁରସ୍କାର ବିତରଣୀ ସଭାରେ ପଠିତ ହୋଇଥିଲା )

୧୭୦୦ ଖ୍ରୀଷ୍ଟାବ୍ଦରେ ପ୍ରଥମାର୍ଦ୍ଧ, ଓଡ଼ିଶାର ତତ୍କାଳୀନ ବିଷମ ପରିସ୍ଥିତି କରାଳତାର ସୀମା ଲଙ୍ଘନ କରି ଚାଲିଥିଲା । ମୁସଲମାନଙ୍କର ନିର୍ମମତା ଓ ନିଷ୍ଠୁରତାର ପତନ ପରେ ପରେ ମରହଟ୍ଟାମାନଙ୍କର ସାମ୍ରାଜ୍ୟ ସୁଦୂର ଦକ୍ଷିଣ ଚକ୍ରବାଳକୁ ପ୍ରଗାଢ଼ ବିକ୍ରମରେ ଆକ୍ରମଣ କରି ପୂର୍ବ ଆଡ଼କୁ ଅଗ୍ରସର ହୋଇ ଆସିଲା । ବିଧର୍ମୀମାନଙ୍କର ଧର୍ମାନ୍ଧତା ଓଡ଼ିଶାରେ ଯେଉଁ ସାମାଜିକ ବିପ୍ଳବ ସୃଷ୍ଟି କରିଥିଲା, ସେଥିରେ ଇନ୍ଧନ ଯୋଗାଇଲା ମରହଟ୍ଟା-ମାନଙ୍କର ବର୍ବରତା । ମରହଟ୍ଟାମାନଙ୍କର ନିର୍ମମ ଅତ୍ୟାଚାରରେ ଓଡ଼ିଆ-ମାନଙ୍କଠାରେ ଏବେବି ଟୁଁହେଁ-ମୁଣ୍ଡ ଉଠାଇବାର ଶକ୍ତି ମଧ୍ୟ ନଥିଲା । ଓଡ଼ିଆଜାତି ଉଦାସୀନ ପତିତ ତଥା ସନ୍ତ୍ରସ୍ତ ଥିଲା । ଭବିଷ୍ୟତରେ ଆଶା ତମସାଚ୍ଛନ୍ନ । ଦୁର୍ଭିକ୍ଷ, ଅନାହାରରେ ବିପନ୍ନ ଓଡ଼ିଆଜାତି ସରଳତା ବେଦନାମୟ ସ୍ୱରରେ ଡାକୁଥିଲା—"କିଂ କରୋମି, କ୍ୱଗଚ୍ଛାମି, କୋ'ମେରକ୍ଷାଂ କରିଷ୍ୟତି" ।

ଠିକ ଏହି ଘନ୍ଦ୍ୱସନ୍ଧି ସମୟରେ ଭକ୍ତକବି ରାମଦାସ ଆବିର୍ଭୂତ ହୋଇଥିଲେ । ସେ ଦାର୍ଢ୍ୟତାଭକ୍ତି ରସାମୃତଦ୍ୱାରା ଓଡ଼ିଶାର ପୁର-ପଲ୍ଲୀରେ ଦୃଢ଼ ଭକ୍ତିର ସରସ ସ୍ରୋତ ପ୍ରବାହିତ କରି ସନ୍ତ୍ରସ୍ତ ଜନସମାଜକୁ ଆପ୍ଳାବିତ କଲେ । ତାଙ୍କର ଭକ୍ତି ଥିଲା—ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଏକ ଅବିଚ୍ଛେଦ୍ୟ ରଜ୍ଜୁ । ଭକ୍ତିର ଅମୋଘ କବଚ ଭକ୍ତକୁ ଆତ୍ମବିଶ୍ୱାସ ତଥା ନିର୍ଭୟତାର ଶିକ୍ଷା ଦେଲା । ଦାର୍ଢ୍ୟତାଭକ୍ତି ରସାମୃତ ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଭକ୍ତି କୋଳକୁ ଟାଣିଆଣି ଓଡ଼ିଶାର ଜଗନ୍ନାଥ ଧର୍ମର— ପତିତପାବନ ଧର୍ମର ସୁନ୍ଦର ସୁଗମ୍ୟ ମାର୍ଗର ପ୍ରଦର୍ଶକ ହେଲା ।

ମହୁରି ରାଜ୍ୟସ୍ଥିତ ପୁଣ୍ୟ ମୁକ୍ତେଶ୍ୱର ପୀଠ ଢୁରି ଗ୍ରାମରେ ସଂଗତି-ସମ୍ପନ୍ନ ଦାଶପରିବାରରେ ଭକ୍ତକବି ଭୂମିଷ୍ଠ ହୋଇଥିଲେ । କବିଙ୍କ ପିତାଙ୍କ ନାମ ଲକ୍ଷ୍ମଣ ଦାଶ । କବି ଏକଥା ଦାର୍ଢ୍ୟତାଭକ୍ତି ରସାମୃତ ପଞ୍ଚମ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି—

"ମହୁରୀ ରାଜ୍ୟ ତୁରୀ ଗ୍ରାମ
XXXXସେ ଗ୍ରାମେ ଅଟେ ମୋ ସ୍ୱଗ୍ରାମ (*) (୧)
ପିତା ମୋ ଲଛମନ ଦାଶXXXX
ମୁହିଁ ଅଟଇ ତାଙ୍କ ଶିଷ୍ୟ" ॥

ଭକ୍ତକବି ବଳରାମ ଗୋଷ୍ଠୀ ବ୍ରାହ୍ମଣ ଅଟନ୍ତି । କବିଙ୍କ ଜନ୍ମତିଥି ସମ୍ବନ୍ଧରେ କୌଣସି ପ୍ରମାଣ ମିଳୁନାହିଁ, କିନ୍ତୁ ଦାର୍ଢ୍ୟତାଭକ୍ତିର ପ୍ରଥମ ଖଣ୍ଡ ଓଡ଼ିଶାର ରାଜା ଶ୍ରୀ ବୀରକିଶୋର ଦେବଙ୍କ (୨ୟ) ୫୨ ଅଙ୍କରେ ଅର୍ଥାତ ୧୭୭୯ ଖ୍ରୀଷ୍ଟାବ୍ଦରେ ଶେଷ କରିଥିବା କଥା ଉକ୍ତ ଖଣ୍ଡର ଶେଷ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି ।

"ଶ୍ରୀ ବୀରକିଶୋର ଦେବଙ୍କ । ସମ୍ପୂର୍ଣ୍ଣ ବାୟାଳିଶୀ ଅଙ୍କ ॥
XXX XXX
ସଂପୂର୍ଣ୍ଣ ହୋଇଲା ଏ ଚରିତ । କହଇ ଲଛମନ ସୁତ ॥

---

* (୧) ବର୍ତ୍ତମାନର ପ୍ରକାଶିତ "ଦାର୍ଢ୍ୟତାଭକ୍ତି ରସାମୃତରେ "ତୁରୀଗ୍ରାମ ବଦଳରେ "ମୋର ଗ୍ରାମ" ବୋଲି ଉଲ୍ଲେଖ ଅଛି ।

"ମହୁରୀ ରାଜ୍ୟେ ମୋର ଗ୍ରାମ । ସେ ଗ୍ରାମେ ମୋହର ଆଶ୍ରମ"
(ଦାର୍ଢ୍ୟତାଭକ୍ତି ରସାମୃତ ୫୦ ଅଧ୍ୟାୟ)

କିନ୍ତୁ ପ୍ରକୃତରେ "ମୋର ଗ୍ରାମ" ସ୍ଥାନରେ "ତୁରୀ ଗ୍ରାମ" ହେବା କଥା । କାରଣ—(କ) କବି ଆତ୍ମପରିଚୟ ଦେଲାବେଳେ "ମହୁରୀ ରାଜ୍ୟେ ମୋର ଗ୍ରାମ । ସେ ଗ୍ରାମେ ମୋହର ଆଶ୍ରମ କହିବାରେ କଥାଟା ସ୍ପଷ୍ଟ ହେଉନାହିଁ । କିନ୍ତୁ ତୁରୀ ଗ୍ରାମ କହିଲେ ତାହା ଅତ୍ୟନ୍ତ ସ୍ପଷ୍ଟ ହୋଇପଡ଼େ ।

(ଖ) ୰ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ରଚିତ "ପ୍ରବନ୍ଧାବଳୀ" ଗ୍ରନ୍ଥରେ ଦାର୍ଢ୍ୟତାଭକ୍ତି ରସାମୃତ ରଚୟିତା ଭକ୍ତକବି ରାମଦାସ ତୁରୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ବୋଲି ସ୍ପଷ୍ଟ ଦର୍ଶାଇ ଅଛନ୍ତି । (ପ୍ରବନ୍ଧାବଳୀ—୧୧୪ ପୃଷ୍ଠା)

(ଗ) ସାନଖେମୁଣ୍ଡି ରାଜ୍ୟସ୍ଥ ଖୋଲଡ଼ା ଗ୍ରାମ ନିବାସୀ ଲେଖକକାର ୰ ଉଦୟନାଥ ପଟ୍ଟନାୟକଙ୍କ ଦାର୍ଢ୍ୟତାଭକ୍ତି ରସାମୃତ ତାଳପତ୍ର ପୋଥିରେ "ତୁରୀ ଗ୍ରାମ" ଲେଖି ଅଛନ୍ତି । (ତାଳପତ୍ର ପୋଥିର—୧୧୯ ପୃଷ୍ଠା)

(ଘ) ଦୁର୍ଗ୍ରାମ ନିବାସୀ ଲେଖନକାର ୬ ହରିହର ପାଣ୍ଡଙ୍କ ୧୮୧୧ ସମ୍ବତ୍ସରରେ ତାଳପତ୍ର ପୋଥି ଲିଖିତ ଉକ୍ତ ଗ୍ରନ୍ଥରେ "ମହୁରୀ ରାଜ୍ୟ ଦୁର୍ଗ୍ରାମ ସେ ଗ୍ରାମେ ଅଟେ ମୋ ବିଶ୍ରାମ" ଲେଖା ହୋଇଥିବାର ସ୍ପଷ୍ଟ ଭାବରେ ପ୍ରମାଣ ମିଳୁଅଛି । ( ତାଳପତ୍ର ପୋଥିର—୨୦୮ ପୃଷ୍ଠା )

(ଙ) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେଥିବା ତାଳପତ୍ରର ଦାର୍ଢ୍ୟତାଭକ୍ତି ରସାମୃତ (ତାଳପତ୍ର ପୋଥି ନମ୍ବର ୧୫୬)ରେ ମଧ୍ୟ "ମହୁରୀ ରାଜ୍ୟ ଦୁର୍ଗ୍ରାମ ସେ ଗ୍ରାମେ ଅଟେ ମୋ ବିଶ୍ରାମ" ବୋଲି ଲେଖା ହୋଇ-ଅଛି । ଏପରି ଲେଖା ଥିବାଠାରେ "ଦାର୍ଢ୍ୟତାଭକ୍ତିର ରସାମୃତର ପ୍ରକାଶକ । 'ମହୁରୀ ରାଜ୍ୟ ମୋର ଗ୍ରାମ, ସେ ଗ୍ରାମେ ମେହର ଆଶ୍ରମ ବୋଲି ଦେଖିଁଠୁ ପାଇଲେ ତ୍ରୁଟି ହୁଏନାହିଁ । ବୋଧହୁଏ ଲେଖନକାରଙ୍କ ତ୍ରୁଟି ବା ପାଠକର୍ତ୍ତାଙ୍କ ଭ୍ରମ ହେତୁ 'ଦୁର୍ଗ୍ରାମ ଜାଗାରେ "ମୋର" ହୋଇଯାଇଅଛି ।

ପ୍ରବାଦ ଅଛି, ବିବାହର କିଛିକାଳ ପରେ ଭକ୍ତକବି ଗୋଟିଏ ପୁତ୍ରର ଜନକ ହୋଇ ପାରିଥିଲେ ଏବଂ ପୁତ୍ରର ପଞ୍ଚମବର୍ଷ ବୟସରେ କବିଙ୍କର ପତ୍ନୀ ବିୟୋଗ ଘଟିଥିଲା । ତାପରେ କବିଙ୍କ ମନରେ ବୈରାଗ୍ୟ ଜାତ ହୋଇଥିଲା ଓ ସେ ନିଜେ ପୁତ୍ରକୁ କୌଣସି ଆତ୍ମୀୟଙ୍କଠାରେ ଛାଡ଼ି ତୀର୍ଥାଟନରେ ଯାଇଥିଲେ । ଦୀର୍ଘ ଦଶବର୍ଷକାଳ ପବିତ୍ର ଭାରତ ଭୂମିରେ ନାନାଦି ତୀର୍ଥ ଭ୍ରମଣ କରି ନିଜ ଗ୍ରାମକୁ ଫେରି ଆସିବାପରେ ବୋଧହୁଏ ଦାର୍ଢ୍ୟତାଭକ୍ତି ରସାମୃତର ପ୍ରଥମ ଖଣ୍ଡ ରଚନା କରିଥିବେ । ଜନପ୍ରବାଦକୁ ଯଦି ସତ୍ୟ ବୋଲି ଧରିଯାଏ ଏବଂ ତତ୍‌କାଳୀନ ବିବାହ ବୟସ ଯଦି ୩୦ ବର୍ଷ ହୁଏ—ତେବେ ଦାର୍ଢ୍ୟତାଭକ୍ତି ରସାମୃତ ପ୍ରଥମ ଖଣ୍ଡ ରଚନା ବେଳକୁ କବିଙ୍କ ବୟସ ୪୦ ବର୍ଷ ହୋଇଥିବା ସମ୍ଭବ । ଏହି ଦୃଷ୍ଟିରୁ କବିଙ୍କ ଜନ୍ମ ସପ୍ତଦଶ ଖ୍ରୀଷ୍ଟାବ୍ଦର ଚତୁର୍ଥ ଦଶକର ଶେଷଭାଗରେ ଅର୍ଥାତ୍ ୧୬୪୦ ଖ୍ରୀଷ୍ଟାବ୍ଦରେ ହୋଇଥିବା ଅନୁମାନ କରାଯାଏ ।

ଓଡ଼ିଶାର ବିଶିଷ୍ଟ ଐତିହାସିକ "ପ୍ରାଚୀନ ଉତ୍କଳର ଲେଖକ ୬ ଜଗବନ୍ଧୁ ସିଂହଙ୍କ ମତରେ କବି ନିଜର ଜୀବନୀ ଛନ୍ନ ଭାବରେ ଦାର୍ଢ୍ୟତା ଭକ୍ତି ରସାମୃତ ପ୍ରଥମ ଖଣ୍ଡ ସପ୍ତମ ଅଧ୍ୟାୟରେ "ଭକ୍ତ ରାମଦାସ" ଭାବରେ ବର୍ଣ୍ଣନା କରିଛନ୍ତି ( ପ୍ରାଚୀନ ଉତ୍କଳ ୧୦୯ ପୃଷ୍ଠା ଦ୍ରଷ୍ଟବ୍ୟ ) ଏବଂ ପ୍ରବନ୍ଧାବଳୀ ରଚୟିତା ୬ ଶ୍ୟାମସୁନ୍ଦର ରାଜଗୁରୁ ମଧ୍ୟ ଏକଥା ସ୍ୱୀକାର କରିଛନ୍ତି । ( ପ୍ରବନ୍ଧାବଳୀ—୧୧୪ ପୃଷ୍ଠା ଦ୍ରଷ୍ଟବ୍ୟ ) ଯଦି ଏହା ପ୍ରମାଣଯୋଗ୍ୟ ହୁଏ—

ତେବେ କବିଙ୍କ ଭକ୍ତ ପରିକାଷ୍ଠାର ଗୋଟିଏ ମାତ୍ର ଦୃଶ୍ୟ ସେଥିରେ ରହିଛି—ସମ୍ପୂର୍ଣ୍ଣ ଜୀବନୀ ନୁହେଁ । 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ମଧ୍ୟ ଅନ୍ୟାନ୍ୟ ଭକ୍ତମାନଙ୍କ ଜୀବନର ସଂକ୍ଷିପ୍ତ ଘଟଣା ଗୁଡ଼ିକର ବର୍ଣ୍ଣନା ରହିଛି । ଉକ୍ତ ବର୍ଣ୍ଣନାରୁ ଏତିକି ଜଣାଯାଏ, କବି ଓ କବିପତ୍ନୀ ବଡ଼ ଅତିଥିପରାୟଣ ଥିଲେ । ଅତିଥି ଦେବତାଙ୍କ ସେବା କରିବାରେ ସେ ତାଙ୍କର ସମସ୍ତ ସମ୍ପତ୍ତି ଶେଷ କରିଦେଇଥିଲେ । ବର୍ତ୍ତମାନ ଏ ଅଞ୍ଚଳରେ ଗୋଟିଏ ପ୍ରବାଦ ଅଛି—

"ପିଠିକି କନା ନାହିଁ ରାମଦାସ
ପେଟକୁ ପେଜ ନାହିଁ ରାମଦାସ" ॥

ବୋଧହୁଏ ରାମଦାସଙ୍କ ତତ୍‌କାଳୀନ ଗରିବ ଅବସ୍ଥା ଉପରେ ଆକ୍ଷେପ କରି ଏହି ପ୍ରବାଦଟି ଚଳି ଆସୁଛି ।

କବିଙ୍କ ବଂଶଧରମାନଙ୍କଠାରୁ ଶୁଣାଯାଏ ଯେ, ସୁବର୍ଣ୍ଣପୁର ମଠର ମହନ୍ତ କବିଙ୍କ ବିଦ୍ୟାଗୁରୁ ଓ ଦୀକ୍ଷାଗୁରୁ ଥିଲେ । କବିଙ୍କ ଗୁରୁଙ୍କ ନାମ ଗଦାଧର ଦାସ ବୋଲି କବି ପ୍ରମାଣ କରିଛନ୍ତି ।

"ଶ୍ରୀଗୁରୁ ଗଦାଧର ଦାସ
ସେ ପାଦ ପଦ୍ମେ ମୋର ଦଶ" ॥ (ଦା: ଭ: ର: ମୃ:)

ସୁବର୍ଣ୍ଣପୁର ମଠ ରାମାନନ୍ଦ ସଂପ୍ରଦାୟ ଅନ୍ତର୍ଭୁକ୍ତ । ତେଣୁ କବି ରାମାନନ୍ଦ ସମ୍ପ୍ରଦାୟୀ ଥିଲେ । ବର୍ତ୍ତମାନ ମଧ୍ୟ କବିଙ୍କ ବଂଶଧରମାନେ ରାମାନନ୍ଦୀ ଅଟନ୍ତି ।

ଦାର୍ଢ୍ୟତାଭକ୍ତି ରସାମୃତ ପ୍ରଥମ ଖଣ୍ଡ ରଚନାର ୩୨ ବର୍ଷ ପରେ ଦ୍ୱିତୀୟ ଖଣ୍ଡ ରଚନା କରିଥିବା କଥା କବି ଉଲ୍ଲେଖ କରିଛନ୍ତି—

"ତହୁଁ ବତିଶ ସମ୍ବତ୍ସର ।
ଉତ୍ତାରୁ ସାଧୁମାନଙ୍କର ॥
କୃପାରୁ ପୁଣି ପଞ୍ଚବିଂଶ ।
ଅଧ୍ୟାୟ ଦାର୍ଢ୍ୟଭକ୍ତି ରସ" ॥ ( ଦ: ଭ: ର: ମୃ: )

ଏବଂ ଏହା ପୂର୍ବରୁ ସେ ୨ୟ ଖଣ୍ଡ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କରେ ଶେଷ କରିଥିବା କଥା ମଧ୍ୟ ଉଲ୍ଲେଖ କରିଛନ୍ତି । କିନ୍ତୁ ବୀରକିଶୋର ଦେବଙ୍କ ୪୨ ଅଙ୍କ ଓ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କ ମଧ୍ୟରେ କେବଳ ୨୨/୨୩

ବର୍ଷ ପ୍ରଭେଦ ରହିଅଛି । ଅତଏବ ଗ୍ରନ୍ଥ ମୁଦ୍ରଣର ତ୍ରୁଟି ହେତୁରୁ "୨୩" ପରିବର୍ତ୍ତେ "୩୨" ହୋଇପାରେ ।

ଯଦି ତାହା ସତ୍ୟ ହୁଏ ତେବେ କବି ଦୀର୍ଘକାଳ ଜୀବିତ ଥିବା କଥା ଅନୁମାନ କରାଯାଇପାରେ ।

କବି ଦୀକ୍ଷାଗୁରୁ ଭାବରେ ସର୍ବତ୍ର ଆଦୃତ ହୋଇ ପାରିଥିଲେ ଏବଂ ତାଙ୍କର ଅନେକ ଶିଷ୍ୟ ଥିଲେ ବର୍ତ୍ତମାନ ମଧ୍ୟ ତାଙ୍କର ବଂଶଧରମାନେ ଦୀକ୍ଷାଗୁରୁ ଭାବରେ ସର୍ବତ୍ର ସମ୍ମାନିତ ଏବଂ ସେମାନଙ୍କର ବର୍ତ୍ତମାନ ସୁଦ୍ଧା ସହସ୍ରାଧିକ ଶିଷ୍ୟ ହେଉଛନ୍ତି ।

**କବିଙ୍କର ବଂଶାବଳୀ ନିମ୍ନରେ ଦିଆଗଲା ।**




କବି ତାଙ୍କର ଗ୍ରନ୍ଥ ରଚନା ଗ୍ରାମ ଉପକଣ୍ଠରେ ଥିବା ଶ୍ରୀ ମୁକ୍ତେଶ୍ବର ମନ୍ଦିରରେ କରିଥିବା ଜଣାଯାଏ । ଦ୍ୱିତୀୟ ଖଣ୍ଡ ୨୫ ଅଧ୍ୟାୟରେ ଲେଖିଛନ୍ତି —

"ଆଷାଢ଼ ଶୁକ୍ଳ ହରିବାସେ ।
ଶ୍ରୀ ମୁକ୍ତେଶ୍ୱରଙ୍କର ପାଶେ ॥
ସଦା ସମ୍ପୂର୍ଣ୍ଣ ଜୟ କରି ।
ରାମଚନ୍ଦ୍ରଇ ରାମହରି" ॥ ( ଦାଃ ଭଃ ରଃ ମୃଃ )

ବର୍ତ୍ତମାନ ସୁଦ୍ଧା ଏହି ଅଞ୍ଚଳରେ ଉକ୍ତ ଗ୍ରାମସ୍ଥିତ ଶ୍ରୀ ମୁକ୍ତେଶ୍ୱର ମହାଦେବ ପ୍ରସିଦ୍ଧ ଶମ୍ଭୁ ରୂପେ ପୂଜିତ ।

କବି "ଦାର୍ଢ୍ୟତା ଭକ୍ତି ରସ ମୃତ" ଓ 'ରାମ ରସାମୃତ' ନାମକ ଦୁଇଟି ଗ୍ରନ୍ଥ ରଚନା କରିଥିଲେ । ଶେଷୋକ୍ତ ଗ୍ରନ୍ଥଟି ଅପ୍ରାପ୍ୟ ହେତୁ ସେ ବିଷୟରେ ବିଶେଷ ଆଲୋଚନା କରାଯାଇ ପାରୁ ନାହିଁ । ତଥାପି ଉକ୍ତ ଗ୍ରନ୍ଥ ରଚନା ସମ୍ବନ୍ଧରେ ଏତିକି କୁହାଯାଇ ପାରେ ଯେ କବି ସୁବର୍ଣ୍ଣପୁର ମଠାଧୀଶଙ୍କ ଶିଷ୍ୟ ଥିଲେ ଏବଂ ଉକ୍ତ ମଠାଧୀଶ ତଥା ତାଙ୍କର ଗୁରୁ ଭାଇମାନେ କବି ଥିଲେ ଓ ରାମାୟଣ ବିଷୟକ ନାନାଦି ଗ୍ରନ୍ଥ ରଚନା କରିଥିଲେ । ସେମାନଙ୍କ କବିତ୍ୱରେ ଅନୁପ୍ରାଣିତ ହୋଇ କବି "ରାମ ରସାମୃତ ଗ୍ରନ୍ଥଟି" ରଚନା କରିଥିବା ସମ୍ଭବ ।

**ଦାର୍ଢ୍ୟତା କାହିଁକି ?**

ବ୍ୟାକରଣ ଗତ ଦୋଷ ଥିଲେ ସୁଦ୍ଧା କବି "ଦାର୍ଢ୍ୟତା" ଶବ୍ଦଟି କିପରି ବ୍ୟବହାର କଲେ ଏହି ପ୍ରଶ୍ନ ସ୍ୱତଃ ମନରେ ଜାଗ୍ରତ ହୁଏ । ଏ ବିଷୟରେ କେବଳ ଏତିକି କୁହାଯାଇ ପାରେ ଯେ—'ଦୃଢ଼' କିମ୍ବା ତଦର୍ଥକ କୌଣସି ପର୍ଯ୍ୟାୟ ଭୁକ୍ତ ଶବ୍ଦ ବ୍ୟବହାର ନକରି ଭକ୍ତିକୁ ଦୃଢ଼ରୁ ଦୃଢ଼ତମ ଅବସ୍ଥାକୁ ଟାଣି-ନେବା ଉଦ୍ଦେଶ୍ୟରେ ଦୃଢ଼ ପଦରେ ଦୁଇଟି ପ୍ରତ୍ୟୟ ଯୋଡ଼ି ତାକୁ ପୁଣି ବିଶେଷଣ ରୂପେ ବ୍ୟବହାର କରି ଭକ୍ତିର ଚରମ ଉତ୍କର୍ଷ ପ୍ରତିପାଦନ କରିଛନ୍ତି ।

**ମନ ଚୈତନ୍ୟ ସମ୍ବାଦ**

କୌଣସି ବିଷୟ ବିନା ଶ୍ରୋତା ଏବଂ ବିନା ବକ୍ତାରେ ପ୍ରସାର ଲାଭ କରି ପାରେ ନାହିଁ । ତେଣୁ ପ୍ରାଚୀନ ସମସ୍ତ ଗ୍ରନ୍ଥ କୌଣସି ବଶିଷ୍ଟ ଜ୍ଞାନୀଙ୍କ ଦ୍ୱାରା କୁହା ଯାଇଛି ଏବଂ ବଶିଷ୍ଟ ପୁରୁଷଙ୍କ ଦ୍ୱାରା ଶୁଣା ଯାଇଛି । ଏହି ଶ୍ରୋତା ଓ ବକ୍ତାଙ୍କ କଥୋପ କଥନକୁ 'ସମ୍ବାଦ' ବୋଲି କୁହାଯାଏ । ସେ ସମ୍ବାଦ ଗୁଡ଼ିକ ଭିତରୁ, 'ହରଗୌରୀ' 'ଶୁକ ପରୀକ୍ଷିତ', 'କୃଷ୍ଣ ଅର୍ଜୁନ', 'ମନ ଚୈତନ୍ୟ', ଏବଂ

'ନାମି ନବମୁନ' ଅତ ପ୍ରଧାନ । ପ୍ରାଚୀନ ଧର୍ମ ଗ୍ରନ୍ଥ ଗୁଡ଼ିକ ଆଲୋଚନା କଲେ ଜଣାଯାଏ, ପ୍ରାୟ ଅଧିକାଂଶ ଚକ୍ରତତ୍ତ୍ୱ ସନ୍ନିବେଶିତ—ଧର୍ମଗ୍ରନ୍ଥ ଗୁଡ଼ିକ ମନଚୈତନ୍ୟ ସମ୍ବାଦରେ କଥିତ । ମନୁଷ୍ୟ ନିଜର ଚୈତନ୍ୟ (ଜ୍ଞାନ) ଧୃତି-ମନକୁ ଉପଦେଶ ଦେବାରେ ଯେତିକ ସକ୍ଷମ, ଧର୍ମଗ୍ରନ୍ଥ ପଠନରେ ତାର ସେ କ୍ଷମତା ନାହିଁ । ଅନ୍ୟ କେତେକ ସାଧନ ପନ୍ଥୀ କବି ଚୈତନ୍ୟ (ଜ୍ଞାନ)କୁ ସଦ୍‌ଗୁରୁ ରୂପେ ବ୍ୟବହାର କରିଛନ୍ତି । ଭଗବାନ ଶ୍ରୀକୃଷ୍ଣ ମଧ୍ୟ ତାଙ୍କର ଶ୍ରେଷ୍ଠ ଜ୍ଞାନୀ ଭକ୍ତ ଉଦ୍ଧବଙ୍କୁ କହିଛନ୍ତି—

"ମନ ମୋହର ନିଜଗୁରୁ,<br>
ଉଦ୍ଧବ କେତେ ତୁ ପଗୁରୁ" । ( ଭାଗବତ )

ଓଡ଼ିଶାର ପ୍ରାୟ ସମସ୍ତ ମୌଳିକ ଧର୍ମଗ୍ରନ୍ଥ ଏହି 'ମନ ଚୈତନ୍ୟ' ସମ୍ବାଦରେ ହିଁ ଲିଖିତ, ଏବଂ ଅନୁଦିତ ଗ୍ରନ୍ଥ ଗୁଡ଼ିକ ତଥା କଥିତ ସମ୍ବାଦରେ ଆଶ୍ରୟ ନେଇଛନ୍ତି । ସେଥିପାଇଁ କବି ନିଜର ମୌଳିକ ତଥା ପ୍ରାଣୀର ମୁକ୍ତି ପାଇଁ ଉଦ୍ଦିଷ୍ଟ ଦାର୍ଢ୍ୟତା ଭକ୍ତି ରସାମୃତକୁ ଶ୍ରୀଗୁରୁ ଚୈତନ୍ୟ ଦ୍ୱାରା କୁହାଇଛନ୍ତି ଏବଂ ନିଜର 'ମନ'କୁ ଉତ୍ତମ ଶ୍ରୋତା ରୂପେ ବାଛିଛନ୍ତି ।

**ଭକ୍ତ ଏବଂ ଦାର୍ଢ୍ୟତା ଭକ୍ତି ରସାମୃତ ବର୍ଣ୍ଣିତ ଭକ୍ତ ଗଣ :—**

ପରମେଶ୍ୱର ବିଷୟକ ଅନୁରାଗକୁ ଭକ୍ତି କୁହାଯାଏ । ସେହି ଅନୁରାଗକୁ ଭକ୍ତ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦ ସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ, ଏବଂ ଆତ୍ମ ନିବେଦନ ପ୍ରଭୃତି ବିବିଧ ଶାରୀରିକ, ବାଚିକ ଏବଂ ମାନସିକ କ୍ରିୟା ଦ୍ୱାରା ଚରିତାର୍ଥ କରିଥାଏ । ଉପରୋକ୍ତ କ୍ରିୟା ଅନୁସାରେ ଭକ୍ତିକୁ ନଅ ଭାଗରେ ବିଭକ୍ତ କରାଯାଇଛି । ଏହି ବିଭାଗ ଅନ୍ତର୍ଭୁକ୍ତ ଏକାଧିକ ଭକ୍ତଙ୍କର ବର୍ଣ୍ଣନା ପୁରାଣ ମାନଙ୍କରରେ ରହିଛି । କିନ୍ତୁ 'ଦାର୍ଢ୍ୟତା ଭକ୍ତି ରସାମୃତ' ପାଇଁ କବି ପୁରାଣରୁ କୌଣସି ଆଖ୍ୟାୟିକା ଗ୍ରହଣ କରି ନାହାନ୍ତି । ଯେଉଁ ତିନୋଟି ବ୍ୟକ୍ତିଙ୍କ ଚରିତ ପୁରାଣରୁ କରାଯାଇଛି ସେହି ତିନିଜଣ ହେଉଛନ୍ତି ରାଜ ପୁରୁଷ (ବଳୀ, କର୍ଣ୍ଣ ଓ ହରିଶ୍ଚନ୍ଦ୍ର ) ଏମାନଙ୍କୁ ଦାନବୀର ହିସାବରେ ସ୍ଥାନ ଦିଆଯାଇଛି । ଭକ୍ତ ତିନିଜଣ-ଙ୍କର ଅପରିସୀମ ଦାନରେ ଅଭିଭୂତ ହୋଇ ଭଗବାନ ସେମାନଙ୍କର ଦ୍ୱାରସ୍ଥ ହୋଇଛନ୍ତି । ଏହି ତିନିଜଣଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ଏ ଯୁଗର । ଗ୍ରନ୍ଥ ବର୍ଣ୍ଣିତ ଭକ୍ତମାନଙ୍କ ମଧ୍ୟରୁ ବ୍ରାହ୍ମଣ ୧୯ ଜଣ, କ୍ଷତ୍ରିୟ ୧୧ ଜଣ ବୈଶ୍ୟ ୭ଜଣ ଓ ଶୂଦ୍ର ତଥା ଅନ୍ୟ ଧର୍ମ୍ମ ଜାତିର ୧୦ ଜଣ । ଏମାନେ କେହି ହେଲେ ଭକ୍ତିର ତତ୍ତ୍ୱ ଜାଣି ନାହାନ୍ତି—ସମସ୍ତେ ନିଜ ନିଜ ଭକ୍ତିର ଦୃଢ଼ତା ବଳରେ

ଭଗବାନଙ୍କ ବୈକୁଣ୍ଠରୁ ଧଣିଆଣି ସେମାନଙ୍କ ଜୀର୍ଣ୍ଣ କୁଟୀରର ଦ୍ୱାରସ୍ଥ କରାଇ ପାରିଛନ୍ତି । ସବୁଠି ଗୋଟିଏ କଥା—ଦୃଢ଼ତା ବଳରେ ମୂଢ଼ମାନେ ତରି ଯାଇଛନ୍ତି ।

**ଏହାର ଆବଶ୍ୟକତା :—**

କବି ଥିଲେ ସାଧାରଣ ସମାଜର ପିଛାଗୁରୁ । ହିନ୍ଦୁଧର୍ମରେ ଯେଉଁ ମାର୍ଗ ଅନୁସରଣ କରି ଲୋକମାନେ ମନ୍ତ୍ର ଗ୍ରହଣ କରନ୍ତି—ତାହା କବିଙ୍କୁ ଯଥେଷ୍ଟ ବୋଧ ହୋଇ ନଥିଲା । ନୂଆ ଲୁଗା ପିନ୍ଧି ଗୁରୁ ଶିଷ୍ୟର କାନରେ ଧୀରେ ଧୀରେ ଯାହା କହି ଦିଅନ୍ତି—ତାହା ଶିଷ୍ୟର ଇହକାଳ ଓ ପରକାଳରେ ମୁକ୍ତି ବିଧାନ କରିଦିଏ ବୋଲି କବିଙ୍କର ବିଶ୍ୱାସ ନଥିଲା । ତେଣୁ ସେ ଶିଷ୍ୟମାନଙ୍କୁ ଦୃଢ଼ତାର ଶିକ୍ଷା ଦେଲେ । ତା'ପରେ ବୋଧହୁଏ 'ଦାର୍ଢ୍ୟତା ଭକ୍ତିର ଜନ୍ମ' ପୂର୍ବରୁ କୁହାଯାଇଛି—ଓଡ଼ିଶାର ତତ୍‌କାଳୀନ ରାଜନୈତିକ ଓ ସାମାଜିକ ପରିସ୍ଥିତି ଜନତାକୁ ଭୀତତ୍ରସ୍ତ କରିଦେଇଥିଲା । ଅତଏବ ସେପରି ପରିସ୍ଥିତିରେ ସାଧାରଣ ଜନତାଠାରେ ଜ୍ଞାନ ଭକ୍ତିର ବ୍ୟାଖ୍ୟା ବୁଝିବାଭଳି ବୁଦ୍ଧି କିମ୍ବା ପ୍ରେମ ଭକ୍ତିରୁ ରସ ଆସ୍ୱାଦନ କରିବାଭଳି ହୃଦୟର ଅଭାବ ଥିଲା । ତେଣୁ କବି ଭୀତମାନବ ହୃଦୟରେ ଦମ୍ଭ ଓ ସାହସର ସଞ୍ଚାର ଲାଗି ଲେଖନୀ ଚାଳନା କଲେ । ଏଥିରେ ଶବ୍ଦର ଛଟା ନାହିଁ—ବର୍ଣ୍ଣନାର ଆଡ଼ମ୍ବର ନାହିଁ, ଅଛି କେବଳ ସହଜ ଓ ସରଳ ଭାଷାରେ ଶ୍ରେଷ୍ଠ ପ୍ରାଣର ଶ୍ରେଷ୍ଠ କଥା ଗୁଡ଼ିକର ବର୍ଣ୍ଣନା । ଭକ୍ତର ନିଷ୍କପଟ ହୃଦୟରେ ଦୃଢ଼ତାର ସହିତ ଆତ୍ମନିବେଦନ ତଥା ଭଗବାନଙ୍କ ଅସୀମକୃପାକୁ ମାନି ନେଇଥିବା ନର, ନାରୀ ସମାଜରେ 'ଦାର୍ଢ୍ୟତାଭକ୍ତି' ଉପରୋକ୍ତ ବୈଶିଷ୍ଟ୍ୟ ଯୋଗୁଁ ସୁଦୃଢ଼ ଆସନ ଜମାଇ ପାରିଛି ।

**ନାମର ମହିମା**

ନାମର ମହିମା ଏବଂ ନାମ ସ୍ମରଣରେ ଅପୂର୍ବ ସୁଖପ୍ରାପ୍ତି ବିଷୟରେ ଶ୍ରୀମଦ୍‌ଭାଗବତ ଶତ ମୁଖର ହୋଇ ଉଠିଛି । ଭକ୍ତକବି ରାମଦାସ ମଧ୍ୟ ରୂପକ ଛଳରେ ଭବରୋଗକୁ ଭଗବାନ ନାମ କିପରି ଅମର ମହୌଷଧିତା'ର ସୁନ୍ଦର ବର୍ଣ୍ଣନା କରିଛନ୍ତି ଏଠାରେ ତାହାର ପୁନରୋଲ୍ଲେଖ କରାଗଲା ।

''ଆବର କହୁଅଛି ତୋତେ । ସଂସାରେ ବ୍ୟାଧି ଅଛି ଯେତେ ॥
ତହିଁର ଉପାୟ ଯେ ଅଛି । ତାହା ତୋ ଆଗରେ କହୁଛି ॥

ସକଳ ମହୌଷଧି ମୂଳ । ଯେ ପ୍ରଭୁ ନାମ ଆଦ୍ୟ ମୂଳ ॥
ପତିତପାବନ ପିପ୍ପଳୀ । ଯେତେକ ଖାଇବାକୁ ଭଲି ॥
ଚେତେ ମାଧବ ବାଛିଧର । ଶ୍ରୀକୃଷ୍ଣ ନାମେ ଶୁଣ୍ଠି କର ॥
ଗୋବିନ୍ଦ ନାମରେ ମରିଚ । ବ୍ରଜ ବିହାରୀଙ୍କ ଖଣ୍ଡ ପାଞ୍ଚ ॥
ମୋ ଦୟାନିଧି ଦେବଦାରୁ । ଖଣ୍ଡିଏ ଆଣିବ ଚନ୍ଦ୍ରରୁ ॥
ଶ୍ରୀହରି ଅଳାଇଚ କଚ୍ଛ । ଯେନବ ଗୋଟି କେତେ ବାଛୁ ॥
ନୃସିଂହ ନାମେ ନାଗେଶ୍ୱର । ତୋଳା ପ୍ରମାଣେ ତାହା କର ॥
ଶ୍ରୀ ରଘୁନାଥ ନାମ ସାର । ରସରେ ସେ ରସ ସିନ୍ଦୂର ॥
ଯେ ପୀତାମ୍ବର ପିତା କଚ୍ଛ । ଯେନ ଏ ନବ ଦ୍ରବ୍ୟ ବାଛୁ ॥
ଶ୍ରୀ ବାସୁଦେବ କ୍ଷମା 'ଶୀଳ' । ରଖ ସମସ୍ତ ଏକ ଠୂଳ ॥
ଶ୍ରୀ ପତିଶୀଳ ଘୃଅ ଧରି । ଗୋବିନ୍ଦ ନାମେ ଗୁଣ୍ଡା କରି ॥
ଅନନ୍ତ ଅଦାରସ ରଙ୍ଗେ । ଗୋବିନ୍ଦ ଚନ୍ଦ୍ରିକା ଶ୍ରୀ ଅଙ୍ଗେ ॥
ମଧୁସୂଦନ ମଧୁ କଚ୍ଛ । ପରୀକ୍ଷା କରିବ ତହିଁକି ॥
ଶ୍ରୀରାମ ସୁମରି ପିଇବ । ଅଜର ଅମର ହୋଇବ" ॥

( ଦା: ଭ: ର: ମୃ: )

ଏହାଛଡ଼ା 'ଦାର୍ଢ୍ୟତାଭକ୍ତି ରସାମୃତ' ୧ମ ଖଣ୍ଡର ଶେଷ ଅଧ୍ୟାୟରେ କାଳ ସହିତ ଯୁକ୍ତ କରିବାପାଇଁ 'ଷଡ଼୍ଋତୁଦ୍ୟେ'ର ଯେଉଁ ଉଦାହରଣମାନ ଦେଇଛନ୍ତି ତାହା ସମସ୍ତଙ୍କର ପଠନୀୟ ।

## ଛନ୍ଦ ସୃଷ୍ଟିର ବିଶେଷତ୍ୱ

ସପ୍ତଦଶ ଶତାବ୍ଦୀର ଶେଷଆଡ଼କୁ ଓଡ଼ିଶାର ଘରେ ଘରେ 'ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ଭାଗବତ ଆଦର ସହିତ ପଠିତ ଏବଂ ଭକ୍ତିର ସହିତ ପୂଜିତ ହେଉଥିଲା । ତାଙ୍କ ଭାଗବତର ଛନ୍ଦ ଗୁଚ୍ଛଟି—ଭାଗବତବାଣୀ ନାମରେ ଖ୍ୟାତି ଅର୍ଜନ କରି ସାରିଥିଲା । ସରଳ ନବାକ୍ଷରୀ ଛନ୍ଦର ଗୀତ ଓଡ଼ିଆଙ୍କ ମନରେ ଗଭୀର ଭକ୍ତିମୂଳକ ଅନ୍ତଥୀମାସ୍ୱ ଭାବ ରାଗିର ସଞ୍ଚାର କରିପାରୁଥିଲା । ତେଣୁ ଭକ୍ତକବି ରାମଦାସ ସ୍ୱବିରଚିତ 'ଦାର୍ଢ୍ୟତାଭକ୍ତି ରସାମୃତକୁ' ସର୍ବଜନ ଆଦୃତ କରିବାଲାଗି ସେହି ଭାଗବତବାଣୀରେ ଲେଖିଥିଲେ ।

## ଦାର୍ଢ୍ୟତାଭକ୍ତିର କଳେବର ବୃଦ୍ଧି

ବର୍ତ୍ତମାନ ବଜାରରେ ମିଳୁଥିବା 'ଦାର୍ଢ୍ୟତାଭକ୍ତି ରସାମୃତ'ର ଦୁଇଟି ଭାଗରେ ୫୫ ଅଧ୍ୟାୟ ରହିଛି ।

( ପ୍ରଥମ ଭାଗ ୨୫ ଅଧ୍ୟାୟ, ୨ୟ ଭାଗ ୩୦ ଅଧ୍ୟାୟ ) କବି ୨ୟ ଭାଗର ୨୫ଶ ଅଧ୍ୟାୟରେ ଲେଖିଛନ୍ତି—

"ପ୍ରଥମ ପ୍ରବନ୍ଧ ପଚିଶ ।
ଅଧ୍ୟାରେ ହୋଇଥିଲା ଶେଷ ॥
ତହୁଁ ବରିଶ (?) ସମୁଲ୍ଲାସ ।
ଉତ୍ତାରୁ ସାଧୁମାନଙ୍କର ॥
କୃପାରୁ ପୁଣି ପଞ୍ଚବଂଶ ।
ଅଧ୍ୟାୟ ଦାର୍ଢ୍ୟ ଭକ୍ତି ରସ ॥
ଦୁଇ ପ୍ରବନ୍ଧ ମିଶିବାରେ ।
ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାୟରେ ॥ (ଦା: ଭ: ର: ମୃ: )

ଅତଏବ ଶେଷ ପାଞ୍ଚ ଅଧ୍ୟାୟ ବୋଧହୁଏ ଦ୍ୱିତୀୟ ଭାଗ 'ଦାର୍ଢ୍ୟତାଭକ୍ତି ରସାମୃତ' ସଂପୂର୍ଣ୍ଣ ହେବାର କିଛିଦିନ ପରେ କବି ରଚନା କରିଥିବେ ଅଥବା କୌଣସି ପ୍ରକାଶକ ନିଜେ ରଚନା କରି 'ରାମଦାସ'ଙ୍କ ନାମରେ ଭଣିତା କରିଥିବେ ।

ଓଡ଼ିଶାର ଜଣେ ଅବହେଳିତ ବୈଷ୍ଣବ କବିଙ୍କ ବିଷୟରେ ଯତ୍‌ସାମାନ୍ୟ ଆଲୋଚନା କରାଗଲା । ଅନ୍ଧକାରମୟ ଅତୀତରୁ କେତେକ ତଥ୍ୟ ଆହରଣ କରାଯାଇଛି—ତ୍ରୁଟି ଥାଇପାରେ, ଅତଏବ ସୁଧୀ ପାଠକମଣ୍ଡଳୀ କ୍ଷମା କରିବେ-ବୋଲି ସବିନୟ ଅନୁରୋଧ ।

ପୁରୀ
ତା ୮-୪-୧୯୭୫

ଓଁ ଶାନ୍ତି ! ଶାନ୍ତି !! ଶାନ୍ତି !!!
ଲେଖକ—ଶ୍ରୀ ସତ୍ୟରାମ ଦାସ

——*——

ଓଁ ଶାନ୍ତି ! ଶାନ୍ତି !! ଶାନ୍ତି !!!
ଲେଖକ-ଶ୍ରୀ ସୀତାରାମ ମହାନ୍ତି

# ଦାର୍ଢ୍ୟତା ଭକ୍ତି

## * ପ୍ରଥମ ଭାଗ *

## ପ୍ରଥମ ଅଧ୍ୟାୟ

### ବଳୀରାଜା ଚରିତ୍ର

ନମଇଁ ଗଉରୀ ନନ୍ଦନ । ସକଳ ବିଘ୍ନ ବିନାଶନ ॥
ଶ୍ରୀ ଚନ୍ଦ୍ରଶେଖର କୁମର । ଅଶେଷ ବିଦ୍ୟାର ଭଣ୍ଡାର ॥
ସଦା ଆନନ୍ଦ ସଦା ଯୋଗୀ । ଓଁକାର ବ୍ରହ୍ମ ଅନୁରାଗୀ ॥
ଅଶେଷ ମହିମା ତୋହର । ବ୍ରହ୍ମାଦି ସୁରେ ଅଗୋଚର ॥
ଭକତ ଆରତ ନ ସହୁ । ଚିନ୍ତି ବାଞ୍ଛିତ ଫଳ ଦେଉ ॥
ଯେ ପ୍ରାଣୀ ଆଶ୍ରେ କରେ ତୋତେ । ମୂର୍ଖ ସେ ନୋହେ କଦାଚିତେ ॥
ମୁହିଁ ପାମର ରାମଦାସ । ତୋ ପାଦପଦ୍ମେ କଲି ଆଶ ॥
ଅଶେଷ ଜନ୍ମ ଦୁର୍ବାସନା । ଖଣ୍ଡି ମୁଁ ହୋଇବି ସୁମନା ॥
ମୂର୍ଖପଣରୁ ହେବି ପାର । ହେ ଗଜାନନ କୃପାକର ॥
ଶ୍ରୀ ଦେବୀ ଶାରଦା ଚରଣେ । ଶରଣ ମାଗେ ଅନୁକ୍ଷଣେ ॥
ବୁଡି ମରୁଛି ମୂର୍ଖ ଜଳେ । ଉଦ୍ଧରି ଧରି ଜ୍ଞାନ କୂଳେ ॥
ତୋ କୃପା ରବି ଉଦେ କର । ମୋ ଅଜ୍ଞ ଅନ୍ଧକାର ହର ॥
ହେ ମାତ ପଦ୍ମପାଦେ ତୋର । ଶରଣ ନିରନ୍ତରେ ମୋର ॥
ନମସ୍ତେ ରାମ କୃଷ୍ଣହରି । ଏ ମହାମନ୍ତ୍ରଟି ସବୁରି ॥
ସକଳ ପ୍ରାଣୀ ହୃଦେ ବାସ । ଏଣୁ ଶରଣ ରାମଦାସ ॥
ତୁମ୍ଭ କୃପାରେ ଆନ୍ଧମୂଳ । ମୂକ ସେ ହୁଅଇ ବାଚାଳ ॥
କର ଚରଣ ପଙ୍ଗୁ ଯାର । ସେ ଲଙ୍ଘି ପାରେ ଗିରିବର ॥

ତେଣୁ ଶରଣ ରାମଦାସ । ପୂରାଅ ମୋର ମନ ଆଶ ॥
ମୋର ବିପତ୍ତି ଚତୁର୍ଦ୍ଦର । ବଢ଼ଇ ଅନ୍ଧକାର ॥
ତବ କୃପା କୁଠାର କରି । ଛେଦ ପକାଅ ନରହରି ॥
ତୁମ୍ଭେ ଯେ ପତିତ ପାବନ । ମୁହିଁ ଅଟଇ ପାପୀଜନ ॥
ଶରଣ ପଞ୍ଜର ହେ ଦାନା । ଭବ ଭୟକୁ ବଜ୍ରସେନା ॥
କୃପା ସମୁଦ୍ର ମହାମେରୁ । ଉଦ୍ଧର ଦୁଃଖ ଜଳଧିରୁ ॥
ଉଦ୍ଧର ନ ଉଦ୍ଧର ମୋତେ । ମାଗ କହୁଛି ତୋ ଅଗ୍ରତେ ॥
ତୁ ଯେବେ ପତିତ ଉଦ୍ଧାର । ମୋର କାହାକୁ ନାହିଁ ଡର ॥
ଅନେକ ମନ ସୁଖାନନ୍ଦେ । ପୁଚ୍ଛଇ ଚଇତନ ପାଦେ ॥
ଶୁଣ ହେ ଚଇତନ ବୀର । ପୁଚ୍ଛଇ ତୁମ୍ଭର ସ୍ଥମୁର ॥
ତୁମ୍ଭେ ବିବେକ ଚୂଡ଼ାମଣି । ଭୂତ ଭବିଷ୍ୟ ପାର ଜାଣି ॥
ଏଣୁ ପଚାରୁଅଛି ମୁହିଁ । କହ ମୋ ସଂଶୟ ଫିଟାଇ ॥
ଏହି ସଂସାର ମଧ୍ୟଗତେ । ଜନମ ଲଭୁଛନ୍ତି ଯେତେ ॥
ସ୍ଥାବର ଆଦି ଚଉଖାଣି । ଭ୍ରମୁଅଛନ୍ତି ନାନା ଯୋନି ॥
ଏହାଙ୍କ ଦୁଃଖ ସୁଖ ଯେତେ । ସକଳ ଲଗିଅଛି ମୋତେ ॥
ଏ ଚଉଖାଣି ମଧ୍ୟେ ସାର । ଦୁର୍ଲ୍ଲଭ ନର କଳେବର ॥
ଏହାଙ୍କ ଦେହମଧ୍ୟେ ଥାଇ । ମୁଁ ଯେତେ ଯନ୍ତ୍ରଣା ସହଇ ॥
କିସ କହିବ ତୁମ୍ଭଠାରେ । ତୁମ୍ଭେତ ଥାଅ ମୋ ସାଙ୍ଗରେ ॥
କରନ୍ତି ଯେତେ କର୍ମ ପ୍ରାଣୀ । ସେ ଦୁଃଖ ସୁଖର କାରଣୀ ॥
ଏଣୁ ସେ ପ୍ରାଣୀ ସୁଖ ଯେତେ । ସୂଚନ୍ତେ କହ ମୋ ଅଗ୍ରତେ ॥
କେବଣ କର୍ମ କଲେ ପ୍ରାଣୀ । ଯାତନା ନ ବାଧିବ ପୁଣି ॥
ଗୋବିନ୍ଦେ ଭକତି ଲଭିବେ । ଜନ୍ମ ମରଣ ପାସୋରିବେ ॥
ଏମନ୍ତ ଉପାୟ ଯେ କହ । ମୋ ମନୁ ସଂଶୟ ଫିଟାଅ ॥
ତା ଶୁଣି ଚଇତନ ବୀର । କହଇ ସୁମନ ଆଗର ॥
ତୁ ଯାହା ପଚାରିଲୁ ମୋତେ । କହଇ ଶୁଣ ତୋ ଅଗ୍ରତେ ॥
ଏ ବଡ଼ ଦୁର୍ଲ୍ଲଭ ଚରିତ । ମୁଁ ତାହା କହି କି ସମର୍ଥ ॥

ବ୍ରହ୍ମା ଶିବଙ୍କୁ ଅଗୋଚର । ମୁଁ ସ୍ତୁର କେତେକ ମାତର ॥
ମାତ୍ର ପୁରାଣମାନଙ୍କରେ । ଶୁଣିଛୁ ଯାହା କଣ୍ଣତରେ ॥
ତାହା ମୁଁ କରୁଛୁ ବଖାଣ । ଶୁଣ ତୁ ହୋଇ ସାବଧାନ ॥
ବ୍ରତ ତୀର୍ଥାଦି କର୍ମ ଯେତେ । ଯଜ୍ଞାଦି ତପସ୍ୟା ସଙ୍ଗତେ ॥
ସକଳ କର୍ମ ମଧ୍ୟେ ସାର । କେବଳ ନାମ ଭଜିବାର ॥
ଆବର ଶୁଣଂ ପଦ ଗୋଟି । ମନ ସଂଶୟ ଯିବ ମେଣ୍ଟି ॥
ଏ ବେଦ କଥା ମଧ୍ୟେ ସାର । ଦୃଢ଼ତା, ମୁକତି ଜୀବର ॥
ଦୃଢ଼ ନ ଥାଇ କର୍ମ ଯେତେ । ଫଳ ନ ଫଳେ କଦାଚିତେ ॥
ଏ କଥା ସର୍ବଶାସ୍ତ୍ରେ ସାର । ପଣ୍ଡିତ ଜନଙ୍କୁ ପଚାର ॥
ଶୁଣି ହୋଇଲା ମନ ତୋଷ । ପୁଛଇ ଚଇତନ ପାଶ ॥
ଏ ମର୍ତ୍ତ୍ୟପୁରେ ଦେହ ଧରି । କେ ଅବା ଦୃଢ଼ପଣ କରି ॥
ତରିଣ ଯାଇଛନ୍ତି କହ । ଶୁଣି ତା ଫିଟୁ ମୋ ସନ୍ଦେହ ॥
ତା ଶୁଣି ଚଇତନ ଧୀରେ । କହଇ ସୁମନ ଆଗରେ ॥
ଶୁଣ ସୁମନ ନୃପବର । ସତ୍ୟ ତ୍ରେତୟା ଯେ ଦ୍ୱାପର ॥
ଆବର କଳିଯୁଗ ଗତେ । ତରି ଅଛନ୍ତି ଯେତ ଯେତେ ॥
ସକଳ ଲୋକଙ୍କ ଚରିତ । କହି ମୁଁ ନୁହଇ ସମର୍ଥ ॥
ଧାତାଙ୍କୁ ନୁହଇ ଗୋଚର । ମୁଁ ପୁଣି କେତେକ ମାତର ॥
କେବଳ ଜଣେ ଜଣେ କରି । ଶୁଣ କହିବା କଥା ସ୍ମରି ॥
ସତ୍ୟ ଯୁଗରେ ଦାତାବଂଶ । ଥିଲା ନୃପତି ଗୁରୁହଂସ ॥
ନାମ ତା ବଳୀ ନୃପବର । ସପତଦ୍ୱୀପେ ସେ ଈଶ୍ୱର ॥
କେ କହୁ ତାର ଦାତାପଣ । ଦାନେ ଜିଣିଲା ସୁରଗଣ ॥
କେବଳ ଦାତା ପଣେ ତାର । ବଶ ହୋଇଲେ ତ୍ରିନପୁର ॥
ଦେଖିଣ ଦାନପଣ ତାର । ସ୍ୱର୍ଗେ କମ୍ପିଲେ ବଜ୍ରଧର ॥
ତାହା ଜାଣିଣ ଚକ୍ରଧର । ହେଲେ ବାମନ ଅବତାର ॥
ସେ ବଳୀ ରାଜାଦ୍ୱାରେ ଗଲେ । ଅପୂର୍ବ ବେଦ ଧ୍ୱନି କଲେ ॥
ତା ଜାଣି ବଳୀ ନପବର । ମିଳିଲେ ବାମନ ଛାମୁର ॥

ଦେଖି ସନ୍ତୋଷ ନୃପବସେ । ପୁଚ୍ଛିଲେ ବାମନର ପାସେ ॥
କେଉଁ ନିମନ୍ତେ ମୋର ପୁର । ବିଜୟ କଲ ଦ୍ୱିଜବର ॥
କେବଣ ଦେଶେ ତୁମ୍ଭ ଘର । କେ ତୁମ୍ଭ ଜନନୀ ପିଅର ॥
କହ ତୁମ୍ଭର ନାମ କିସ । ଶୁଣି ମୋ ମନ ହେଉ ତୋଷ ॥
ତୁମ୍ଭ ସୁନ୍ଦର ରୂପ ଦେଖି । ପିଗୁଡ଼ ନୋହେ ମୋର ଆଖି ॥
ଯେତେକ ବିପ୍ର ମୋର ପୁରେ । ଆଇଲେ ଦାନ ନିମନ୍ତରେ ॥
ଜଣେ ତୁମ୍ଭର ପ୍ରାୟେ ହୋଇ । ଦିନେ ମୋ ଦେଖିଲିତ ନାହିଁ ॥
କେଉଁ ନିମନ୍ତେ ଆସିଅଛ । ସ୍ୱରୂପ କହ ବିପ୍ରବତ୍ସ ॥
ଏ ବାଣୀ ଶୁଣି ଦ୍ୱିଜବର । କହନ୍ତି ବଚନ ମଧୁର ॥
ଶୁଣ ରାଜନ ଦ୍ୱିଜବର । ଭକ୍ତି ନଗରେ ଆମ୍ଭଘର ॥
ହରି ଭଜନ ଆମ୍ଭ ପିତା । ନାମ ମୋ ଦାମୋଦର ଉତା ॥
ମାତା ଆମ୍ଭର ସତ୍ୟବତୀ । ନାହିଁ ଆମ୍ଭର ବାଡ଼ବୃତ୍ତି ॥
ଯେବା ମହତ୍ତ୍ୱ ସତ୍ୟବାଷ୍ଟ । ଜୀବେ ଅହିଂସା ଆତ୍ମବୁଦ୍ଧି ॥
ଦୟାଳୁ ପରଲୋକ ପ୍ରାପ୍ତ । ତ୍ୟାଗ ନିର୍ମୋହ ସର୍ବଂସହ ॥
ନିର୍ଲୋଭ ନିର୍ମାୟା ଯା ଚିତ୍ତ । ଶୁଚି ପବିତ୍ର ଦୃଢ଼ବ୍ରତ ॥
କୃଷ୍ଣ ସେବାରେ ଆଗୁଁ ସାର । ନାମ ଭଜନେ ତତପର ॥
ଏମନ୍ତ ଲୋକଦ୍ୱାରେ ଯାଉଁ । ଭିକ୍ଷା କରଣ ଆମ୍ଭେ ଖାଉଁ ॥
ଦୟା ଯା ଭୁବନେ ନ ଦେଖୁଁ । ଲକ୍ଷେଯୋଜନ ସେ ଆମ୍ଭଙ୍କୁ ॥
ଏବେ ତୋହର କୀର୍ତ୍ତି ଶୁଣି । ଆଇଲୁଁ ଶୁଣ ନୃପମଣି ॥
ଚିତ୍ତ ସନ୍ତୋଷେ ଦାନ ଦେବୁ । ଜଗତେ ଯଶ ଅର୍ଜିବୁ ॥
ପ୍ରଥମ ଭିକ୍ଷା ଏ ଆମ୍ଭର । ଏଥୁ ନ ଯିବୁଁ ଆନ ଦ୍ୱାର ॥
ତାହା ଶୁଣିଣ ବଳୀରଜା । କଲା ବିପ୍ରଙ୍କ ପାଦପୂଜା ॥
ମାଗ ହୋ ବିପ୍ରଙ୍କ କୁମର । ଯେ ଇଚ୍ଛା ଅଛଇ ତୁମ୍ଭର ॥
ଧନ ରତନ ବାଡ଼ବୃତ୍ତି । ଗଜ ତୁରଙ୍ଗ ଆଦି ହସ୍ତି ॥
ବସ୍ତ୍ରାଦି ଅଳଙ୍କାର ମାନ । ଗୋରୁ ମହିଷ ମେଷ ଧେନ ॥
ରାଜ୍ୟ ପଦବୀ ଆଦି ମୋର । ଯେ ଇଚ୍ଛା ମାଗ ଦ୍ୱିଜବର ॥

ଶୁଣି ବାମନ ଦିବ୍ୟମୂର୍ତ୍ତି । ନୃପତି ଆଗରେ କହନ୍ତି ॥
ଅଧିକ ଲୋଭ ନାହିଁ ମୋର । ମାଗୁଛି ଶୁଣ ନୃପବର ॥
ଆମ୍ଭର ପାଦରେ ରାଜନ । ତ୍ରିପାଦ ଭୂମି ଦେବୁ ଦାନ ॥
ଏହା ଶୁଣିଣ ନୃପନାଥ । ସିଞ୍ଚାଡ଼ ଦେଲେ ବେନି ହସ୍ତ ॥
ତୁମ୍ଭର ବୁଦ୍ଧି ଅଟଇ ସାନ । ତେଣୁ ମାଗିଲ ଅଳ୍ପଦାନ ॥
ତୁମ୍ଭ କର୍ମରେ ଅଛି ଯାହା । ଅନ୍ୟଥା କେ କରିବ ତାହା ॥
ଏମନ୍ତ ବୋଲି ନୃପମଣି । ଶଙ୍ଖେ ଧରିଲେ ତିଳପାଣି ॥
ଧର ହେ ବ୍ରହ୍ମାଣ୍ଡ ଗୋସାଇଁ । ତ୍ରିବାର ସତ୍ୟ କଲି ମୁହିଁ ॥
ଶୁଣି ଉଠିଲେ ଦ୍ୱିଜବର । ସଙ୍କଳ୍ପ ପଢିଲେ ସତ୍ୱର ॥
ଶ୍ରୀ ହସ୍ତ ପ୍ରସାରନ୍ତେ ହରି । ଶୁକ୍ର ଉଠିଲେ ବେଗକରି ॥
ରାଜାଙ୍କୁ ଅନେକ ପ୍ରକାରେ । ଗୁପତ ବଚନେ ତିଆରେ ॥
ଦାନ ନ ଦିଅ ଏହୁ ହରି । ନଷ୍ଟେଁ ହରିବେ ତୁମ୍ଭ ଶିରୀ ॥
ରାଜାର ଗୁରୁ ସେ ଯୁକତେ । ନାସ୍ତି ଯେ କଲେ ନାନା ମତେ ॥
ଶୁଣି ବୋଇଲେ ବାଳୀରାଜା । ତୁଚ୍ଛ ମୋହର ପାଶୁ ଯା ଯା ॥
ସତ୍ୟ ନ ଭାଙ୍ଗି ବୁଦ୍ଧି ମୋର । ନିଅନ୍ତୁ ପଛେ ରାଜ୍ୟଭାର ॥
ପ୍ରାଣହିଁ ନେଉ ସେ ମୋହର । ସତ୍ୟ ମୋ ଅନ୍ୟଥା ନ କର ॥
ସତ୍ୟ ଲଙ୍ଘିବା ଫଳେ ମୁହିଁ । ନର୍କରେ ସଞ୍ଚରିବ ଯାଇଁ ॥
ଅବଶ୍ୟ ଥରେ ତ ମରିବ । ସତ୍ୟକୁ କପାଇଁ ଛାଡ଼ିବ ॥
ସେ ଯେବେ ଅଟେ ଭଗବାନ । ସୁଫଳ ହେଲା ମୋର ଦାନ ॥
ଏମନ୍ତ ବୋଲି ନୃପମଣି । ବାମନ ହସ୍ତେ ଦେଲେ ପାଣି ॥
ଦେଲି ତ୍ରିପାଦ ଭୂମିଦାନ । ତୁମ୍ଭ ଇଚ୍ଛାରେ ତୁମ୍ଭେ ଘେନ ॥
ତା ଶୁଣି ଦେବ ଶିରୀପତି । ହୋଇଲେ ତ୍ରିବିକ୍ରମ ମୂର୍ତ୍ତି ॥
ପାଦକେ ପୃଥିବୀ ବ୍ୟାପିଲେ । ଆରେକ ପାଦେ ସ୍ୱର୍ଗେ ନେଲେ ॥
ପୁଣି ବୋଇଲେ ସର୍ବଗ୍ରାହୀ । ଆର ପାଦକୁ ପୃଥ୍ୱୀ କାହିଁ ॥
ଶୁଣି ବୋଇଲେ ନୃପବର । ଆଜ୍ଞ ଚରଣ କାହିଁ ତୋର ॥
ଯେବେ ଚରଣ ଅଛି ତୋର । ପୃଥିବୀ ଅଛଇ ମୋହର ॥

ତା ଶୁଣି ତ୍ରୈଲୋକ୍ୟ ଈଶ୍ୱର । ନାଭିରୁ କାଢିଲେ ପଦ୍ମର ।
ଦେଖି ପାତାଳ ବଳୀ ଶିର । ଗୁପିଲେ ବ୍ରହ୍ମାଣ୍ଡ ଠାକୁର ।
ସେ ରାଜା ନସ୍ତଶଲ୍ଲ ବୋଲେ । ପାତାଳେ ତାକୁ ଠାବକଲେ ।
ହରି ଚରଣାମୃତ ପାଇ । ରହିଲ ଅଜ୍ରାମର ହୋଇ ॥
ଶୁଣ ସୁମନ ଏ ଚରିତ । ଦାନର ମହିମା ଏମନ୍ତ ॥
ଶ୍ରୀହରି ହେଲେ ଅନ୍ତର୍ଦ୍ଧାନ । ସୁଜନେ ଭଜ ଭଗବାନ୍ ॥
କହଇ ଧ୍ୟାନ ରାମ ଦାସ । ମୁକତି ଅଟଇ ବିଶ୍ୱାସ ।
ବାମନ ଅଭୟ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ବଳୀରାଜା ମୋକ୍ଷଣେ ନାମ ପ୍ରଥମୋଽଧ୍ୟାୟଃ ।

—*—

## ଦ୍ୱିତୀୟ ଅଧ୍ୟାୟ

## ହରିଶ୍ଚନ୍ଦ୍ର ରାଜା ଚରିତ

କହଇ ଚଇତନ ବୀର । ଶୁଣ ସୁମନ କଥାସାର ॥
ତୁ ଯେ ପଚାରୁଅଛୁ ଏତେ । ଦାନରେ ତତ୍ତ୍ୱଜ୍ଞନ୍ତ ଯେତେ ॥
କହିଲି ବଳୀ ତରିବାର । ଶୁଣ ତୁ ଏଥୁ ଅନନ୍ତର ॥
ନାମ ତାହାର ହରିଶ୍ଚନ୍ଦ୍ର । ତ୍ରେତୟା ଯୁଗରେ ନରେନ୍ଦ୍ର ॥
ସୂର୍ଯ୍ୟବଂଶର ନୃପମଣି । ଦାନପଣରେ ସେ ଅଗ୍ରଣୀ ।
ସୁନ୍ଦରପଣେ କାମଦେବ । ଦାତା ଅଂଶରେ ସଦାଶିବ ॥
ସୁଧୀର ପଣେ ମେରୁ ସମ । ବୀରପଣରେ ଦ୍ୱିତୀ ଯମ ॥
ତେଜସ୍ୱୀପଣେ ବୈଶ୍ୱାନର । ବୁଦ୍ଧିରେ କିବା ଗଣେଶ୍ୱର ।
ପଣ୍ଡିତପଣେ ବୃହସ୍ପତି । ସହିବା ପଣେ ବସୁମତି ।
ଗମ୍ଭୀର ପଣେ ପାରାବାର । ଅପାର ମହିମା ତାହାର ।
ସପ୍ତମର୍ଦ୍ୱୀପେ ଚକ୍ରବର୍ତ୍ତୀ । ଜଗତେ ବିଖ୍ୟାତ ତା କୀର୍ତ୍ତି ।
ପାଳଇ ଏକପତ୍ନୀ ବ୍ରତ । ଦଇବେ ତାର ଏକ ସୁତ ।
ସମ୍ପଦ କୁବେର ଭଣ୍ଡାର । ଦାନହିଁ ଦେବା ମୂଳ ତାର ।

ସେ ମହାରାଜା ଦାନପଣେ । ଦରିଦ୍ର ନ ରହିଲେ ଜଣେ ।
ଯେ ଯାହା ପ୍ରକାଶିଲେ ପାଇ । ନାହିଁ ବୋଲିବା ଶବ୍ଦ ନାହିଁ ।
ଦେଇ ତୋଷଇ ମନ ତାର । ଯାଚକେ ଖଣ୍ଡେ ଦୁଃଖଭାର ।
ଦେବ ଯକ୍ଷ କିନ୍ନରେ ଥାଇ । ନୃପତି ପଣେ ବହରଇ ।
ଏମନ୍ତେ କେତେ କାଳଗଲା । ତା କୀର୍ତ୍ତି ଜଗତେ ପୂରିଲା ।
ବିନା କଳଙ୍କ ଚନ୍ଦ୍ର ପ୍ରାୟ । ତା ଯଶ ଜଗତେ ଉଦୟ ।
ଏକଥା ଜାଣି ସେ ରାଜାର । ସ୍ୱର୍ଗେ କମ୍ପିଲା ବଜ୍ରଧର ।
ବିଧାତା ସମ୍ମୁଖେ କହିଲା । କି ବୁଦ୍ଧି କରିବ ବୋଇଲା ।
ଏ ହରିଶ୍ଚନ୍ଦ୍ର ଦାନପଣେ । ସ୍ୱର୍ଗେ କମ୍ପିଲେ ସୁରଗଣେ ।
ଆବର କର୍ମେ ମୋର ପୁର । କି ବୁଦ୍ଧି କହ ବେଦବର ।
ତାହା ଶୁଣିଣ ବେଦବର । ହୃଦରେ କଲେକ ବିଚାର ।
ବିଶ୍ୱାମିତ୍ରଙ୍କୁ ଡ଼କାଇଲେ । ମର୍ତ୍ତ୍ୟକୁ ଯାଅ ହେ ବୋଇଲେ ।
ହରିଶ୍ଚନ୍ଦ୍ରର ଦାନପଣ । ବୁଝିଣ ଆସ ହେ ବହନ ।
କଠାଳ କର ନାନା ମତେ । ବୁଝିବା ଦାନପଣ କେତେ ॥
ଶୁଣି ଚଳିଲେ ମୁନିବର । ପ୍ରବେଶ ହେଲେ ମର୍ତ୍ତ୍ୟପୁର ॥
ମାୟାରେ ହେଲେ ଦିବ୍ୟରୂପ । କି ବ୍ରହ୍ମଦେବତା ସ୍ୱରୂପ ॥
ରାଜାର ସିଂହଦ୍ୱାରେ ଗଲେ । ଅନେକ ଦେବ ଧ୍ୱନିକଲେ ॥
ସନ୍ତ ନପାଣ ନୃପବର । ମିଳିଲେ ମୁନିଙ୍କ ସମ୍ମୁଖ ॥
ଦେଖିଣ ପ୍ରଣମିତ ହେଲେ । ଅନେକ ପାଦପୂଜା କଲେ ॥
ଆଜ ପବିତ୍ର ମୋର ପୁର । ତୁମ୍ଭ ଦର୍ଶନେ ମୁନିବର ॥
କିମ୍ପା ମୋ ପୁରକୁ ଆଗତ । ମିଥ୍ୟା ନକରି କହ ସତ ॥
ଶୁଣି କହନ୍ତି ମହାସନ୍ତ । ସ୍ୱରୂପ ଶୁଣ ହେ ନୃପତି ॥
ଆମ୍ଭେ ଅଇଲୁ ଯଜ୍ଞ ପାଇଁ । କହୁଛୁ ସଂଶୟ ଫିଟାଇ ॥
ତୁମ୍ଭର ଯଶ କୀର୍ତ୍ତିମାନ । ପୂରିଲା ଚଉଦ ଭୁବନ ॥
ସେ ଅଷ୍ଟଦଶ ବସୁମତୀ । ବ୍ରହ୍ମ କ୍ଷେତ୍ରୀୟ ବୈଶ୍ୟଜାତି ॥
ଯଜ୍ଞ ଶୁଣିଲେ ତୋର କୀର୍ତ୍ତି । ଶୁଭଇ ଶୁଣ ହେ ନୃପତି ॥

ତେଣୁ ଅଇଲୁ ତୋର ତହିଁ । କହୁଛି ମାଗିବାର ପାଇଁ ॥ ୪୦ ॥
ଶୁଣି ବୋଇଲେ ସେ ରାଜନ । ହେ ମୁନି ଶୁଣ ମୋ ବଚନ ॥
ଯାହା ଅଛଇ ତୁମ୍ଭ ଚିତ୍ତେ । ରାଜ ଭଣ୍ଡାର ଆଦି ଯେତେ ॥
ମାଗ ହେ ସଂଶୟ ନ କର । ଅବଶ୍ୟ ଦେବି ସତ୍ୟ ମୋର ॥
ଶୁଣି କହନ୍ତି ମୁନିଇନ୍ଦ୍ର । ସ୍ୱରୂପ ଶୁଣ ହେ ନରେନ୍ଦ୍ର ॥
ଦେବାର ହୁଅ ଯେବେ ତୋର । ସ୍ୱହସ୍ତେ ତୋଡ଼ିଦିଅ ମାର ॥
ପଛେ ନସତ ହେଲେ ତୁମ୍ଭ । ଆଜ ମୁଁ ଛାଡ଼ିବଇଁ ନାହିଁ ॥
ପୁତ୍ର ଭାରିଯା ଭୁଲେ ତୋର । ପାତ୍ର ମନ୍ତ୍ରୀଙ୍କି ଯେ ପର୍ବର ॥
ଶୁଣି ହସଇ ରାଜା ଚିତ୍ତେ । କସ ମାଗିବ ଏତୁ ମୋତେ ॥
ସବୁହୁଁ ପ୍ରାଣ ପିନା ବଡ଼ । ମାଗିଲେ ଦେବି ମୋର ଦୃଢ଼ ॥
ଏମନ୍ତ ବୋଲି ନୃପମଣି । ଶଙ୍ଖେ ଧଇଲେ ତିଳ ପାଣି ॥
ମୁନିଙ୍କ ହସ୍ତେ ଦେଲେ ନେଇ । ଯେ ଇଚ୍ଛା ମାଗ ହେ ଗୋସାଇଁ ॥
ସ ବାର ସତ୍ୟ କଲି ମୁହିଁ । ଦେବି ସଂଶୟ ଏଥି ନାହିଁ ॥
ତାହା ଶୁଣିଣ ମହାମୁନି । କଲେ ସେ ମହା ଘୋରଧ୍ୱନି ॥
ସାକ୍ଷୀ ଏଥିକୁ ଭଗବାନ । ରବି ଶଶାଙ୍କ ଆଖଣ୍ଡଳ ॥
କୁବେର ବରୁଣ ସମ୍ପତେ । ସମସ୍ତେ ସାକ୍ଷୀ ଥାଅ ଏଥେ ॥
ମାଗୁଛି ଦୋଷ ନାହିଁ ମୋର । ବୋଲି ଧଇଲେ ତିଳମାର ॥
ଜଳ ପକାଇ ମୁନିବର । ବୋଇଲେ ଶୁଣ ନୃପବର ॥
ତୋ ରାଜାପଣ ମୋତେ ଦେବୁ । ଲେଙ୍ଗଡ଼ା କନାଏ ପିନ୍ଧିବୁ ॥
ପୁତ୍ର ଭାରିଯା ଯେନ ତୋର । ରାଜ୍ୟରୁ ହୋଇବୁ ବାହାର ॥
ଭୁଞ୍ଜିବ ରାଜଭୋଗ ମୁହିଁ । ଏଥେ ତୋ ଅଧିକାର ନାହିଁ ॥
ତା ଶୁଣି ନୃପତି ଆନନ୍ଦ । ମୁଖ ପ୍ରକାଶେ ପୂର୍ଣ୍ଣଚନ୍ଦ୍ର ॥
ମୁନିଙ୍କି ନୃପ ସିଂହାସନେ । ରାଜା କରାଇ ତୋଷମନେ ॥
ଆପଣେ ବାନ୍ଧିଦେଲେ ଶାଢ଼ୀ । ପୁଣି ମୁନିଙ୍କ ପାଦେ ପଡ଼ି ॥
ଯୁଡ଼ି କପାଳେ ଦେଲେ କର । ବୋଇଲା ନମେ ମୁନିବର ॥
ପାତ୍ର ମନ୍ତ୍ରୀଙ୍କି ଡକାଇଲେ । ମୁନିଙ୍କି ସମର୍ପିଣ ଦେଲେ ॥

ଆସୁଁ ତୁମ୍ଭର ଏଥୁ ରାଜା । କର ଏହାଙ୍କ ପାଦ ପୂଜା ॥
ଏମନ୍ତ ବୋଲି ନୃପବର । ବିଜୟ କଲେ ଅନ୍ତଃପୁର ॥
ବଢ଼ିବେ ବୋଲି ରାଣୀମନ । ଦୁଃଖିତ ହୋଇଣ ରାଜନ ॥
ଭିତରପୁରେ ବିଜେକଲେ । ତା ଦେଖି ଶୈବ୍ୟାରାଣୀ ବୋଲେ ॥
ମନତ କରିଅଛ ଦୁଃଖ । କିମ୍ପାଇ ଶୁଖିଅଛି ମୁଖ ॥
ବିପ୍ରଙ୍କୁ ଦେବାପାଇଁ ଦାନ । କିଅବା ନ ମିଳିଲା ଧନ ॥
ଆଜିକ ବିପତ୍ତି ପଡ଼ିଲା । ମୋତେ ତ ସନ୍ଦେହ ଲାଗିଲା ॥
ବିଳମ୍ବ ନ କରିଣ କହ । ଦେଖି ନ ସହେ ମୋର ଦେହ ॥
ତା ଦେଖି କହନ୍ତି ନୃପତି । ଶୁଣ ସୁମନେ ପ୍ରିୟବତୀ ॥
କାଲ୍ହି ଆଇଲେ ଏକମୁନି । ମୋ ଆଗେ କଲେ ବେଦଧ୍ୱନି ॥
ଦେଖି ମୋହର ତୋଷମନ । ମୁନିଙ୍କି ଯାଚିଲି ମୁଁ ଧନ ॥
ରାଜ୍ୟ ସମ୍ପଦ ଯେତେ ମୋର । ସବୁ ଦେଲେ ମୁନିବର ॥
ପୁତ୍ର ଭାରିଯାକୁ ଘେନିଣ । ଏକଇ ବସ୍ତ୍ର ମୁଁ ପିନ୍ଧିଣ ॥
ଛାଡ଼ିଣ ଯିବ ନିଜ ଦେଶ । ତେଣୁ ଆଇଲି ତୋର ପାଶ ॥
ଶୁଣି ଆନନ୍ଦ ରାଣୀମନ । ଏଥି ସଂସେ ତା ନନ୍ଦନ ॥
ବାହାର ଅବକାଶେ ଥିଲା । ପିତାଙ୍କ ଶ୍ରୀମୁଖେ ମିଳିଲା ॥
ଦେଖି ପିତାଙ୍କୁ ଆଗଭର । ପୁଚ୍ଛଇ ନୃପତି କୁମର ॥
ମାତା ପୁତ୍ରକୁ ବୁଝାଇଲେ । ଶୁଣି କୁମର ମଣି ବୋଲେ ॥
ଏଥକୁ ଚିନ୍ତା କିମ୍ପା କର । ତପସ୍ୟା ପୂରିଲା ଆମ୍ଭର ॥
ଏମନ୍ତ ବୋଲି ତିନିଜଣ । ତିନି ଖଣ୍ଡ ବସ୍ତ୍ର ପିନ୍ଧିଣ ॥
ଛାଡ଼ି ସକଳ ଅଳଙ୍କାର । ନଗରୁ ହୋଇଲେ ବାହାର ॥
ପ୍ରବେଶ ମୁନିଙ୍କର ପାଶ । ବୋଲନ୍ତି ଛାଡ଼ିଗଲୁ ଦେଶ ॥
ରଖ ତୁମ୍ଭର ପ୍ରଜାକୁଳ । ରାଜ୍ୟ ସମ୍ପଦାଦି ସମ୍ଭାଳ ॥
କହନ୍ତି ବିଶ୍ୱାମିତ୍ର ମୁନି । ଶୁଣ ରାଜନ ମହାମାନୀ ॥
ପିତାଙ୍କୁ ପୁତ୍ରଟି ଯେମନ୍ତ । ଦାନକୁ ଦକ୍ଷିଣା ତେମନ୍ତ ॥
ପୁତ୍ର ବିହୀନେ ନର୍କେ ଯାଇ । ଦକ୍ଷିଣା ବିନା ଫଳନାହିଁ ॥

ସୁବର୍ଣ୍ଣ ତିନିଲକ୍ଷ ମାଢ଼ | ଆଣି ମୋ ଆଗେ କର ଗୁଢ଼ ||
ତେବେ ନିଷ୍ଟନ୍ତେ ଚଳିଯାଅ | ନୋହିଲେ ଦାନ ଛୋଡ଼ନିଅ ||
ଏହା ଶୁଣିଣ ନରମଣି | ଚିତ୍ତେ ଚିନ୍ତିଲେ ଚକ୍ରପାଣି ||
ଦେବି ମୁଁ ଦକ୍ଷିଣା ଡୁମ୍ବର | ଆତ୍ମା ବିକ୍ରୟ କରି ମୋର ||
ଏମନ୍ତ ବୋଲି ତିନିଜଣ | ମଥାରେ ଲଦିଣ ଡିଭଣ ||
କାଶୀନଗର ବୋଲି ଗଲେ | ମୁନି ଡାକନ୍ତି ତାଙ୍କ ଭୁଲେ ||
ସେହି ନଗରେ ବୁଲି ବୁଲି | ଡାକନ୍ତି ଆମ୍ଭ ବନ୍ଦୀ ବୋଲି ||
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟଜନ | ଅଛରେ ଯେତେ ଜାତି ପୁଣ ||
ଆବରି ଚଣ୍ଡାଳ ସହିତେ | ଯେ ଅବା କିଣିବଟି ମୋତେ ||
ପୁତ୍ର ଭାର୍ଯ୍ୟାର ସହିତେ | ବିକବି ଦକ୍ଷିଣା ନିମନ୍ତେ ||
ଯେ ଧନ ଦେବ ତା ଶରଣ | ହେବୁ ପ୍ରସାଦ ତିନିଜଣ ||
ଏରୂପେ ଯେତେବେଳେ ଡାକିଲେ | କିଣିମା ଷମ କେ ନୋହିଲେ ||
ଏଥିଉତ୍ତାରୁ ଶୁଣ ମନ | ବିଧାତା ଘଟ ସୂତ୍ରମାନ ||
ମାୟାରେ ବିପ୍ର ହୁ[illegible]ହୋଇ | ଅଗ୍ନି ଦେବତା ଥିଲେ ରହି ||
ଦ୍ୱି ଲକ୍ଷ ମାଢ଼ ସୁନା ଦେଇ | ପୁତ୍ର ଭାର୍ଯ୍ୟାଙ୍କୁ କିଣିଲେ ||
ରାଜାର ଏକଇ କୁମର | ବଇଦେ ଅତି ସୁକୁମାର ||
ସେ ପତିବ୍ରତା ଶିରୋମଣି | ସୁନ୍ଦରୀ ତ୍ରିପୁରକୁ ଜିଣି ||
ଦୁହିଁଙ୍କ ହସ୍ତ ରାଜାଧରି | ବିପ୍ରଙ୍କୁ ସମର୍ପଣ କରି ||
ସେ ବିପ୍ର ଯାହା ଇଚ୍ଛାକର | ଏ ଦୁହେଁ ହୋଇଲେ ଡୁମ୍ବର ||
ଏମନ୍ତ କହି ନୃପଗଲେ | ଧନ ମୁନିଙ୍କ ସମର୍ପିଲେ ||
ପୁଣି କେତେ ହେଁ ଦୂର ଯାନ୍ତେ | ଚଣ୍ଡାଳ ରୂପେ ଜନ୍ମନାଥେ ||
ମନ୍ଦର କରି ତହିଁ ଥିଲେ | ରାଜାଙ୍କୁ କିଣି ଧନ ଦେଲେ ||
ମୁନିଙ୍କୁ ବୋଇଲେ ରାଜନ | ନିଅ ହେ ଦକ୍ଷିଣାର ଧନ ||
ଯେତେ ଜଞ୍ଜାଳ ମୁନି କଲେ | ରାଜା ଧର୍ମକୁ ନ ଲଙ୍ଘିଲେ ||
ସେ ମୁନି ଧନ ଘେନିଗଲେ | ନୃପତି ପଳଣ ବିହରିଲେ ||
ଏଥେ ରହିଲେ ନୃପନାଥ | ଚଣ୍ଡାଳ ଘରେ ହୋଇ ଭୃତ୍ୟ ||

ପ୍ରଭାତେ ଭାଣ୍ଡ ପଢ଼ିରନ୍ତି | ଦିବସେ ଢକ୍ଷିର ଚରନ୍ତି ||
ରାତ୍ରେ ଜଗନ୍ତି ଶମଶାନ | କେ କହୁ ତାଙ୍କ ଦୁଃଖମାନ ||
କାନନୁ ଫୁଲ ପୁଷ୍ପ ଆଣେ | ରାଣୀ କହିଲେ ବାସୀପଣେ ||
ସେ ତିନିପ୍ରାଣୀଙ୍କ ଲକ୍ଷଣ | କେ କହୁ ଶରୀର ଧରଣ ||
ଯେତେକେହେଁ କଷ୍ଟ ସେ ପାଇଲେ | କେହି ଧର୍ମକୁ ନ ଛାଡ଼ିଲେ ||
ଏମନ୍ତେ କେତେଦିନ ଗଲା | ସ୍ୱର୍ଗରେ ବିସ୍ମୟ ପଡ଼ିଲା ||
ବ୍ରହ୍ମା ଇନ୍ଦ୍ରାଦି ସୁରଗଣ | ସମସ୍ତେ ହେଲେ ବିସ୍ମରଣ ||
ହରିଶ୍ଚନ୍ଦ୍ରର ତପଫଳେ | ସ୍ୱର୍ଗ ପଡ଼ିଲା ରସାତଳେ ||
ଏଥିକୁ ତାଙ୍କୁ ଘେନ ଆସ | ନୋହିଲେ ସର୍ବେ ଯିବା ନାଶ ||
ଏମନ୍ତେ ସର୍ବେ ଯୁକ୍ତି କଲେ | ତକ୍ଷକ ରାଜ ଆଜ୍ଞା ଦେଲେ ||
ହେ ସର୍ପ ତୁମ୍ଭେ ବେଗେ ଯିବୁ | ରାଜାର ପୁତ୍ରକୁ ଦଂଶିବୁ ||
ଆଜ୍ଞା ପ୍ରମାଣେ ସର୍ପ ଗଲା | ମଞ୍ଚରେ ପ୍ରବେଶ ହୋଇଲା ||
ରୋହିତ କୁମରକୁ ଦଂଶି | ପୁଣି ମିଳିଲା ସ୍ୱର୍ଗେ ଆସି ||
ଏଥୁ ଅନନ୍ତେ ଶୈବ୍ୟାରାଣୀ | ପୁତ୍ର ମରିବା କଥା ଶୁଣି ||
ଅନେକ ସନ୍ତାପ ସେ କଲା | ତା ଦେଖି ବ୍ରାହ୍ମଣ କହିଲା ||
ତୁ ଏବେ କରୁଛୁ ରୋଦନ | କାହୁଁ ତୁ ଲଗାଇବୁ ଧନ ||
ଜାଣିଲେ ମଡ଼ାଚଣ୍ଡି ଆଏ | ମୋଠାରୁ ନେବେ ସୁନାଆଏ ||
ବେଗେ ତୁ ଶବ ଘେନିଯାଅ | ନ ପୋଡ଼ ପୋତିଣ ଥକାଅ ||
ମଡ଼ାଚଣ୍ଡିଆ ଧନ ଆସି | ମାଗିଲେ ଦିଅ ତାର ବାସୀ ||
ବିପ୍ର ବଚନ ବାଣୀ ଶୁଣି | ପୁତ୍ରକୁ ଧରି ଏକା ରାଣୀ ||
ଘୋର ଅନ୍ଧାର ନିଶାକାଳେ | ଘେନିଣ ଶମଶାନେ ମିଳେ ||
ଶବ ପକାଇ ମହାସଙ୍ଗ | ଆପଣେ ଖନ୍ଦାଏ ଖୋଳନ୍ତି ||
ଜଗିବା ପାଇ ଶମଶାନ | ଏମନ୍ତେ ବାହାରେ ରାଜନ ||
ଆପଣେ ହରିଶ୍ଚନ୍ଦ୍ର ରାଜେ | ଆସିଣ ମିଳିଲେ ସେଠାଏ ||
ଦେଖିଲେ ଶମଶାନ ସ୍ଥାନ | ଏକଇ ଯୁବତୀ ରତନ ||
କାନ୍ଦିଣ ଖୋଳୁଅଛି ଗାତ | ଦେଖିଣ ନୃପତି ଚକିତ ||

ଧାଇଁ ଧଇଲେ କେଶ ତାର । ବୋଇଲେ ଦୁଷ୍ଟ ତୁ କାହିଁର ।
ମରିବୁ ତୋ ଇଷ୍ଟ ସୁମର । ଶୁଣି ବୋଲଇ ନାରୀବର ।।
ମୋ ଇଷ୍ଟ ହରିଶ୍ଚନ୍ଦ୍ର ରାଜା । ମୁଁ ଅଟେ ତାହାଙ୍କ ଭାରିଯା ।।
ସ୍ୱାମୀ ମୋ ନୃପଶ୍ରେଷ୍ଠ ଯେତେ । ଦାନ ଦହ୍ନିଲେ ମୁନିହସ୍ତେ ।।
ଦକ୍ଷିଣା ନିମନ୍ତରେ ପୁଣ । ପୁତ୍ର ଭାରିଯାକୁ ବିକଣ ।।
ସେ ଧନ ମୁନିହସ୍ତେ ଦେଲେ । ଆପଣେ କେଣେ ଅବା ଗଲେ ।।
ଏମନ୍ତେ କେତେ ଦିନ ଗଲା । ସର୍ପାଘାତରେ ପୁତ୍ର ମଲା ।।
ତେଣୁ ସେ ପୁତ୍ରକୁ ଆଣିଣ । ପୋଡ଼ିବି ବୋଲି ଶମଶାନ ।।
ଏକାନ୍ତେ ଗାତ ଖୋଳୁଛଇଁ । ଯେଣୁ ମୋହର ଶାଖା ନାହିଁ ।।
ଏମନ୍ତ ଶୁଣି ନରଈଶ । ଗୁଣିଲେ ନିଜ ପ୍ରିୟା କେଶ ।।
ହେ ସଖି ! ମୁଁ ତୋ ପ୍ରାଣସଖା । କାହିଁ ମୋ ରୋହିତକୁ ଦେଖା ।।
ଶୁଣିଣ ସ୍ୱାମୀର ଉତ୍ତର । ଛୁଟିଲା ଘୋର ଅନ୍ଧକାର ।।
ଦ୍ୱିଗୁଣେ ସନ୍ତାପ ବଢ଼ିଲା । ସ୍ୱାମୀର ଚରଣେ ପଡ଼ିଲା ।।
ଉଠି ସ୍ୱାମୀଙ୍କୁ ଘେନିଗଲା । ପୁତ୍ରକୁ ଦେଖାଇଣ ଦେଲା ।।
ବୋଇଲେ ସ୍ୱାମୀ ତୁମ୍ଭେ ଶୁଣ । ମୁହିଁ ଏ ପୁତ୍ରକୁ ଘେନିଣ ।।
ଅନଳେ ପଶି ଝାସଦେବି । ଏ ପ୍ରାଣ କେବେ ନ ରଖିବି ।।
ଶୁଣି ବୋଇଲେ ନୃପବର । ପୁତ୍ର ଭାରିଯା ମଲେ ମୋର ।।
ମୁଁ ଥାଇ କରିବଇଁ କିସ । ତିନି ସମସ୍ତେ ଦେବା ଝାସ ।।
ଏମନ୍ତ ବୋଲି ଚଳିଗଲେ । ପ୍ରଚଣ୍ଡ ଅନଳ ଜାଳିଲେ ।।
ସ୍ନାନ ସେ କରାଇ ପୁତ୍ରକୁ । ଅନଳେ ପଶିବା ବେଳକୁ ।।
ଏମନ୍ତ ସମୟେ ମାତଳୀ । ସ୍ୱର୍ଗରୁ ରଥ ଘେନି ଚଳି ।।
ରାଜାଙ୍କ ନିକଟେ ହୋଇଲା । ଅନଳେ ନ ପଶ ବୋଇଲା ।।
ତା ଶୁଣି ନୃପତି ଚକିତ ମାତଳୀ ଉହାଇଲା ରଥ ।।
ବୋଇଲା ଦେବଙ୍କ ଆଦେଶ । ସ୍ୱର୍ଗକୁ ଯିବ ରଥେ ବସ ।।
ଶୁଣି ବୋଇଲା ନୃପବର । ମଲା ମୋ ଏକଇ କୁମର ।।
କେମନ୍ତେ ସ୍ୱର୍ଗକୁ ଯିବଇଁ । କହ ମୁଁ ଅପୁତ୍ରିକ ହୋଇ ।।

ଏଣୁ ମୋ ମରିବାର ସତ । ମାତଳୀ ଘେନଯାଅ ରଥ ॥
ମାତଳୀ ବୋଇଲା ବଚନ । ଅନକେ ନ ପଶ ରାଜନ ॥
ମୋର ଅଇଲା ଯାଏ ଥିବୁ । ନୋହିଲେ ଦେବଦ୍ରୋହୀ ହେବୁ ॥
ଏମନ୍ତେ ବୋଲି ଚଳିଗଲା । ଦେବଙ୍କ ଆଗରେ ମିଳିଲା ॥
ରାଜା କହିବା ଜଣାଇଲା । ଅମୃତ ସଞ୍ଜୀବନୀ ନେଲା ॥
ପୁଣି ସ୍ୱର୍ଗରୁ ଲେଉଟିଲା । ରାଜା ନିକଟେ ପ୍ରବେଶିଲା ॥
ପୁତ୍ରର ମୁଖେ ସୁଧାଦେଇ । କର୍ଣ୍ଣରେ ସଞ୍ଜୀବନୀ କହି ॥
ତକ୍ଷଣେ ଜୀଇଲା କୁମର । ପାଶେ ବେଢ଼ିଲା ରତ୍ନବର ॥
ଆବର ଜନନୀ ପିଅର । ଦେଖିଣ ସେହିତ କୁମର ॥
ସ୍ୱର୍ଗକୁ ଯିବା ଏବେ ଚାଲ । କୁମର ବୋଇଲା କ ବୋଲ ॥
ଆମ୍ଭର ରାଜ୍ୟ ପ୍ରଜାକୁଳ । ଗୁଣ୍ଡ କେ ଯିବ ସ୍ୱର୍ଗଆଳ ॥
ସମସ୍ତେ ଗଲେ ଯିବ ମୁହିଁ । ନୋହିଲେ ଯାଅ ତୁମ୍ଭେ ଦୁଇ ॥
ଶୁଣି ବୋଇଲେ ନୃପନାଥ । ମାତଳୀ ଘେନଯାଅ ରଥ ॥
ନ ଗଲେ ରାଜ୍ୟଜନ ଯେତେ । ଆମ୍ଭେ ନ ଯିବୁ କଦାଚିତେ ॥
ଶୁଣି ମାତଳୀ ଚଳିଗଲା । ବିଧାତା ଆଗରେ କହିଲା ॥
ସ୍ୱରୂପ ଶୁଣ ଦେବବର । ନଇଲେ ପ୍ରଜାକୁଳ ସାର ॥
କେବେ ନ ଆସେ ନୃପବର । ବିଚାରି ମୋତେ ଆଜ୍ଞା କର ॥
ତା ଶୁଣି ବ୍ରହ୍ମା ଇନ୍ଦ୍ର ସୁର । ସମସ୍ତେ କଲେକ ବିଚାର ॥
ଯାଇଁ ରାଜାକୁ ଘେନଆସ । ନୋହିଲେ ସ୍ୱର୍ଗେ ଯିବ ନାଶ ॥
ହରିଶ୍ଚନ୍ଦ୍ରର ତପଫଳେ । ଆପଣ୍ଡୁ ତାର ପ୍ରଜାକୁଳେ ॥
ତା ଶୁଣି ମାତଳୀ ହରଷ । ଲେଉଟି ଗଲେ ରାଜା ପାଶ ॥
ଦେବେ ଦୁନ୍ଦୁଭି ବଜାଇଲେ । ସକଳ ଲୋକ ଗୋଷ୍ଠୀ କଲେ ॥
ପଶୁ ମନୁଷ୍ୟ ପକ୍ଷୀ ଜାତି । ଅପରେ ଯେତେ ଲୋକେ ଛନ୍ତି ॥
ସମସ୍ତ ରଥେ ବସାଇଲେ । ଆପଣେ ରାଜା ବିଜେ କଲେ ॥
ପୁତ୍ର ଭାରିଯା ସଙ୍ଗେ ଘେନ । ଆନନ୍ଦେ କଲେ ଜୟ ଧ୍ୱନି ॥
ଚଳିଲା ରଥ ଶୂନ୍ୟମାର୍ଗେ । ଦେବେ ଅନାଇଛନ୍ତି ସ୍ୱର୍ଗେ ॥

ଯତ୍ନେ ନକଟେ ସ୍ୱର୍ଗ ଆସି । ଦେବମାୟାକୁ ଦେଲେ ପେଶି ॥
ରାଜାର ହୃଦରେ ପଶିଲା । ବଡ଼ମା ପଣ ପ୍ରକାଶିଲା ॥
ଗର୍ବ ବଢ଼ିଲା ରାଜା ମନ । ନ ଚଳେ ପୁଷ୍ପକ ବିମାନ ॥
ଯତ୍ନେ ସେ ନଷ୍ଟଲେ ରହିଲେ । ସକଳ ଦେବତା ଆଇଲେ ॥
ବିଶ୍ୱକର୍ମାକୁ ଆଜ୍ଞା ଦେଲେ । ତହିଁ ପୁରେକ ନିର୍ମାଣିଲେ ॥
ଶ୍ରୀହରିଶ୍ଚନ୍ଦ୍ର ସ୍ୱର୍ଗପୁର । ନାମ ଦିହିଲେ ବେଦଧର ॥
ସେ ପୁରେ ରହିଲେ ନୃପତି । ଅଛନ୍ତି ଯୁଗେ ଯୁଗେ କୀର୍ତ୍ତି ॥
ଦେବା ଲୟରେ ଫଳ ଏତେ । ପୁରାଣ ବିଖ୍ୟାତ ଜଗତେ ॥
ଭଣେ ଅଧମ ରାମଦାସ । ଶ୍ରୀହରି ପାଦପଦ୍ମେ ଆଶ ॥
ଶୁଣ ସୁଜନ କର୍ଣ୍ଣପୁଟେ । ନ ପଡ଼ି ସଂସାର ସଙ୍କଟେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ ମାଧବାଚାର୍ଯ୍ୟ ପତି ପତ୍ନୀ ଦାର୍ଢ୍ୟଭକ୍ତି ମୋକ୍ଷଣେ ନାମ ଷୋଡ଼ଶୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ
## କର୍ଣ୍ଣରାଜା ସମ୍ବାଦ
### ମନ ଉବାଚ

ପୁଣି ପୁଚ୍ଛଇ ମନ ବିପ୍ରେ । ଚୈତନ୍ୟ ଦେବଙ୍କର ପାଶେ ॥
ତୁମ୍ଭେ ଯା କଲଟି ପ୍ରକାଶ । ପଦ ପଦକେ ସୁଧାରସ ॥
ସତ୍ୟ ତ୍ରେତୟାର ଚରିତ । ଶୁଣି ମୁଁ ହୋଇଲି ପବିତ୍ର ॥
କହ ଦ୍ୱାପର ଯୁଗ କଥା । ଶୁଣି ମୋ ଗୁଚୁ ମନୋବ୍ୟଥା ॥
ତା ଶୁଣି କହେ ଚଇତନ । ହେ ମନ ହୁଅ ସାବଧାନ ॥
ଦ୍ୱାପର ଯୁଗ ମହାବୀର । କର୍ଣ୍ଣ ନୃପତି ନାମ ତାର ॥
ସୋମବଂଶରେ ଅବତାରି । ଅଟଇ ମହା ଧନୁର୍ଦ୍ଧର ॥
କ୍ଷତ୍ରିୟ ଗରବ ଗଞ୍ଜନ । ହଇବେ ରବିର ନନ୍ଦନ ॥
ଶରଣ ସମ୍ଭାଳିବା ଅର୍ଥେ । କାହେ ବାନ୍ଧବ ଥାଇ ନେତେ ॥
ସତ୍ୟ ଅଭଙ୍ଗ କୁଳବନ୍ତ । ଶାନ୍ତ ସୁଶୀଳ ସେ ମହତ ॥

ଯଦୁବଂଶ କୁଳେ ଯେ କଂଶଙ୍କ । ସର୍ବଦା ଜାଣେ ରଣରଙ୍ଗ ॥
ଖଳନ୍ତେ କମ୍ପେ ବସୁମତୀ । ସୁରେ ଅସୁରେ ଡରିଥାନ୍ତି ॥
ଏମନ୍ତେ କର୍ଣ୍ଣ ମହାରାଜା । ସୁଖେ ପାଳଇ ଜନ ପ୍ରଜା ॥
ତାହାର ଏକଇ କୁମର । ବୃଷକେଶନ ନାମ ତାର ॥
ଭାରିଯା ନାମ ଚନ୍ଦ୍ରାବଳୀ । ସତୀ ସାଧବୀ ସେହୁ ବାଳୀ ॥
ଏମନ୍ତେ କର୍ଣ୍ଣ ଯେ ରାଜନ । ଦାନେ ମୋହିଲେ ସର୍ବଜନ ॥
ନିତ୍ୟ ସୁବର୍ଣ୍ଣ ଶତେ ଭାର । ପ୍ରମାଣ ଦାନ ଦେବ ତାର ॥
ଏଥି ଉପରୁ ଯେତେ ଜନ । ମାଗନ୍ତି ଅନ୍ନ ବସ୍ତ୍ର ଦାନ ॥
ମନ ସନ୍ତୋଷେ ତାଙ୍କୁ ଦେଇ । ବାକ୍ୟ କହନ୍ତି ହୃଷ୍ଟ ଥାଇ ॥
ଦୁଃଖୀ ବ୍ରାହ୍ମଣ ଯେବେ ଦେଖି । ଜୀବନ୍ତେ ଦିଏ ଅନ୍ନ ଲେଖି ॥
ଏମନ୍ତେ କେତେ ଦିନ ଗଲା । ତା କୀର୍ତ୍ତି ଜଗତେ ପୂରିଲା ॥
ଜାଣିଲେ ପ୍ରଭୁ ଭଗବାନ । ବଢ଼ିବା ପାଇଁ ତାର ମନ ॥
ଜଗମୋହନ ପୀତବାସ । ମାୟାରେ ହେଲେ ଦ୍ୱିଜବେଶ ॥
କନ୍ଧରେ ଶୋଭଇ ପଇତା । ଧାରଣ ପାଣ୍ଡୀ ଗଣ୍ଡୁ ଛତା ॥
ଲଲାଟେ ଶ୍ରୀହରି ମନ୍ଦିର । ପୁସ୍ତକ ଯାଉଁଳ କନ୍ଧର ॥
ଅତି ସୁନ୍ଦର ଯୁବା ବେଶ । ବଚନେ ଜନ ମନ ତୋଷ ॥
ଏମନ୍ତ ବେଶେ ଦାମୋଦର । ଦ୍ୱିଜସ୍ତୁ କର୍ଣ୍ଣ ସିଂହଦ୍ୱାର ॥
ଉଚ୍ଚାର କଲେ ସାମ ବେଦ । ଆକାଶେ ଘୋଟିଲା ଶବଦ ॥
କଣ୍ଠ କୋକିଳସ୍ୱର ଜିଣି । ପାଷାଣ ତରଳେ ତା ଶୁଣି ॥
ତା ଶୁଣି କର୍ଣ୍ଣ ମହାବୀର । ପ୍ରବେଶ ଦ୍ୱିଜଙ୍କ ଛାମୁର ॥
ଦେଖିଣ ନମସ୍କାର କଲେ । ତତ୍‌କ୍ଷଣେ ପାଦ ଧୋଇଦେଲେ ॥
ଆସନେ ତାଙ୍କୁ ବସାଇଲେ । ବିନୟ ବଚନେ ପୁଚ୍ଛିଲେ ॥
କେଉଁ କାରଣେ ମୋର ପୁର । ଦ୍ୱିଜସ୍ତୁ କଲେ ହେ ଠାକୁର ॥
କହ ହେ ସ୍ୱରୂପ ଉତ୍ତର । ଦେବି ମୁଁ ସଂଶୟ ନ କର ॥
ଧନ ରତନ ଅଳଙ୍କାର । କି ଅବା ସୁବର୍ଣ୍ଣ ଭଣ୍ଡାର ॥
ଯେବା ବାଞ୍ଛିତ ତୁମ୍ଭେ ଚିତ୍ତେ । ସମ୍ଭାଳ କାଲି ପରିଯନ୍ତେ ॥

ଯେତେକ ଇଚ୍ଛା ତେତେ ଦେବ । ଦରିଦ୍ର ପଣ ଛଡ଼ାଇବ ॥
ଭୋଜନ କରି ମୋର ପୁରେ । ଆଜକ ରହ ଏହିଠାରେ ॥
ଶୁଣି କହନ୍ତି ଦ୍ୱିଜବର । ଶୁଣ ତୁ କର୍ଣ୍ଣ ମହାବୀର ॥
ତୋ ଦାନୀପଣ ଶୁଣି କର୍ଣ୍ଣେ । ଅତି ଆନନ୍ଦ ମୋର ମନେ ॥
ତେଣୁ ଅଇଲୁ ତୋର ପାଶ । କଂଣ ଅତି ପ୍ରତିଆଶ ॥
ବାଞ୍ଛିତ ଧନ ଦେଲେ ନେବୁଁ । ନୋହିଲେ ଲେଉଟିଣ ଯିବୁ ॥
ଭିକାରିକେ ଦେଲେ ମହା ପୁଣ୍ୟ । କହିଅଛନ୍ତି ଋଷିଗଣ ॥
ତୁ ବୋଲୁ କାଲି ପରସନ୍ତେ । ଆମ୍ଭେ ନ ରହୁଁ କଦାଚିତେ ॥
ନାହିଁ ବୋଇଲେ ଆମ୍ଭେ ଯିବୁ । ଏଠାରେ କମ୍ପା ବସିଥିବୁ ॥
ଶୁଣି ବୋଇଲେ କର୍ଣ୍ଣବୀର । ପବିତ୍ର କର ମୋ'ର ପୁର ॥
ଆଜ ମୋ ପୁରରେ ରନ୍ଧନ । କଲେ ମୋ ସୁଫଳ ଜୀବନ ॥
ତା ଶୁଣି କହନ୍ତି ଶ୍ରୀହରି । ଶୁଣ ତୁ କର୍ଣ୍ଣ ଦଣ୍ଡଧାରୀ ॥
ଭୋଜନ ଯାଚୁଅଛୁ ମୋତେ । ଦେଇ ନ ପାରୁ କଦାଚିତେ ॥
ତା ଶୁଣି ବୋଲେ ମହାରାଜ । କହିଲୁ ବିପରୀତ କଥା ॥
କ କ ଭୁଞ୍ଜିବ ବିପ୍ର ତୁମ୍ଭେ । ଦେଇ ଯେ ନ ପାରିବୁ ଆମ୍ଭେ ॥
ଯାହା ମାଗିବ ତାହା ଦେବ । ନ ଦେଲେ ଅପରାଧୀ ହେବ ॥
ପ୍ରଭୁ ବୋଇଲେ ସତ୍ୟକର । ମୋ ହସ୍ତେ ତୋଳଦିଅ ନୀର ॥
ଶୁଣି ନୃପତି ସତ୍ୟ କଲ । ବ୍ରାହ୍ମଣ ହସ୍ତେ ନୀର ଦେଲ ॥
ବୋଇଲା ମାଗ ବିପ୍ରବର । ତିନିବାର 'ସତ୍ୟ ସତ୍ୟ ମୋର ॥
କର୍ଣ୍ଣର ଦୃଢ଼ବାକ୍ୟ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ॥
ମନୁଷ୍ୟମାଂସେ ମୋ ଭୋଜନ । ଶୁଣି ବୋଇଲେ ଦାନୀକର୍ଣ୍ଣ ॥
ଯେତେକ ଜନ ଦେବ ଆଣି । ସ୍ୱରୂପ କହ ବିପ୍ରମଣି ॥
ତା ଶୁଣି ବୋଲନ୍ତି ଗୋସାଇଁ । ଅନ୍ୟ ମନୁଷ୍ୟେ କାର୍ଯ୍ୟ ନାହିଁ ॥
ତୋ ପୁତ୍ର ବୃଷକେତନକୁ । ମାରିଣ ଦେବୁ ହୋ ଆମ୍ଭଙ୍କୁ ॥
ଆପଣେ ସ୍ୱହସ୍ତେ ମାରିବୁ । ଭାରିଯା ହାତେ ରନ୍ଧାଇବୁ ॥
ତେବେ ମୁଁ ଭୋଜନ କରିବ । ନାହିଁ ବୋଇଲେ ଚଳିଯିବ ॥

ଶୁଣି ବିପ୍ରଙ୍କର ରାଜା ଚଉ । ପୁତ୍ରକୁ ମାରିବ କେମନ୍ତେ ॥
ନ ଦେଲେ ସତ୍ୟଭଗ୍ନ ହେବ । ମଲେ ନରକେ ସିନା ଯିବ ॥
ଏଣୁ ମୋ ପୁତ୍ର ପଛେ ଯାଉ । ନୋହିବ ସତ୍ୟଭଙ୍ଗ ଆଉ ॥
ଏମନ୍ତେ ମନେ ବିଚାରିଲା । ଶୁଣ ହେ ବ୍ରାହ୍ମଣ ବୋଇଲା ॥
ତୁମ୍ଭେ ତ ବିପ୍ରକୁଳେ ଜାତ । ଆମ୍ଭେ ଯେ କ୍ଷତ୍ରିୟ ସମ୍ଭୂତ ॥
କଉରି ମୋ ପାକେ ଭୁଞ୍ଜିବ । ତୁମ୍ଭର ଜାତି ନଷ୍ଟ ହେବ ॥
ତା ଶୁଣି ବ୍ରାହ୍ମଣ ଗୋସାଇଁ । ବୋଇଲେ ଶୁଣ ବୀର ତୁହି ।
ଆମ୍ଭର ଶାସ୍ତ୍ରେ ଅଛି ଯାହା । ଶୁଣ ତୁମ୍ଭଙ୍କୁ କହୁ ତାହା ।
ଯେ ଅବା ଶ୍ରୀହରି ଭଜଇ । ବ୍ରତରେ ନିଷ୍ଠା ଯାର ଥାଇ ॥
ଯେ କରେ ପର ଉପକାର । ସତ୍ୟ ନ ଲଙ୍ଘେ ଯେଉଁ ନର ॥
ଯେ ଅବା ସାଧୁସଙ୍ଗ କରେ । ବଞ୍ଚଇ ନାମ ଭଜନରେ ॥
ରଣ ରଙ୍ଗରେ ଆଗୁସାର । ଦେବା ଦୟାରେ ନିରନ୍ତର ॥
ନାରୀ ହୋଇଣ ପତିବ୍ରତା । ନ ଲଙ୍ଘେ ନିଜ ସ୍ୱାମୀ କଥା ॥
ଏମନ୍ତ ଲୋକଙ୍କର ଘର । ନ ପୁଚ୍ଛୁ ଜାତି ଗୋତ୍ର ତାର ॥
ଭୁଞ୍ଜିବା ସତତି ଆମ୍ଭର । ଶୁଣି ଚକିତ ନୃପବର ॥
ନବରେ ହୋଇଲା ପ୍ରବେଶ । ନିଜ ପତ୍ନୀଙ୍କୁ ଗଲା ପାଶ ॥
କହିଲେ ଗମ୍ଭୀର ବଚନ । ଶୁଣରେ ଯୁବତୀ ରତନ ॥
କେବଣ ଦେଶୁ ବିପ୍ରବର । ଆସି ମିଳିଲେ ସିଂହଦ୍ୱାର ॥
ଅନେକ ବେଦଧ୍ୱନି କଲେ । ଭୋଜନ ଦେବୁ କି ବୋଇଲେ ॥
ତାଙ୍କ ବଚନେ କଲି ସତ୍ୟ । ଏବେ ବୋଲନ୍ତି ମାର ପୁତ୍ର ॥
ନୋହିଲେ ସତ୍ୟଭଙ୍ଗ ହୁଅ । ଆମ୍ଭଙ୍କୁ ଯାଅ ବୋଲି କହ ॥
ଏଥିକି କହ ତୁ ବିଚାରି । ଦେବା କି ନାହିଁ ପୁତ୍ର ମାରି ॥
ଶୁଣି ବୋଲନ୍ତି ମହାରାଣୀ । ଦିଅ ଯେ ନିଜ ପୁତ୍ର ହାଣି ॥
ନଦେଲେ ସତ୍ୟଭଙ୍ଗ ହୋଇ । ନରକେ ପଡ଼ିବ ଦେ ଯାଇଁ ॥
ସ୍ୱାମୀଙ୍କ କହନ୍ତେ ଏମନ୍ତ । ଆସି ମିଳିଲା ନିଜ ସୁତ ॥
ଦ୍ୱାଦଶ ବରଷର ବାଳ । ଦେହ ତା ଦିଶଇ ଉଜ୍ଜ୍ୱଳ ॥

ସୁନ୍ଦରପଣେ ତାଙ୍କୁ ସରି । କେହି ନ ଥିବେ ତ୍ରିପୁରି ।
ଚତୁର ବିବେକ ସିହାଣ । ପୂଜଇ ମାତାଙ୍କ ଚରଣ ।
କି ବୋଲି ବିସ୍ମର ହେଉଛ । ମୋତେ କମ୍ପାଇ ଲୁଚୁଅଛ ॥
କମ୍ପା ଚିନ୍ତିତ ଚକ୍ରଧାରି । ହେ ମାତା କହ ସତ୍ୟକରି ।
ଶୁଣି କହନ୍ତି ନିଜ ମାତ । ଶୁଣ କୁମର କହେ ସତ୍ୟ ।
ପିତା ତୋ ବିପ୍ରେ କଲେ ସତ୍ୟ । ତୋତେ ମାରିଣ ଦେବେ ଘାତ ।
ଶୁଣିଣ ରାଜାର କୁମର । କେ କହୁ ଆନନ୍ଦ ତାହାର ।
ହେ ତାତ ମାତ ! ତୁମ୍ଭେ ଶୁଣ । ଜନ୍ମ ଲେ ଅବଶ୍ୟ ମରଣ ।
ଯେବେ ଏ ଦେହୁ ଜୀବ ଯିବ । ଅବଶ୍ୟ ମାଟିରେ ମିଶିବ ।
ଶାଗୁଣା ଶୃଗାଳଙ୍କ ଗ୍ରାସ । ନୋହିଲେ ହେବ ଧୂଳି ପାଂଶ ।
ଏଥୁ କା ଅନ୍ୟ କାର ଦେହ । ମଲେ ହୁଅଇ ଏକା ଖେହ ।
ବିପ୍ର ଭୁଞ୍ଜିବ ମୋର ମାଂସ । ଏଥିରୁ ବଡ଼ ଭାଗ୍ୟ କିସ ।୧୦୦॥
ବହନ କରି ମୋତେ ମାର । ହେ ତାତ ! ବିଳମ୍ବ ନ କର ।
ପୁତ୍ରର ମୁଖୁଁ ଏହା ଶୁଣି । ବହନ ଗଲେ ନୃପମଣି ।
ପ୍ରଭୁଙ୍କୁ ଡାକି ଘେନିଗଲେ । ମନ୍ଦିରେ ପ୍ରବେଶ ହୋଇଲେ ।
ପୁତ୍ରକୁ ଧରି ଧାତିକାରେ । ଉଭା କରାଇଲା ସ୍ତମ୍ଭରେ ।
କର୍ଣ୍ଣ ଶ୍ରୀହସ୍ତେ ପାଟଖଣ୍ଡା । ଧରିଣ ଅଛି ପରଚଣ୍ଡା ॥
ଗୋବିନ୍ଦ ଜାଣି ତାର ମନ । ଉହାଡ଼ କଲେ ସୁଦର୍ଶନ ।
ଚଣ୍ଡ ପୁତ୍ରକୁ ଘେନି ଗଲେ । ମାୟା କୁମର ଉଭାହେଲେ ।
ଯା ମାୟା ବେଦେ ଅଗୋଚର । ମନୁଷ୍ୟ କେତେକ ମାତର ॥
ରାଜା ଧରିଣ କରବାଳ । କାଟିଲେ ଶିର ଯେ ତତ୍କାଳ ।
ରାଣୀ ହସ୍ତରେ ନେଇ ଦେଲେ । ରନ୍ଧନ କରସି ବୋଇଲେ ॥
ରାଜା ହସ୍ତରୁ ରାଣୀ ଧରି । କାଟିଲେ ଭୁଜା ଦ୍ରାପ୍ସ କରି ।
ମୁଣ୍ଡ ମାହକ ଲୁଚାଇଲେ । ରାନ୍ଧିବେ ବୋଲି ବହି ଗଲେ ।
ଆବର ଯେତେକ ମାଏସ । ସଜାଡ଼େ ମନର ହରଷ ।
ଘୃତ ମରିଚଗୁଣ୍ଡା ଭୁଲେ । ହଳଦ୍ଧ ପକାଇ ବଳନ୍ତିଲେ ।

ଜଗ ମରିଚ ହିଙ୍ଗୁଧାର । ପକାଇ କଲେକ ମହୁର ॥
ଥୋକାଏ ସଙ୍ଗତେ ତିନ୍ତୁଳ । ପକାଇ କଲେକ ଆମ୍ବ ଳ ॥
ଭଜା କାକଣ୍ଢ ପୋଟଳ । ରାନ୍ଧଣା ଏକୁଁ ଏକ ଭଲ ॥
ଦ୍ରବ୍ୟ ଅରୁଆ ଅନ୍ନମାନ । ବହନ କଲେକ ରନ୍ଧନ ॥
ବିପ୍ରଙ୍କୁ ଡାକ ନୃପ ଗଲେ । ଭୋଜନ କରିବ ବୋଇଲେ ॥
ଶୁଣି ବୋଇଲେ ବିପ୍ରମଣି । କପଟ କଲୁ ତୋର ରାଣୀ ॥
ଲୁଚାଇ ଥୋଇଅଛୁ ଶିର । ଆମ୍ଭ ଅଯୋଗ୍ୟ ସେ ଆହାର ॥
ଶୁଣି ନୃପତି ବେଗେ ଗଲେ । ହେ ସଖୀ କ କଲୁ ବୋଇଲେ ॥
ତୁ ପୁଣି ଲୁଚାଇଲୁ ମୁଣ୍ଡ । ବିପ୍ରତ ରାଗରେ ପ୍ରଚଣ୍ଡ ॥
ଶୁଣି ଜାଣିଲେ ମହାସତୀ । ନଷ୍ଟେ ସେ ଅଟେ ମହାଯତି ॥
ଏମନ୍ତ ବୋଲି ମୁଣ୍ଡ ଧରି । ଛେଚିଲେ ଖଣ୍ଡ ଖଣ୍ଡ କରି ॥
ରାନ୍ଧଣା ବାଧି ବେଗେ କଲେ । ବିପ୍ରଙ୍କୁ ଡାକଣ ଆଣିଲେ ॥
ଆସନ ପାଦାସନ ଦେଇ । କଦଳୀ ପତ୍ରେକ ବିଛାଇ ॥
ଆପଣେ କର୍ଣ୍ଣ ମହାରାଣୀ । ସୁପକ୍ୱ ପରଶିଲେ ଆଣି ॥
ଦେଖି ବୋଲନ୍ତି ବ୍ରହ୍ମବଟୁ । ଏକ ପତ୍ରକେ ବାଢ଼ିଅଛ ॥
ଏଥେ କ ବଡ଼ ଅଛ ଲାଭ । ମୋତେ ମାରିବ ବୋଲିକରି ॥
ଏ ଘରେ ଅଛ ଯେତେ ଜନ । ସମସ୍ତେ କରିବ ଭୋଜନ ॥
ନୋହିଲେ ଲେଉଟିଣ ଯିବି । ମୁଁ କମା ଏକାକୀ ଭୁଞ୍ଜିବି ॥
ଶୁଣି ଚକିତ ରାଜା ରାଣୀ । ଆଉର ଦେନ ପତ୍ର ଆଣି ॥
ଅନ୍ନ ବ୍ୟଞ୍ଜନ ଯେ ବାଢ଼ିଲେ । ଭୁଞ୍ଜ ବା ବୋଲି ଆରମ୍ଭିଲେ ॥
ପ୍ରଭୁ ଜାଣିଲେ ତାଙ୍କ ମନ । ବୋଇଲେ ଶୁଣ ହେ ରାଜନ ॥
ଆଉର ପତ୍ରେକ ପକାଅ । ଭୁଞ୍ଜିବ ପରା ତୋର ପୁଅ ॥
ଶୁଣି ବୋଇଲେ କର୍ଣ୍ଣବୀର । କାହୁଁ ପାଇବି ପୁତ୍ର ମୋର ॥
ଭୂମ୍ବର ଦେଖୁଁ ଦେଖୁଁ ଏଥେ । ହାଣିଲି ପରା ମୋର ହସ୍ତେ ॥
ତା ମାଂସ କଲଇଁ ରନ୍ଧନ । ଆଉ କ ଅଛୁ ମୋ ନନ୍ଦନ ॥
ଶୁଣି ବୋଇଲେ ନରହରି । ଶୁଣ ତୁ କର୍ଣ୍ଣ ଦଣ୍ଡଧାରୀ ॥

ସର୍ବଦା ସାଧୁଙ୍କ ଚରଣ । ସେବାରେ ଥାନ୍ତି ପାଞ୍ଚଜଣ ॥
ଦୁଃଖୀ ଦରିଦ୍ରଙ୍କୁ ଦେଖିଲେ । ଦିଅନ୍ତି ଅନ୍ନ ବସ୍ତ୍ର ଭଲେ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବ୍ରାହ୍ମଣ ବୈଷ୍ଣବ ଭିକାରୀ । ୨୦ ॥
ଏମାନେ ପ୍ରବେଶିଲେ ଯେତେ । ନାହିଁ ନ ବୋଲେ କଦାଚିତେ ॥
ଶକ୍ୟ ଅନୁକ୍ରମେ ଯେ ଦେଇ । ନ ଥିଲେ କହଇ ବିନୟୀ ॥
ଦୁଆରୁ ନିରାଶ ହୋଇଣ । ଲେଉଟି ନାହିଁ ଏକଜଣ ॥
ଏମନ୍ତେ କେତେ ଦିନ ଗଲା । ତା କୀର୍ତ୍ତି ଜଗତେ ପୂରିଲା ॥
ଜାଣିଲେ ପ୍ରଭୁ ଭଗବାନ । ଛଡ଼ିବାପାଇଁ ତାର ମନ ॥
ମାୟା ସନ୍ନ୍ୟାସୀ ରୂପ ଧରି । ବିଜୟ କଲେ ନରହରି ॥
ହସ୍ତରେ ଦଣ୍ଡ କମଣ୍ଡଳ । ତୁଳସୀ ମାଳ ବକ୍ଷସ୍ଥଳ ॥
ଜଟାବସନ ପରିଧାନ । ସର୍ବାଙ୍ଗେ ବିଭୂତି ଭୂଷଣ ॥
ଏମନ୍ତ ବେଶେ ଦାମୋଦର । ମିଳିଲେ ଅବନ୍ତୀ ନଗର ॥
ତକ୍ଷକେ ଗଇ ଆଜ୍ଞା ଦେଲେ । ହେ ସର୍ପଶିଶୁ ତୁ ବୋଇଲେ ॥
ଯେ ଘନବନ୍ଧୁ ଦାସ ପୁଅ । ତାକୁ ଦଂଶିବୁ ବେଗେ ଯାଅ ॥
ଆଜ୍ଞା ପ୍ରମାଣେ ସର୍ପଗଲା । ଦାସଙ୍କ ପୁତ୍ରକୁ ଦଂଶିଲା ॥
ତା ଜ୍ୟେଷ୍ଠ ପୁତ୍ର ପ୍ରାଣ ହାରି । ତକ୍ଷଣେ ଗଲା ଯମପୁରୀ ॥
ଏଥି ଉତ୍ତାରୁ ମାତା ପିତା । ଜାଣିଲେ ପୁତ୍ର ମଲା କଥା ॥
ଭାଇ ଭଉଯା ଆଦି ତାର । ବେଢ଼ିଲେ ଶବ ପାରୁଶର ॥
ମୃତ ଦେହକୁ ପକାଇଣ । ଅନେକ କରନ୍ତି ରୋଦନ ॥
ନିଜ ସ୍ୱାମୀର ଗୁଣ ଗୁଣି । ଅନେକ କାନ୍ଦେ ସେ ତରୁଣୀ ॥
ମାତା ପୁତ୍ରର ଗୁଣମାନ । ଚିନ୍ତିଣ କରନ୍ତି ରୋଦନ ॥
ପିତା ଯେ ଅନେକ ପ୍ରକାରେ । ପୁତ୍ରକୁ ଧରି ଶୋକ କରେ ॥
ଆବର ଭ୍ରାତା ଗୁଣ ଗୁଣି । କାନ୍ଦଣ ଲୋଟଇ ଧରଣୀ ॥
ଏମନ୍ତେ ସ୍ୱଜନ ଯାକ । ଅନେକ କରୁଛନ୍ତି ଶୋକ ॥
ଏହି ସମୟେ ଦାମୋଦର । ପଶିଲେ ପଶ୍ଚିମ ଦାଣ୍ଡର ॥
ଲୀଳା ଛଳରେ ବିଜେ କଲେ । ଭକ୍ତର ଦ୍ୱାରେ ସେ ମିଳିଲେ ॥

ଏତେକ ବିଶ୍ୱାସ ଅଛୁ ତୋର । କାହୁଁ ମରିବ ତୋ କୁମର ॥
ଆମ୍ଭେ ଯେ ହେଉଛୁ କଲ୍ୟାଣ । ଲଭ ତୁ ଆପଣା ନନ୍ଦନ ॥
ତୋ ପୁତ୍ର ଶରଣାଗ ହେଉ । ଅନ୍ତେ ଗୋବିନ୍ଦ ପାଦ ପାଉ ॥
ତୋ ରାଣୀ ତୁହି ହେବ ଜନ । ଲଭ ହୋ ବୈକୁଣ୍ଠ ଭୁବନ ॥
ଆମ୍ଭ କଲ୍ୟାଣେ ଏହା ହେଉ । ତୋ କୀର୍ତ୍ତି ସୁନ୍ଦର ଯୁଗେ ରହୁ ॥
ଏବେ ତୁ ଯାଅ ଦଣ୍ଡଧାରୀ । ଡାକ ହୋ ପୁତ୍ର ନାମଧରି ॥
ରାଣୀ ସଙ୍ଗତେ ତୁମ୍ଭେ ଯାଅ । ଦେଖି ଆସିବ ତୁମ୍ଭ ପୁଅ ॥
ଶୁଣିଣ ରାଜା ରାଣୀ ଗଲେ । ଶ୍ରୀକୃଷ୍ଣ ମାୟା ନ ଜାଣିଲେ ॥
ଡାକିଲେ ଆସରେ କୁମର । ଭୁଞ୍ଜିବା ହେଉଛୁ ଉଛୁର ॥
ମାତା ପିତାଙ୍କ ଡାକ ଶୁଣି । ଧାଇଁ ଅଇଲା ପୁତ୍ରମଣି ॥
ପୁତ୍ର ଦେଖିଣ ବାପା ମାଏ । ଅଇଲେ ଘେନିଣ ତନଏ ॥
ଘରେ ପ୍ରବେଶ ହେଲେ ଯାଇଁ । ଦେଖିଲେ ବିପ୍ର ଆଉ ନାହିଁ ॥
ବିସ୍ମୟ ହେଲେ ମନେ ମନ । ନିଶ୍ଚୟେ ପ୍ରଭୁ ଭଗବାନ ॥
ସ୍ଥିର ପୁତ୍ରର ପାଇଁ ଚଳୁ । ଅମୂଲ୍ୟ ନିଧି ହରାଇଲୁ ॥
ଆନର ବେଳେ କି ଏ କଥା । ମନର ଗାଏ କି ସର୍ବଥା ॥
ଏମନ୍ତ ବୋଲି ଦୁଇଜଣ । ଚିତ୍ତେ ଚିନ୍ତିଲେ ନାରାୟଣ ॥
ପ୍ରଭୁ ଶୂନ୍ୟରେ ଡାକ ଦେଲେ । ମୁହିଁଟି ଶ୍ରୀହରି ବୋଇଲେ ॥
ଆଜ କେ ମାଗିଲେ ଭୋଜନ । ପୁତ୍ରକୁ ନ ଦେବୁ ମାରଣ ॥
ଶୂନ୍ୟ ଶବଦ ଏହା ଶୁଣି । ଆନନ୍ଦେ କର୍ଣ୍ଣ ସାରମଣି ॥
ପୁତ୍ର ହରାଯା ତିନଜଣ । କେବଳ ଗୋବିନ୍ଦ ଭଜନ ॥
ଗଲେ ବୈକୁଣ୍ଠ ପରପତ । ଶୁଣ ହେ ମନୁ ନୃପନାଥ ॥
ଦାନର ମହିମା ଏମନ୍ତ । କେବଳ ଥିବ ଦୃଢ଼ଚିତ୍ତ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେ ପ୍ରାଣୀ ଶ୍ରଦ୍ଧାରେ ଶୁଣିବ । ହେଲେ ତରିବ ଭବାର୍ଣ୍ଣବ ॥
ସୁଜନେ କୃଷ୍ଣ ଚିନ୍ତାକର । ହେବ ସଂସାର ନୋହେ ଚର ॥
ହରି ପଦାରବିନ୍ଦ ଚିତ୍ତ । ମୋ ଚିତ୍ତ ରହୁ ଭୃଙ୍ଗମତ୍ତ ॥

ସୁଖ ଶ୍ରୀକୃଷ୍ଣ ପାଦ ଦୁଇ । ଅନ୍ୟ ଶରଣ ମୋର ନାହିଁ ।
ସାଧୁ ପାଦହିଁ ନାମ ନାବ । ମୋତେ ଏ ଦୁଇ ଆଶ୍ରେହେବ ।
ଶ୍ରେ ପ୍ରଭୁ ଏତେ ମାଗ କର । ଶରଣ ଜନ୍ମେ ଜନ୍ମେ ମୋର ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ କର୍ଣ୍ଣସଜା ପୁତ୍ର ମୋକ୍ଷଣେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଦୀନବନ୍ଧୁ ଦାନ ସମ୍ବାଦ

### ମନ ଉବାଚ

ମନ ବୋଲଇ ଚଇତନ । ଶୁଣିଲ କର୍ଣ୍ଣର ବଧାନ ।
ମୋର କଳୁଷ ଯେତେ ଥିଲା । ଶ୍ରବଣ ମାତ୍ରେ ଦୂରେ ଗଲା ।
କଳିଯୁଗରେ ଏହିମତେ । ତରି ତ ଯାଇଛନ୍ତି ଯେତେ ।
ଜାଣିଣ ଥିଲେ କହ କିଛି । ଶୁଣିବା ଶ୍ରଦ୍ଧା ମୋର ଅଛି ।
ତା ଶୁଣି ବୋଲେ ଚଇତନ । ଏବେ ତୁ ଶୁଣ ହୋ ସୁଜନ ।
କଳିଯୁଗର ଯେ ବ୍ୟବସ୍ଥା । ଅଶ୍ରୁତ ଅଗୋଚର କଥା ।
ଯାହା ଶୁଣିଛୁ ସାଧୁ ମୁଖୁ । ତାହା ମୁଁ କହିବି ତୁମ୍ଭଙ୍କୁ ।
ଅବନ୍ତି ନଗରେ ତା ଘର । ଜାତିରେ ଅଟେ ଦ୍ୱିଜବର ।
ନାମ ତା ଦୀନବନ୍ଧୁ ଦାସ । କୃଷ୍ଣ କଥାରେ ବଡ଼ ଆଶ ॥
ହରି ଚରଣ ବିନା ଅନ୍ୟେ । ଶ୍ରଦ୍ଧା ନ କରେ ତାର ମନେ ।
ତାହାର ସୁତ ବେନଗୋଟି । ପତ୍ନୀର ନାମ ତା ମାଳତୀ ।
ଝିଅଟିଏ ଏକ ବଧୂ ତାର । ସାଧବୀ ଚତୁରୀ ସୁନ୍ଦର ।
କୁଟୁମ୍ବ ପାଞ୍ଚଜଣ ତାର । ଏକକୁ ଆରକେ ଅନ୍ତର ।
ପ୍ରଭୁଙ୍କ ଯଶ ଗୁଣ ଯେତେ । ନିତ୍ୟେ ଚିନ୍ତନ୍ତି ହୃଦଗତେ ।
ସାଧୁଙ୍କ ମୁଖୁଁ ରସବାଣୀ । ହରତେ କର୍ଣ୍ଣପୁଟେ ଶୁଣି ।
ବଦନେ ପ୍ରଭୁ ନାମ ଭଜ । ଅସତ୍ୟ ସଙ୍ଗ ଦୂରେ ତେଜ ।
ମିଥ୍ୟା ବଚନ ନ କହନ୍ତି । ହରତେ ପରହିତେ ଥାନ୍ତି ॥

ଡାକଲେ ଦୀନବନ୍ଧୁ ଦାସ । ବନ୍ଦନ ଆସ ମୋର ପାଶ ॥
ଶୁଣିଲେ ଅପୂର୍ବ ବଚନ । ସମସ୍ତେ ଚେଇଲେ ସେବନ ॥
ଦାସେ ଉଷରେ ମୁଖ ଧୋଇ । ପ୍ରଭୁଙ୍କ ଆଗେ ହେଲେ ଯାଇଁ ॥
ଦେଖିଲେ ସନ୍ନ୍ୟାସୀ ଗୋସାଇଁ । ସାଷ୍ଟାଙ୍ଗେ ପ୍ରଣିପାତ ହୋଇ ॥
ଉଠି କପାଳେ କର ଦେଲେ । କ ଆଜ୍ଞା ଦେଉଛୁ ବୋଇଲେ ॥
ପ୍ରଭୁ ବୋଇଲେ ଦାସେ ଶୁଣ । ଆମ୍ଭେ ତୋ କାରଣ ଶୁଣିଣ ॥
ତେଣୁ ଅଇଲୁ ତୋର ପାଶ । ସୁତରେ ମୋତେ ଦଅ ଗ୍ରାସ ॥
ତା ଶୁଣି ଦୀନବନ୍ଧୁ ଦାସ । ବୋଇଲେ ପ୍ରଭୁ କ୍ଷଣେ ବସ ॥
ଆସନ ଦେଇ ଚଳିଗଲେ । ମନ୍ଦରେ ପ୍ରବେଶ ହୋଇଲେ ॥
ପୁଅ ଭାରିଯା ବଧୂ ଆଗେ । କହିଲେ ଅତ୍ୟନ୍ତ ସରାଗେ ॥
ଅତିଥି ଭୋଜନ ମାଗୁଛି । ଏଣେ ତ ପୁଅ ମରିଅଛି ॥
ଦେବା କି ନାହିଁ ଶୁଝିଚାଲେ । ବନ୍ଦନ କହ ସର୍ବମୋତେ ॥
ଶୁଣି ପୁତ୍ରବଧୂ ତିନଜଣ । କହନ୍ତି ପିଅର ଆଗେଣ ॥
ମଲେଟି ନ ଆସଇ ଆଉ । ଅତିଥି ସେବା ଆଗେ ହେଉ ॥
ନିରାଶେ ନଯାଉ ସନ୍ନ୍ୟାସ । ତା ଶୁଣି ଦୀନବନ୍ଧୁ ଦାସ ॥
ଅତ୍ୟନ୍ତ ଆନନ୍ଦ ହୋଇଲ । ମଶିଣା ଗୋଟିଏ ଆଣିଲ ॥
ମଲ ପୁତ୍ରକୁ ଶୁଆଇଲ । ବନ୍ଧନ କରି ଥୋଇଦେଲ ॥
ଗମ୍ଭୀରି ମଧ୍ୟେ ଲୁଚାଇଲ । ମନ୍ଦର ଲିପା ପୋଛା କଲ ॥
ସ୍ନାନାଦି ଶୁଚିମନ୍ତ ହୋଇ । ରନ୍ଧନ କଲେ ବେଗେ ଯାଇ ॥
ପ୍ରଭୁଙ୍କୁ ଡାକିଣ ଆଣିଲେ । ମନ୍ଦରେ ବଜେ କରାଇଲେ ॥
ଦିବ୍ୟ ଆସନେ ବସାଇଲେ । ଅନ୍ନ ବ୍ୟଞ୍ଜନ ପରଶିଲେ ॥
ଦେଖି ବୋଲନ୍ତି ଭଗବାନ । ଆମିଷ କରହେ ରନ୍ଧନ ॥
ନଷ୍ଟପୁ ଲେଉଟି ମୁଁ ଯିବ । ଆମିଷ ବନା ନ ଭୁଞ୍ଜିବ ॥
ତା ଶୁଣି ବନ୍ଧିଲେ ଆମିଷ । ବୋଇଲେ ସ୍ୱାମୀ ଭୁଞ୍ଜିବସ ॥
ଦେଖିଣ ବୋଇଲେ ଶ୍ରୀବତ୍ସ । ଏକ ପତ୍ରେତ ବାଢ଼ିଅଛ ॥
ଗୃହରେ ଅଛ ଯେତେ ଜନ । ସମସ୍ତେ ନ କଲେ ଭୋଜନ ॥

ଆମ୍ଭେ ନ ଭୁଞ୍ଜୁ ଏକାହୋଇ । ଯାଉଛୁ ଅନ୍ନ ରଖ ଭୁଞ୍ଜ ॥
ଶୁଣି ଗୁରୁଙ୍କ ଉତ୍ତର । ସମସ୍ତେ ହୃଦରେ ବିଚାର ॥
ଆମ୍ଭେ ଯଦ୍ୟପି ନ ଭୁଞ୍ଜିବା । ଅତିଥି ସେବା ନ ପାଇବା ॥
ଲେଉଟି ଯିବ ଏ ସନ୍ନ୍ୟାସ । ମନରେ ହୋଇଣ ନିରାଶ ॥
ଏମନ୍ତ ବିଚାରି ଭକତେ । ବାଢ଼ିଲେ ଗୁରୁଙ୍କ ନିମନ୍ତେ ॥
ଆମିଷ ମାତ୍ର ନ ବାଢ଼ିଲେ । ଦେଖିଣ ସନ୍ନ୍ୟାସୀ ବୋଇଲେ ॥
ତୁମ୍ଭେ ନ ବାଢ଼ିଲ ଆମିଷ । ଏଥେ କି ଭକତ ଅନ୍ନ ଦୋଷ ॥
ଜାଣିଲ କପଟ ତୁମ୍ଭର । ବୋଲି ଉଠିଲେ ଚକ୍ରଧର ॥
ତା ଶୁଣି ଦୀନବନ୍ଧୁ ଦାସ । ପୁତ୍ର ଭାରିଯା ଗଇ ପାଶ ॥
ଆପଣେ କଲେକ ବିଚାର । କି ବୁଦ୍ଧି କରିବା ଏଥର ॥
ତନୟ ମରିବା ଜାଣିଲେ । ଅତିଥି ନ ଭୁଞ୍ଜିବେ ଭଲେ ॥
ଏମନ୍ତ ବିଚାର କରିଣ । ବସିଲେ ଆମିଷ ଘେନିଣ ॥
ତାହାଙ୍କ ମନ ତତ୍ତ୍ୱ ଜାଣି । ହସି ବୋଲନ୍ତି ତାଙ୍କୁ ପୁଣି ॥
ଶୁଣହେ ଅନ୍ନଦାତା ତୁମ୍ଭ । ଗ୍ରାମରେ ପଶିଛୁ ମୁହିଁ ॥
ତୋହର ବେନି ଗୋଟି ସୁତ । ଏକଇ ବଧୂ ତାତ ମାତ ॥
ଏମନ୍ତେ ଅଛ ପାଞ୍ଚଜଣ । କାହିଁ ତୋ ଆରପୁତ୍ର ଅଣ ॥
ତା ଶୁଣି ଦୀନବନ୍ଧୁ ଦାସ । ହୃଦରୁ ଉଡ଼ିଲା ସାହସ ॥
କମ୍ପେ ଶରୀର ଥରହର । ବଦନୁ ନଇଲା ଉତ୍ତର ॥
ତା ଦେଖି ଚୈତନ୍ୟ ଗୋସାଇଁ । ବୋଲଇ ଭୟ କାହିଁପାଇଁ ॥
ମାୟା ନକର ସତ କହ । କାହିଁ ଅଛଇ ତୋର ପୁଅ ॥
ଶୁଣି କୁଟୁମ୍ବ ଗୃହଜନେ । ପଡ଼ିଲେ ଅତିଥି ଚରଣେ ॥
ହେ ସ୍ୱାମୀ ! ଶୁଣ ଏବେ ତୁମ୍ଭେ । ସ୍ୱରୂପ କହୁଅଛୁ ଆମ୍ଭେ ॥
ସର୍ପାଘାତରେ ପୁତ୍ର ମର । ଲୁଚାଇ ଥୋଇଛୁ ଗମ୍ଭୀରୀ ॥
ତାଶୁଣି ବୋଲନ୍ତି ଅତିଥ୍ୟ । ଦେଖିଲେ ମଣିବା ନା ସତ ॥
ଶୁଣିଣ ମାତା ପିତା ଗଲେ । ପୁତ୍ରକୁ ବହିଣ ଆଣିଲେ ॥
ମଣିଷା ଗୋଟି ବେଲେ ଫେଇ । ମଲା ପୁତ୍ର ଯେ ଅଛି ତହିଁ ॥

ଦେଖି ବୋଇଲେ ପୀତବାସ । ଶୁଣ ହେ ଧ୍ୟାନବନ୍ଧୁ ଦାସ ॥
କେ ତୋହର ବୋଲେ ଜ୍ଞାନବନ୍ତ । ଜାଣିଲି ବଡ଼ ମନ୍ଦ ଭୂତ ॥
ମଲା ପୁଅକୁ ଗୃହେ ଥୋଇ । ବସିଛୁ ମାଛ ଭାତ ଖାଇ ॥
ଦାସେ ବୋଇଲେ ହେ ଗୋସାଇଁ । ତୁମ୍ଭଙ୍କୁ କ କହିବି ମୁହିଁ ॥
କେ ଅଟେ କାହାର କୁମର । କେ ଅଟେ କାହାର ପିଅର ॥
ଯେସନେ ଦୂତବୃକ୍ଷ ଥାଇ । ରହିଁ ବଣ୍ଡଳ ବଣ୍ଡଳଇ ॥
କେତେହେଁ କହିରୁ ଝଡ଼ଇ । କେତେ ବା ଝଡ଼ଣ ପଡ଼ଇ ॥
କେତେ ପାଚିଲା ଯାଏ ଡାଳେ । ଥାଇଣ ପଡ଼େ ବୃକ୍ଷତଳେ ॥
ଏମନ୍ତେ କେତେ ଝଡ଼ି ଯାଇ । ତା ଭୁଲେ ବୃକ୍ଷନକ ଧାଇଁ ॥
ଏହି ପ୍ରକାରେ ଏ ସଂସାର । ବୃକ୍ଷରୁ ଫଳଇ ପ୍ରକାର ॥
ତାହାର ସୂତେ ସେ ଝଡ଼ିଲା । ମୋର ଅଭିଥି ସେବା ହେଲା ॥
ଏଥିରୁ ବଳ ଭାଗ୍ୟ କାସ । ଶୁଣି ହସିଲେ ପୀତବାସ ॥
ବୋଇଲେ ଦାସପତ୍ନୀ ଶୁଣ । ତୁମ୍ଭ ତ ବଡ଼ଇ କାରୁଣ ॥
ନିହତ ପୁତ୍ରକୁ ପକାଇ । ବସିଛୁ ମାଛ ଭାତ ଖାଇ ॥
ଶୁଣି ସୁବର୍ଣ୍ଣ କହେ ଧୀର । ଯାହା ବୋଇଲେ ମୁନିବର ॥
ସ୍ୱରୂପ ଶୁଣ ହେ ଗୋସାଇଁ । ମୁଁ କେ ମୋ ପୁତ୍ରକେ ଅଟଇ ॥
ଯେସନେ ଚକ୍ରୀ ଚକ୍ରଖଣ୍ଡ । ମୃତ୍ତିକା ଲଭି ଗଢ଼େ ଭାଣ୍ଡ ॥
କେ ଗଢ଼ୁ ଗଢ଼ୁ ଭାଙ୍ଗିଯାଇ । କେତୁ ପୋଡ଼ିବା ଯାଏ ଥାଇ ॥
ଯେବଣ ଭାଣ୍ଡ ଭାଙ୍ଗିଯାଇ । ତା ଭୁଲେ ଚକ୍ରୀ ନକ ଧାଇଁ ॥
ସେ ଭାଣ୍ଡ ଚକ୍ରୀ ମୂର୍ତ୍ତି ଶୁଣ । ଏ ସର୍ବ ଗୋବିନ୍ଦ ଭିଆଣ ॥
ଶୁଣି ଆନନ୍ଦ ହୃଷୀକେଶ । ଆଉ ପୁତ୍ରକୁ ଗଲ ପାଶ ॥
ବୋଇଲେ ଶୁଣରେ କୁମର । ଏ ପର ଭ୍ରାତ ଅଟେ ତୋର ॥
ମୃତ ଦେହକୁ ଭୁ ପକାଇ । ବସିଛୁ ମାଛ ଭାତ ଖାଇ ॥
ତୋଠାରୁ ନାହିଁ ବା ଅଜ୍ଞାନ । ତା ଶୁଣି ବୋଲଇ ନନ୍ଦନ ॥
ଶୁଣ ହେ ସନ୍ନ୍ୟାସୀ ଗୋସାଇଁ । ସେ ମୋର କେତେ ଜନ୍ମଭାଇ ॥
ମୁଁ ତାର କେମନ୍ତେ ସୋଦର । ଏ ସର୍ବ ମାୟାର ସଂସାର ॥

ଯେସନେ ହାଟେ ବଣିଜାର । ପସରା ବସାଇ ଅପାର ॥
ଏକଇ ଭ୍ରାତା ପ୍ରାପ୍ତ ହୋଇ । କରିଣ ବିକୁଥାନ୍ତି ତହିଁ ॥
ବ୍ୟାପାର ସରଇ ଯାହାର । ସେ ବାହୁଡଲେ ତାର ପୁର ॥
ଯାହାର ସରିଣ ନ ଥାଇ । ସେ ନକ ତାର ସଙ୍ଗେ ଯାଇ ॥
ସେହି ପ୍ରକାରେ ଏ ସଂସାର । ତାହାର ମୋହର ବ୍ୟାପାର ॥
ବ୍ୟାପାର ସରିଲା ସେ ଗଲା । ମୋର ଅଛଥି ସେବା ହେଲା ॥
ଶୁଣି ସାନନ୍ଦ କୃପାନିଧି । ବୋଇଲେ ଧନ୍ୟ ଏହା ବୁଦ୍ଧି ॥
ତାହାର ବୋହୂକୁ ଡାକଲେ । ଶୁଣ ଗୋ କୁମାସ୍ତ ବୋଇଲେ ॥
ଏ ପର ସ୍ୱାମୀ ଅଟେ ତୋର । ତୁ ପର ଘରଯା ତାହାର ॥
ନଜ ପତି ଯେ ତୋର ମଲା । ବିଧବା ଯୋଗ ତୋର ହେଲା ॥
ମୃତ ପିଣ୍ଡକୁ ଘରେ ଥୋଇ । ଆମିଷ ଭୁଞ୍ଜି ଲେଓ୍ଡ଼ ଭୁଞ୍ଜ ॥
ଧିକ ତୋ ଜ୍ଞାନବନ୍ତ ପଣ । କୁମାଷ୍ଟ ବୋଲେ ପ୍ରଭୁ ଶୁଣ ॥
କେହୁ ଅଟଇ କାହା ଭର୍ତ୍ତା । କେ ପୁଣି କାହାର ବନିତା ॥
ଯେସନେ ଘୋର ବୃଷ୍ଟିକାଳେ । ନଦୀ ପୂରିଣ ବହେ ଜଳେ ॥
ବନସ୍ତ କାଠ ଖଣ୍ଡ ଦୁଇ । ମିଶିଣ ଭାସି ଯାଉଥାଇ ॥
କେତେହେଁ ଦୂରେ ଭାସି ଯାନ୍ତେ । ଲଟାଏ ଉହାଡ଼ନ୍ତି ପଥେ ॥
ତହୁଁ ଗୋଟିଏ ଲଗି ରହି । ଆରେକ ଝଣ୍ଟି ଭାସିଯାଇ ॥
ଯେବଣ କାଠ ଭାସିଯାଇ । ଆରେକ କାଠ କ ଗୋଡ଼ାଇ ॥
ସେହି ପ୍ରକାରେ ଏ ସଂସାର । ଗୋବିନ୍ଦ ଲୀଳା ଖେଳଘର ॥
ଜନା ଅର୍ଜ୍ଜିତେ ସେହି ଗଲା । ମୋର ଅଛଥି ସେବା ହେଲା ॥
ଶୁଣି ବୋଲନ୍ତି ଭଗବାନ । ଧନ୍ୟ ଏ ବୃଶଙ୍କର ମନ ॥
ଏହାଙ୍କ ପରିଯେ ହୋଇଣ । ନ ଥିବେ ବ୍ରହ୍ମାଣ୍ଡ ମଧ୍ୟେଣ ॥
ଏମନ୍ତ ବୋଲି ନରହରି । ଜଳ ତୁଳସୀ କରେ ଧରି ॥
ମୃତର ମୁଖରେ ସିଞ୍ଚିଲେ । ଉଠରେ କୁମର ବୋଇଲେ ॥
ତତ୍କ୍ଷଣେ କୁମର ଉଠିଲା । ଗୋବିନ୍ଦ ଚରଣେ ଲୋଟିଲା ॥
ପ୍ରଭୁ ବୋଇଲେ ଆରେ ସୁତ । ମୁଁ ତ ଦେଖିଲି ବିପରୀତ ॥

ଦେଖି ତୋ ଜନନୀ ପିଅର । ଆଦର ପତ୍ନୀ ସହୋଦର ।
ତୋର ଅର୍ଜନେ କରି ଆଶ । ଖଟିଣ ଥାନ୍ତି ତୋ'ର ପାଶ ।
ଏବେ ତୋ ମୃତ୍ୟୁକାଳ ଦେଖି । ଗୁପତ କରି ତୋତେ ରଖି ।
ବସିଲେ ମାଛ ଘାତ ଖାଇ । କେହ୍ନେ ଏହାଙ୍କ ଘରେ ଭୁଞ୍ଜି ।
ହୋଇଣ ଅଳ୍ପରେ ନନ୍ଦନ । ଧିକ ଏ ତୋହର ଜୀବନ ।
ତା ଶୁଣି କୁମର ବୋଲଇ । ଶୁଣହେ ସନ୍ନ୍ୟାସୀ ଗୋସାଇଁ ।
କେ କାର ଜନନୀ ପିଅର । କେ କାର ଭ୍ରାତା ସହୋଦର ।
କେ କାର ଅଟଇ ଯୁବତୀ । କେ ପୁଣି ଅଟେ କାହା ପତି ।
ମିଥ୍ୟା ଅଟଇ ଏ ସଂସାର । କେହ୍ନେ ତ ନୁହଇ କାହାର ।
ଯେସନେ ଘୋର ଗ୍ରୀଷ୍ମକାଳେ । ପଥରେ ପଥିକ ସକଳେ ।
ପାଞ୍ଚ ପଚାଶ ଯାଉଛନ୍ତି । ବାଟରେ ବୃକ୍ଷେକ ଦେଖନ୍ତି ।
ଏକ ବୃକ୍ଷର ପ୍ରାନ୍ତେ ହୋଇ । ବସନ୍ତି ତାହା ତଳେ ଯାଇ ।
ଶ୍ରମ ସାରିଲେ ଯେଝାମତେ । ଚଳନ୍ତି ବୃକ୍ଷ ଥାଇ ପଛେ ।
ସେହି ପ୍ରକାରେ ଏ ସଂସାରେ । ଋଣାନୁ ବନ୍ଧନ ବେଭରେ ।
ଏଥିକୁ ଶ୍ରୀକୃଷ୍ଣ ଭଜନ । ସାଧୁଙ୍କ ସେବା ପ୍ରତିଦିନ ।
କରି ବଞ୍ଚଇ ଯେଉଁ ନର । ଧନ୍ୟ ଜୀବନ ବୋଲି ତାର ।
ପୁଣି ବୋଇଲେ ନାରାୟଣ । ଧନ୍ୟ ଏ ଅଟେ ପାଞ୍ଚଜଣ ।
ଜୀବନ୍ତେ ସୁଖୀ ହୋଇଥାଅ । ଅନ୍ତେ ଶ୍ରୀହରି ପାଦ ପାଅ ।
ଏମନ୍ତ ଆଜ୍ଞା ଦେଲେ ପୁଣି । ଅତି ଆନନ୍ଦେ ପାଞ୍ଚପ୍ରାଣୀ ।
ଅଭୟ ପଦ୍ମପାଦ ତଳେ । ସର୍ବେ ପଡିଲେ ଏକାବେଳେ ।
ପ୍ରଭୁ ଅଭୟ କରଦେଲେ । ଅଭୟ ମୁଖରେ ବୋଇଲେ ।
ଆମ୍ଭେଟି ଜଗତ ଜୀବନ । ବୋଲି ହୋଇଲେ ଅନ୍ତର୍ଦ୍ଧାନ ।
ତକ୍ଷଣେ ଉଠି ପାଞ୍ଚଜଣ । ଦେଖିଲେ ନାହାନ୍ତି ଆପଣ ।
ବୋଇଲେ ଦୟାଳୁ ଠାକୁର । ଏଡ଼େ ନିଷ୍ଠୁର ହୃଦ ତୋର ।
ଦେଖାଇ ନିଧି ହରିନେଲୁ । ନେତ୍ର ପିଣ୍ଡୁଡ଼ ନ ଦେଖିଲୁ ।
ଯା ମାୟା ବେଦେ ଅଗୋଚର । ଆମ୍ଭେ କା କେତେକ ମାତର ।

ହେଲେ ତୋ କୃପାପାତ୍ର ଥାଉଁ । ଅଧିକ କ କହିବା ଆଉ ॥
ସାଧୁଙ୍କ ସଙ୍ଗେ ବାଦ କଲେ । ପରମ ପାଦ ସେ ଲଭିଲେ ॥
କହଇ ଚଇତନ୍ୟ ଧୀରେ । ମନ ନୃପତିର ଆଗରେ ॥
କଳିଯୁଗର ଭକ୍ତବାଣୀ । ଶୁଣି ପବିତ୍ର ହୁଅ ପ୍ରାଣୀ ॥
କହଇ ଘନବନ୍ଧୁ ଦାସ । ସାଧୁ ଚରଣେ ମୋର ଆଶ ॥
ଶ୍ରୀରାମ ଶ୍ରୀକୃଷ୍ଣ ଶ୍ରୀହରି । ମୁକୁନ୍ଦ ମାଧବ ମୁରାରି ॥
ଭଜ ଗୋବିନ୍ଦ ଆନନ୍ଦକନ୍ଦ । ଘନବାନ୍ଧବ ସଦାନନ୍ଦ ॥
ଅନନ୍ତ ଅଚ୍ୟୁତ ଶ୍ରୀବତ୍ସ । ନାମ ଗୋଟିକ କୋଟି ମୋକ୍ଷ ॥
ଏ ନାମ ଭଜ ଜୀବ ସାଉ । ହେ ପ୍ରଭୁ ! ଏହି ଆଜ୍ଞା ହେଉ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ
ଘନବନ୍ଧୁ ଦାସ ଦୃଢ଼ଭକ୍ତିଭାବ ବର୍ଣ୍ଣନେ
ନାମ ଚତୁର୍ଥୋଽଧ୍ୟାୟଃ ।

—:o:—

## ପଞ୍ଚମ ଅଧ୍ୟାୟ

### ଦାମୋଦର ଦାସ ସମ୍ବାଦ

ମନ ବୋଇଲେ ଚଇତନ । କହିଲ ପୂର୍ବର ବଚନ ॥
କଳିଯୁଗର ଭକ୍ତବାଣୀ । କୃତାର୍ଥ ହେଲି ତାହା ଶୁଣି ॥
ଯେସନେ କ୍ଷୁଧାତୁର ଜନ । ପାଇଲେ ଦୁର୍ଲଭ ଭୋଜନ ॥
ଅଳପେ ନ ତୋଷଇ ମନ । ତେସନ ହେଲା ମୋ ଜୀବନ ॥
ଆହୁରି କେତେ ଏହିପରି । କଳିଯୁଗରେ ଗଲେ ତରି ॥
ସମସ୍ତ କହ ମୋର ପାଶ । ମୋ ହୃଦ କଳୁଷ ବିନାଶ ॥
ଚୈତନ୍ୟ ବୋଲେ ତାହା ଶୁଣି । ଶୁଣ ହେ ମନ ନୃପମଣି ॥
କାଞ୍ଚି ନଗରେ ତାର ବାସ । ନାମ ତା ଦାମୋଦର ଦାସ ॥
ଜାତିରେ ଅଟଇ ବ୍ରାହ୍ମଣ । ପତ୍ନୀ ସହିତେ ଦୁଇଜଣ ॥

ପୂର୍ବ ଦୁର୍ଦ୍ଦଶା ତାର ନାହିଁ । ଭିକ୍ଷା ମାଗିଣ ସେ ବଞ୍ଚଇ ।
ଅତି ଦରିଦ୍ର ତା ଜୀବନ । ନାହିଁ ତା ବାଡ଼ ବୃତ୍ତି ମାନ ।
ସଂସାରେ ଯେତେ ଦେହଧାରୀ । ତା ଠାରୁ ନ ଥିବେ ଭିକାରୀ ।
ପ୍ରଭାତୁ ସ୍ନାହାନ ସାରଇ । ଦ୍ୱାଦଶ ତିଳକ ଯେନଇ ।
ମୁଣ୍ଡେ ତୁଳସୀଦଳ ଭରି । ତୁଣ୍ଡେ ବୋଲଇ ରାମହରି ।
ଭିକ୍ଷାର ଅର୍ଥେ ସେ ନଗରେ । ବୁଲି ମାଗଇ ଦ୍ୱାରେ ଦ୍ୱାରେ ।
ଏମନ୍ତ ବୁଲେ ଦଶଦିଶେ । ଦିବସ ଶେଷେ ଘରେ ଆସେ ।
ଯା କିଛି ତାକୁ ମିଳଥାଇ । ପ୍ରାଣ ପୋଷଇ ତାହା ଖାଇ ।
କି ଅବା ଦଇବ ଯୋଗରେ । ଅତିଥେ ମାଗିଲେ ଦୁଆରେ ।
ଅଧେକ ଖାଇ ଅଧେ ଦ୍ୟନ୍ତି । ଚିନ୍ତା ନ ଥାଏ ତାଙ୍କ ମତି ।
କି ଅବା ଦୁର୍ଭିକ୍ଷ ଭିକାରୀ । ଆସି ମିଳନ୍ତେ ପାଞ୍ଚସ୍ୱର ।
ସମସ୍ତ ଦେଇ ତାଙ୍କ ପାଶେ । ଆପେ ରହନ୍ତି ଉପବାସେ ॥
ଏମନ୍ତ ବଞ୍ଚି ଥାଇ ଜନ । କଉଣ ଗୋବିନ୍ଦ ଭଜନ ।
ସକଳ ଜୀବ ଦୟାଦ୍ରବ । ନ ଶୁଣେ ପର ଅପବାଦ ।
ନିରତେ ପ୍ରାଣୀଙ୍କ ମଙ୍ଗଳ । ବାଞ୍ଛା କଉଣ ବଞ୍ଚେ କାଳ ।
ଏମନ୍ତେ କେତେ କାଳ ଗଲା । ତା କାହିଁ ଜଗତେ ପଡ଼ିଲା ।
ଜାଣିଲେ ପ୍ରଭୁ ଚକ୍ରଧର । ବଢ଼ିବା ପାଇଁ ସତ୍ୟ ତାର ।
ତକ୍ଷଣେ ପ୍ରଭୁ ପୀତବାସ । ମାୟାରେ ହେଲେ ଯୋଗୀବେଶ ।
ସର୍ବାଙ୍ଗେ ବିଭୂତି ଭୂଷଣ । କଣ୍ଠେ ରୁଦ୍ରାକ୍ଷମାଳା ମାନ ।
ମସ୍ତକେ ଶୋଭେ ଜଟାଭାର । କର୍ଣ୍ଣରେ ଚମ୍ପାର କୁଣ୍ଡଳ ।
ଚମ୍ପା ଗୁଣ୍ଡିଲେ ଧରି କରେ । ଚାଲନ୍ତି ଅତି ଧୀରେ ଧୀରେ ।
ଅତି ଦୁର୍ବଳ ବୃଦ୍ଧଦେହୀ । ଚାଲିଯିବାକୁ ଶକ୍ତି ନାହିଁ ।
ଏମନ୍ତ ବେଶେ ଦାମୋଦର । ମିଳିଲେ ଦାସଙ୍କ ମନ୍ଦିର ।
ତେଣେ ଯେ ଦାସ ବୁଲି ଦେଶ । ଆସିଛି ହୋଇଣ ନିରାଶ ।
କାହିଁ ନ ପାଇ ଭିକ୍ଷା କିଛି । ଉପବାସରେ ଶୋଇଛନ୍ତି ।
ସ୍ୱାମୀ ଘରଣୀ ଦୁଇଜଣ । କ୍ଷୁଧାରେ ବିକଳ ହୋଇଣ ।

ଚିନ୍ତ ଶ୍ରୀହରି ପାଦ ଦୁଇ । ନେତ୍ର ଲୋତକଧାର ବହି ।
ହେ ପ୍ରଭୁ ଦୀନଜନ ବନ୍ଧୁ । ନାମ କରୁଣାମୟ ସିନ୍ଧୁ ।
ଅଭକ୍ତ ରକ୍ଷଣ ତୋ ବାନା । ଭକ୍ତ୍ୟ ଦୁରିତ ବଜ୍ରସେନା ।
ଦୁର୍ଜ୍ଜନ ମଣ୍ଡୂକର ଫଣୀ । ଜଗତ ଜନ ଚିନ୍ତାମଣି ।
ଦର୍ପିତ କରୀର କେଶରୀ । ସକଳ ଜୀବେ ଅଧିକାରୀ ।
ତେଣୁ ଶରଣ ଗଲି ତୋତେ । ଆର୍ତ୍ତଙ୍କୁ ରକ୍ଷାକର ମୋତେ ।
ଏତେକେ କଷ୍ଟୁର ସମସ୍ତରେ । ଯେବେ ଅତିଥି ମୋର ଦ୍ୱାରେ ।
ଆସିଣ ହୋଇବେ ପ୍ରବେଶ । ତାହାଙ୍କୁ ଦେବ ମୂର୍ତ୍ତି କସ ।
ଏମନ୍ତ ବୋଲି ଚିନ୍ତାକରି । ଦ୍ୱାରେ ଡାକିଲେ ନରହରି ।
ବୋଲଇ କେହୁ ଅଛ ଘରେ । ଆମ୍ଭେ ଅତିଥି ତୋ ଦୁଆରେ ।
ଶୁଣିଣ ଦାମୋଦର ଦାସ । ମିଳିଲା ମହାଯୋଗୀ ପାଶ ।
ପ୍ରଭୁଙ୍କୁ କରି ନମସ୍କାର । ବୋଇଲେ ଦ୍ୱିଜ ଦାମୋଦର ।
ହେ ସ୍ୱାମୀ କିମ୍ପାଇଁ ଆଗତ । ମିଥ୍ୟା ନ କହି କହ ସତ୍ୟ ।
ଶୁଣି ବୋଲନ୍ତି ଚକ୍ରଧର । ଆରତ ଶୁଣିଲୁ ତୋହର ।
ଆସିଲୁ ଭୋଜନ ନିମନ୍ତେ । ଦେବ କି ନାହିଁ କହ ମୋତେ ।
ତା ଶୁଣି ଦାମୋଦର ଦାସ । ବୋଇଲେ ଦଣ୍ଡେ ମାତ୍ର ବସ ।
ଅତିଥି ବସାଇ ଚଳିଲେ । ପତ୍ନୀର ପାରୁଶେ ମିଳିଲେ ।
ବୋଇଲେ ଶୁଣସି ଗୋ ସତୀ । ଅତିଥି ଭୋଜନ ମାଗଇ ।
ଏଥିକୁ କହ କି ବିଚାର । ତା ଶୁଣି କହେ ପତ୍ନୀ ତାର ।
ହେ ସ୍ୱାମୀ ମୋତେ କି ପଚାର । ତୋତେ କି ଅଛଇ ଉଦାର ।
ଘର ବିକିଲେ ସବୁ ତୋର । ନୋହିବ ପଣେ କଉଡ଼ିର ।
ବସ୍ତ୍ର ଗୋଟିଏ ଥିଲେ ଘରେ । ବନ୍ଧସ୍ତ କରନ୍ତି କାହାରେ ।
ଆଜି କି ଅଛି ତୁମ୍ଭ ଘରେ । ହେ ସ୍ୱାମୀ କହ ମୋ ଆଗରେ ।
ପତ୍ନୀର ମୁଖୁ ଏହା ଶୁଣି । ବେନି ନୟନୁ ବହେ ପାଣି ।
ଦ୍ୱାରୁ ଅତିଥି ଲେଉଟିବ । ଏ ପାପୀ ଜୀବ କିମ୍ପା ଥିବ ।
ସ୍ୱାମୀର ମୁଖ ଏ ବଚନ । ଶୁଣିଣ ଯୁବତୀ ରତନ ।

ଅତି ଆରତେ ସେ ତରୁଣୀ । ଚିନ୍ତିଲା ପ୍ରଭୁ ଚକ୍ରପାଣି ॥

ଆତଙ୍କ ଫେଡ଼ ହେ ଆମ୍ଭର । ବୋଲି ଚିନ୍ତିଲା ଚକ୍ରଧର ॥

ମୋ ସ୍ୱାମୀ ବୃଦ୍ଧ ହେ ଆରତ । ଆମ୍ଭର ପ୍ରଭୁ ଜଗନ୍ନାଥ ॥

ଅବଶ୍ୟ ମିଳିବ ଭୋଜନ । ଏବେ ହୋ ମୋହଠାରୁ ଶୁଣ ॥

ନାପିତ ଗୃହେ ଯାଇଁ କର । ବହନ ଆଣ ହେ କତୁଷ ॥

ତା ଶୁଣି ଦାମୋଦର ଦାସ । ମନରେ ହୋଇଣ ହରଷ ॥

ନାପିତ ଦ୍ୱାରେ ବେଗେ ଗଲେ । କତୁରୀ ବହନ ଆଣିଲେ ॥

ଦେଲ ତା ପତ୍ନୀର ହସ୍ତର । ବୋଇଲା କି କରିବୁ କର ॥

ଶୁଣି ଯୁବତୀ ହସ ହସଂ । ବୋଇଲା ଦେଖ ମୋର କେଶ ॥

ଅଚ୍ଛେଦ ପକାଅ କତୁରୀ । ବସିଣ ବଳବା ତହୁଁରୀ ॥

ସତ୍ୱରେ ନେଇ ବିକଆଣି । ସେବିବା ଅତିଥି ଚରଣ ॥

ଶୁଣି ଆନନ୍ଦ ହେଲେ ଦାସେ । ପତ୍ନୀକି ବସାଇଣ ପାଶେ ॥

ସ୍କନ୍ଧଗରୁ କେଶ ଥୋଇ । ମଧ୍ୟ ଧରିଲେ ମୁଠେଆଇ ॥

ସମୂଳ କରିଣ କତୁରୀ । ବସିଣ ଜଳରେ ତହୁଁରୀ ॥

ତତକ୍ଷଣେ ଗ୍ରାମକୁ ଯାଇଣ । ବିକ ଆଣିଲେ ପାଞ୍ଚପଣ ॥

ସବୁ ଚାଉଳ ମୁଗଡାଲି । ଘୃତ ନବାତ ଦୁଧ ଦହି ॥

ନାନାଦି ଦ୍ରବ୍ୟ କିଣିଆଣି । ରନ୍ଧନ କଲାକ ତରୁଣୀ ॥

ଡ଼ାକିଆଣିଲେ ନାରାୟଣ । ଆନନ୍ଦେ ଧୋଇଲେ ଚରଣ ॥

ପ୍ରଭୁଙ୍କ ପାଦପଦ୍ମ ବାରି । ସୁଖେ ସେବିଲେ ନରନାରୀ ॥

ଥୋକାଏ ମସ୍ତକେ ସିଞ୍ଚିଲେ । ମହା ଆନନ୍ଦ ଦୁହେଁ ହେଲେ ॥

ଦେଖ କହା ଭାଗ୍ୟ ତାହାଙ୍କର । ଯାହା ନ ପାଏ ଦେବବର ॥

ଚୌରାଶି ଘାଟେ ଗଙ୍ଗାଜଳ । ଥୋଇଣ ଥିଲ କମଣ୍ଡଳ ॥

ଯେବଣ ଚରଣେ ଢାଳିଲ । କେଞ୍ଚିତ ମାତ୍ର ନ ପାଇଲ ॥

ଭକ୍ତକୁ ନିକଟ ଗୋସାଇଁ । ଅଭାବ ଲୋକେ ଭେଟନାହିଁ ॥

ପିଢ଼ା ଖଣ୍ଡିଏ ରଖିଦେଲେ । ତହିଁ ଅତିଥି ବସାଇଲେ ॥

ଆପଣେ ଦାସ ପତ୍ନୀଗଲେ । ଅନ୍ନ ବ୍ୟଞ୍ଜନ ପରଶିଲେ ॥

ଗୋବିନ୍ଦ ଭୁଞ୍ଜିଲେ ହରଷେ । ବୋଇଲେ ଶୁଣ ଆହେ ଦାସେ ॥
ଆଜ କ ଅନ୍ନ କରୁ ଅଛୁ । ତା ଶୁଣି ଗଲା ସେ ମୃଗାକ୍ଷୀ ॥
ଘାକ ଯେତେକ ଅନ୍ନଥିଲା । ପ୍ରଭୁଙ୍କ ପଟେ ପରଶିଲା ॥
ଭୁଞ୍ଜି ଉଠିଲେ ଭବଗ୍ରାହୀ । ବସିଲେ କଷାଫଳ ଖାଇ ॥
ଦୁହେଁ ଅଛନ୍ତି ଉପବାସ । କେ କହୁ ତାହାଙ୍କ ହରଷ ॥
ପ୍ରଭୁ ବଖାଣୁଛନ୍ତି ମନ । ଧନ୍ୟ ଏ ଦୁହିଁଙ୍କ ଜୀବନ ॥
ଭଙ୍ଗା କୁଡ଼ିଆ ଅଛି ରହି । ଲେଙ୍କଡ଼ା କନାଠାରୁ ନାହିଁ ॥
ବୋଇଲେ ଅନ୍ନ ନାହିଁ କରୁ । ଆପଣେ ଉପବାସ ଅଛୁ ॥
କେଶ କାଟିଣ ମୋତେ ଦେଲେ । ଆନ ଜେ ଲକ୍ଷ ଏହା ଭୁଲେ ॥
ଏମନ୍ତ ବୋଲି ନାରାୟଣ । ବାସକୁ ପାଶକୁ ଗଲେଣ ॥
ଦେଖ ହେ ରଜନୀ ଆଗତ । ଶୋଇ ନପାରେ ହେ ଭକତ ॥
ଏ ଉଲ ଅନ୍ନ ମୋତେ ଦେବୁ । ପ୍ରଭାତୁ ଆମ୍ଭେ ଚଳିଯିବୁ ॥
ତା ଶୁଣି ଦାମୋଦର ଦାସ । କହିଲେ ନିଜ ନାରୀପାଶ ୧୦୦ ॥
ଆଜ ଜଗ ଅତିଥି ରହିଲେ । ଶୁଣିବା ଶକ୍ତି ନାହିଁ ବୋଲେ ॥
ଶୁଣି ଯୁବତୀ କହେ ଧୀର । କମ୍ପାଇ ଚିନ୍ତା ହୋ ଆମ୍ଭର ॥
ତାଙ୍କ ଯେତେକ କେଶ ଅଛି । ସେ ସବୁ କାଟି ନିଅ ପୋଛି ॥
ସ୍ୱାମୀ ତା ଶୁଣିଣ ଆନନ୍ଦ । ମୁଖ ପ୍ରକାଶେ ପୂର୍ଣ୍ଣଚନ୍ଦ୍ର ॥
ଯେତେକ କେଶ ତାଙ୍କ ଥିଲା । ସବୁ କତୁରୀ ପକାଇଲା ॥
ନାରୀ ତାହାର ଲଣ୍ଡାମୁଣ୍ଡେ । ବାନ୍ଧିଲା ଛିଣ୍ଡା କନା ଖଣ୍ଡେ ॥
ସ୍ୱାମୀ ଘେନିଯା କସିକଟି । ଆନନ୍ଦେ ବିକିଲେ ଚଉଁରୀ ॥
ପୁଣି ବିକିଲେ ପାଞ୍ଚପଣ । ନାନାଦି ପଦାର୍ଥ କିଣିଣ ॥
ସତେ ରନ୍ଧଣା ତାହା କଲେ । ସବୁ ଗୋବିନ୍ଦେ ସମର୍ପିଲେ ॥
କୃଷ୍ଣ ସମସ୍ତ ଦେଲେ ଖାଇ । କହିବାଠାରେ ଦସ୍ତ ନାହିଁ ॥
ଭୋଜନ ସାରି ଭଗଗ୍ରାହୀ । ତୃଣ ଗୁଡ଼ାଏ ପାରି ଶୋଇ ॥
ସାରି ଆସନ ନାଗରାଜ । ଆବର ବନିତା ଆମ୍ଭଜ ॥
ମୁନିଙ୍କ ହୃଦୟ କମଳ । ରୁଦ୍ର ଦେବତା ବକ୍ଷସ୍ଥଳ ॥

ସେ ପୁଣି ଭକତ ଘରରେ । ଶୋଇଲେ ତୃଣ ଶଯ୍ୟାପରେ ॥
ଏହି ସମୟେ ଦାସେ ଗଲେ । ପ୍ରଭୁଙ୍କ ଚରଣ ଚିପିଲେ ॥
ଚିତ୍ରପଣେନ୍ତ କରେ ଧରି । ହରିଙ୍କି ବଞ୍ଚିଲେ ସୁନ୍ଦରୀ ॥
ବୈକୁଣ୍ଠ ସୁଖ ପ୍ରାପ୍ତେ ମଣି । ଭାବେ ଶୋଇଲେ ଚକ୍ରପାଣି ॥
ପ୍ରଭୁଙ୍କ ନିଦ୍ରା ଯିବା ଜାଣି । ସ୍ୱାମୀକି ବୋଲଇ ତରୁଣୀ ॥
ଅତ୍ୟନ୍ତ ବୃଦ୍ଧ ଏ ଅତିଥି । କେମନ୍ତେ ଚାଲିବେଟି ପଥ ॥
ତୁମ୍ଭେ ପ୍ରଭାତୁ ମାଗିଯିବ । ଯେ ଅନ୍ନ ଭାଗ୍ୟରେ ମିଳିବ ॥
ତାହା ଏହାକୁ ସମର୍ପିବା । ଆମ୍ଭେ ପଛକେ ଭୋକେ ଥିବା ॥
ଦାସେ ବୋଇଲେ ହେଉ ହେଉ । ତାହା ଜାଣିଲେ ମହାବାହୁ ॥
ଦୁହିଁଙ୍କ ଭାବ ଦେଖି ଭୋଳା । ହେଲେ ସେ ଶ୍ୱେତ ପଦ୍ମତୋଳା ॥
ଅଧିକ ନ ପାରିଲେ ସହି । ଦୁହିଁଙ୍କ ନିଦ୍ରାଗଲେ ମୋହି ॥
ଏହି ସମୟେ ଭାବଗ୍ରାହୀ । ଉଠିଲେ ଅତି ବେଗ ହୋଇ ॥
ସେ ପତି ପତ୍ନୀ ଜାଣ ଦୁଇ । ଚରଣ ତଳେ ଥିଲେ ଶୋଇ ॥
ତାଙ୍କର ମୁଣ୍ଡେ ହସ୍ତ ଦେଲେ । କେଶ ତୋ କଞ୍ଚନ ବୋଇଲେ ॥
ନାନା ରତନ ଅଳଙ୍କାରେ । ପୂରୁ ତୋ ସର୍ବାଙ୍ଗ ଯାକରେ ॥
ଷୋଡ଼ଶୀତନୁ ତୋର ହେଉ । ଘରେ ତୋ ଧନ ପୂରିଥାଉ ॥
ଜୀବନ୍ତେ ସୁଖୀ ହୋଇଥାଅ । ଅନ୍ତେ ବୈକୁଣ୍ଠ ଗତି ପାଅ ॥
ଏମନ୍ତେ ଆଜ୍ଞା ତାକୁ ଦେଲେ । ଶ୍ରୀହରି ଅନ୍ତର୍ଦ୍ଧାନ ହେଲେ ॥
ଏଥୁ ଉତ୍ତାରୁ ନିଶୀ ଶେଷ । ଦିବସ ହେଲା ପରବେଶ ॥
ଅବଳା ନିଦ୍ରା ତେଜି ଉଠି । କେଶ ତା ପଡ଼ଯାଏ ତଳେଟି ॥
ସର୍ବାଙ୍ଗେ ଅଳଙ୍କାରମାନ । ମନ୍ଦିରେ ପୂରିଅଛୁ ଧନ ॥
ଦେଖି ତା ଆଚମ୍ଭିତ ନାରୀ । ସ୍ୱାମୀର ଭୁଜ ତୋଳି ଧରି ॥
ବୋଇଲେ ବେଗେ ଶୁଣ ନାଥ । କେଣିକି ଗଲେ ସେ ଅତିଥି ॥
ମନ୍ଦିର ଦେଖ ହୋ ସତ୍ୱର । ସେ ନୋହେ ମନୁଷ୍ୟ ଶରୀର ॥
ତା ଶୁଣି ଦାସେ ବେଗେ ଉଠି । ନିଜ ଘରକୁ ଦେଲେ ଦୃଷ୍ଟି ॥
ନାନାଦି ଧନ ଅଛି ପୂରି । ପତ୍ନୀ ତା ହୁଏ ଅପସରୀ ॥

ଅଙ୍ଗେ ପୂରିଛୁ ଅଳଙ୍କାର । କେଶରୀ ଲୋଟୁଛି ପର୍ଯ୍ୟର ।
ତା ଦେଖି ବିସ୍ମରଇ ମନ । ନମସ୍ତେ ସେ ପ୍ରଭୁ ଭଗବାନ ।
ଆନର ବଳେ କ ଏମାନ । ଘରେ ପୂରିଛୁ ଏତେ ଧନ ।
ସ୍ୱଜନ ମଧ୍ୟେ କେଶବର । କଅଁଳ ଦିଶୁଛି ସୁନ୍ଦର ।
ମନୁଷ୍ୟ ସ୍ଥାପ୍ୟେ ତାଙ୍କୁ ମଣି । ସେବା ଯେ କଲ୍ ବେଦପ୍ରାଣୀ ।।
ବ୍ରହ୍ମା ଇନ୍ଦ୍ରାଦି ସୁରାସୁର । ସ୍ତୁତି କରନ୍ତି ଯା ପର୍ଯ୍ୟର ।
କମଳା ଯାର ପରିବାର । ମୁଁ ସ୍ତୁର କେତେକ ମାତର ।
ହେ ପ୍ରଭୁ କରୁଣା ସାଗର । ମୋ ଅପରାଧ କ୍ଷମାକର ।
ଭୃତ୍ୟ ହୋଇଲେ ଅପରାଧୀ । ତୁ ନାଥ କରୁଣା ବାରିଧି ।
ତୁମ୍ଭେ ଯେ ବ୍ରହ୍ମାଣ୍ଡ ଠାକୁର । ଜୀବଙ୍କ ହୃଦରେ ବିହର ।
ଏଣୁ ଅପ୍ରାଧ ମୋର ଯେତେ । ପ୍ରଭୁ ନ ଘେନ କଦାଚିତେ ।।
ଏମନ୍ତ ବୋଲି ସ୍ତୁତି ଭଣି । ଆନନ୍ଦ ପୁରୁଷ ତରୁଣୀ ।
ଆନନ୍ଦେ ଶ୍ରୀହରି ଭଜନ । ସାଧୁଙ୍କ ସଙ୍ଗ ପ୍ରତିଦିନ ।
ସକଳ ଜୀବେ ଦୟାଚିତ୍ତ । ଦାସ ପ୍ରସଙ୍ଗେ ନିତ୍ୟେ ରତ ।
ଯୋଗୀ ବୈଷ୍ଣବ ସାଧୁଜନ । ସେବାରେ କଟାଇଲେ ଦିନ ।
ନୋହିଲ ଯମ ଅଧିକାର । କାଳେ ବସିଲେ ସ୍ୱର୍ଗପୁର ।
ପ୍ରଭୁଙ୍କ ଦାସ ଦାସୀ ହେଲେ । ମନକୁ ଚୈତନ୍ୟ କହିଲେ ।
ସେ ଦାର୍ଢ୍ୟଭକ୍ତି ରସବାଣୀ । ଯେ ପ୍ରାଣୀ କର୍ଣ୍ଣପଥେ ଶୁଣି ।।
ସକଳ ପାପୁ ହେବ ପାର । ନ ଯିବ ଯମରାଜପୁର ।
ଅପୁତ୍ର ଜନେ ପୁତ୍ରବାନ । ଅନ୍ଧ ଲଭିବେ ଚକ୍ଷୁ ପୁଣ ।
ସଂସାରେ ଇଷ୍ଟମାନ ଯେତେ । ଯେ ଗ୍ରହପୀଡ଼ାଦି ସହିତେ ।୧୬୦।
ଲଗିବ ନାହିଁ କଦାଚିତେ । ଶୁଣି ଶରଧା ଯେବେ ଚିତ୍ତେ ।
କହଇ ଦ୍ୱିଜ ରାମ ଦାସ । କେବଳ ମନକଟି ବିଶ୍ୱାସ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ
ଦାମୋଦର ଦାସ ପତି ପତ୍ନୀ ମୋକ୍ଷଣେ ନାମ ଚତୁର୍ଥୋଽଧ୍ୟାୟଃ ।

---

# ଷଷ୍ଠ ଅଧ୍ୟାୟ

## ବିଶ୍ୱମ୍ଭର ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ପୁଣି କହନ୍ତି ଚଇତନ । ହେ ମନ ହୁଅ ସାବଧାନ ॥
ଏ ବଡ ଅପୂର୍ବ ଚରିତ । ଶୁଣିଲେ ନ ଛୁଡ଼ଇ ଚିତ୍ତ ॥
ଯେ ଭୁତଖଣ୍ଡ ମଧ୍ୟଦେଶ । ଢେଙ୍କାନାଳରେ ତାର ବାସ ॥
ଜାତିରେ ବଣିଆ କରଣ । ତାର କୁଟୁମ୍ବ ତିନିଜଣ ॥
ତାହାର ନାମ ବିଶ୍ୱମ୍ଭର । ଭକତିପଣେ ବଳିଆର ॥
ଭାରିଯା ନାମ ତା ରେବତୀ । ପତିର ଆଜ୍ଞା ନ ଲଙ୍ଘନ୍ତି ॥
ପୁତ୍ରର ନାମ ରଘୁନାଥ । ପିତାର ଚରଣେ ଭକତ ॥
ଆପଣା ନାମ ବିଶ୍ୱମ୍ଭର । ବିଶ୍ୱସଂସାରେ ଗତି ପାର ॥
ଏମନ୍ତେ ତିନିଜଣ ଥାନ୍ତି । ଶ୍ରୀକୃଷ୍ଣ ପାଦେ ଦେଇ ମତି ॥
ନାମ ଭଜନ ଅପ୍ରମିତ । ନିତ୍ୟେ ପଢ଼ନ୍ତି ଭାଗବତ ॥
ଯେ କହେ ପ୍ରଭୁ ନାମ ରସ । ତାକୁ ବୋଲନ୍ତି ଦଣ୍ଡେ ବସ ॥
ତାହାର ନାମ ମୁଖୁଁ ଶୁଣି । ଶ୍ରୀଗୁରୁ ପ୍ରାୟେ ତାକୁ ମଣି ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମବାସୀ । ବ୍ରାହ୍ମଣ ବୈଷ୍ଣବ ଉଦାସୀ ॥
ଯେ ଅଭ୍ୟାଗତ ଅବଧୂତ । ଦ୍ୱାରେ ତା ହେଲେ ଉପଗତ ॥
ତାହାଙ୍କୁ ଅନ୍ନ ବସ୍ତ୍ର ଦାନେ । ତୋଷନ୍ତି ବିନୟ ବଚନେ ॥
ନାହିଁ ବୋଲିବା ମୁଖୁ ତାର । କେବେହେଁ ନୁହଇ ବାହାର ॥
ଏମନ୍ତ ନିଜଭେଦନ ଅନ୍ତେ । ତା କୀର୍ତ୍ତି ପୂରିଲା ଜଗତେ ॥
ଯେହୁ ଶୁଣିଲେ ଧନ୍ୟ ଧନ୍ୟ । ବୋଲନ୍ତି ସର୍ବ ଲୋକମାନ ॥
ଏମନ୍ତେ ସମୟେ ଯେ ପୁଣ । ହଇବ ଘଟସୂତ୍ର ଶୁଣ ॥
ଅତିଥି ଜମାଇତ ହୋଇ । ଆଇଲେ ତୀର୍ଥ ଯିବାପାଇଁ ॥
ଭିକ୍ଷାର ଅର୍ଥେ ଗ୍ରାମ ପୁରେ । ମାଗନ୍ତି ବୁଲି ଦ୍ୱାରେ ଦ୍ୱାରେ ॥
ଲୋକେ ବୋଲନ୍ତି ତାଙ୍କୁ ଚାହିଁ । ଶୁଣ ହେ ବୈଷ୍ଣବ ଗୋସାଇଁ ॥
କରଣ ନାମେ ବିଶ୍ୱମ୍ଭର । ବିଜୟ କର ତାର ଘର ॥

ଅବଶ୍ୟ ତୋଷିବ ଭୋଜନେ । ଶୁଣି ଚଳିଲେ ସାଧୁମାନେ ॥
ଦ୍ୱାରେ ତା ହୋଇଲେ ପ୍ରବେଶ । ଦିବସ ଆସି ହେଲା ଶେଷ ॥
ଡାକିଲେ ଆହେ ବିଶ୍ୱମ୍ଭର । ଆମ୍ଭ ଚରଣ୍ଟ ବେଗେ କର ॥
ସାଧୁଙ୍କ ବଚନ ଶୁଣିଣ । ଘରୁ ବାହାର ତତକ୍ଷଣ ॥
ଦେଖିଲା ସାଧୁବୃନ୍ଦ ଜୋଳେ । ପ୍ରଣାମ କଲା ପାଦତଳେ ॥
ହଠ କପାଳେ କର ଦେଲା । କି ଆଜ୍ଞା ହୋଇଛି ବୋଇଲା ॥
ଅତିଥି ବୋଇଲେ ହେ ଶୁଣ । ଆମ୍ଭ ଚରଣ୍ଟ ବେଗେ ଆଣ ॥
ହାଣ୍ଡି ବ୍ୟଞ୍ଜନ ମୁଗଜାଇ । ଘୃତ ନବାତ ଦୁଗ୍ଧ ଦହି ॥
କାଷ୍ଠ ପତ୍ରବା ଆଦ୍ୟ ଯେତେ । ଏ ସବୁ ଆଣ ହେ ତ୍ୱରିତେ ॥
ଆମ୍ଭ ଚରଣ୍ଟ ବେଗ କର । ପୁଣ୍ୟ ତୁ ପାଇବୁ ଅପାର ॥
ତାହା ଶୁଣିଣ ଚଳିଗଲା । ମନ୍ଦିରେ ପ୍ରବେଶ ହୋଇଲା ॥
ପୁଣ୍ଡ ହରିଯାଙ୍କୁ କହିଣ । ସକଳ କଲା ଆୟୋଜନ ॥
ସାଧୁଙ୍କ ପାଶେ ନେଇ ଦେଲା । ଘୃତ ମାତ୍ରକ ନ ପାଇଲା ॥
ବୋଇଲେ ସାଧୁବୃନ୍ଦେ ଶୁଣ । ତୁମ୍ଭରେ କରୁଛୁ ଜଣାଣ ॥
ସମସ୍ତ ଦ୍ରବ୍ୟ ଆଣି ଦେଲି । ଘୃତ ମାତ୍ରକ ନ ପାଇଲି ॥
ଶୁଣି ବୋଇଲେ ସାଧୁଗଣ । ପଞ୍ଚନ ନୁହଇ ଭୋଜନ ॥
ଘୃତ ବିହୀନେ ଯେ ଖାଇବ । ପ୍ରଭୁଙ୍କ ଅଯୋଗ୍ୟ ହୋଇବ ॥
ତୋ ଦ୍ରବ୍ୟ ଲେଉଟାଇ ନିଅ । ତା ଶୁଣି ବିଶ୍ୱମ୍ଭର ପୁଅ ॥
ଅନେକ ବିନୟ ସେ କଲା । ଭୂମିଷ୍ଠ ହୋଇ ଜଣାଇଲା ॥
ହେ ପ୍ରଭୁମାନେ ଶାନ୍ତ ହୁଅ । ବେଗେ ରନ୍ଧନ କର ଯାଅ ॥
ଘୃତ ଆସିବ ବନ୍ଧୁ ବନ୍ଧୁ । ଅବଶ୍ୟ ଦେବେ ଦୀନବନ୍ଧୁ ॥
ତା ଶୁଣି ଅତିଶେ ସୁଚିତ୍ତେ । ଚଳିଲେ ରନ୍ଧିବା ନିମନ୍ତେ ॥
ଘରକୁ ପିତା ପୁତ୍ରେ ଗଲେ । ବସିଣ ବିଚାର ଯେ କଲେ ॥
ଯେ ସାଧୁ ଘର ଉପକାରେ । ମିଥ୍ୟା କହିଣ ଚୋରି କରେ ॥
ଏଥିରେ ଦୋଷ ନାହିଁ କିଛି । ବୋଲି ଶାସ୍ତ୍ରରେ କହିଅଛି ॥
ଘୃତ ନ ମିଳିଲା ତ କାହିଁ । ଚୋରିକି ଯିବା ଏଥିପାଇଁ ॥

ନୋହିଲେ ଅତିଥି ସମସ୍ତେ । ଭୁଞ୍ଜିବେ ନାହିଁ କଦାଚତେ ॥
ଏମନ୍ତ ବୋଲି ଦାସ ପୋଏ । ଜରେ ଧଇଲେ ଖଣତାଏ ॥
ଆବର ଜାତ ଗେ ହିଁ ଧଣ୍ଡ । ଚଳିଲେ ଗୋବନ୍ଦ ସୁମଣ୍ଡ ॥
ସୁଦ ପ୍ରହରେକ ଭିତରେ । ଭେଟିଲେ ଭାଗ୍ୟବନ୍ତ ଘରେ ॥
ତକ୍ଷଣେ ସିନ୍ଧ ଗୋଟି ଖୋଳ । ପୁତ୍ର ପଶିଲ ତହିଁ ଗଳ ॥
ପିଅର ଜଗିଛୁ ବାହାରେ । ପୁତ୍ର ଖୋଜଇ ପଶି ଘରେ ॥
ଅନେକ ଧନ ରତ୍ନମାନ । ଦେଖି ନ ଛୁଅଇଁ ନନ୍ଦନ ॥
ଘୃତର ବିନା ଦ୍ରବ୍ୟ ଯେତେ । ହସ୍ତେ ନ ଧରେ କଦାଚତେ ॥
ଏମନ୍ତ ଖୋଜନ୍ତେ ଭବନ । ଦେଖିଲ ଘୃତ ଭାଣ୍ଡମାନ ॥
ବହି ଅଣିଲ ଭଣ୍ଡ ଦୁଇ । ସିନ୍ଧରେ ଦେଲକ ଗଳାଇ ॥
ଏମନ୍ତ ସମୟେ ସାଧୁତ । ଚେତନା ପାଇଲ ତ୍ୱରିତ ॥
ଦେଖିଲ ସିନ୍ଧଗାତ ଘରେ । ଚୋରହିଁ ଗଳୁଛୁ ସିନ୍ଧରେ ॥
ପବନୁ ବେଗେ ଧାଇଁଗଲ । ଚୋରର ଚରଣ ଧଇଲ ॥
ବେନି ଚରଣ ବେନି ହାତେ । ଧରି ଝିଙ୍କିଲ କୋପଚିତ୍ତେ ॥
କୁମର ବୋଇଲ ହେ ତାତ । ଧର୍ଯ୍ୟ ପଡ଼ିଲ ସିନ୍ଧଗାତ ॥
ସାଧୁତ ଝିଙ୍କୁଛି ପଦ୍ମର । ତୁମ୍ଭେ ପାରିଲେ ଝିଙ୍କ ଶିର ॥
ଶୁଣି ପିଅର ମୁଣ୍ଡ ଧରି । ଟାଣିଲ ଗୋବନ୍ଦ ସୁମରି ॥
ଦୁହେଁ ଝିଙ୍କିଲେ ଦୁଇକତି । ପୁତ୍ର ରହିଲ ମଧ୍ୟବର୍ତ୍ତୀ ॥
କେହିଁ ଆଡ଼କୁ ସେ ନୋହିଲ । ତା ଦେଖି କୁମର ବୋଇଲ ॥
ସ୍ୱରୂପ ଶୁଣ ଆହେ ତାତ । ଏଥିର ସରିଲ ମହତ ॥
ସୁଦ ଯଦ୍ୟପି ପାହିଯିବ । ଚିହ୍ନି ସାଧୁତ ଦଣ୍ଡ ଦେବ ॥
ସାଧୁଙ୍କ ସେବାହିଁ ନୋହିବ । ଏତେକ କଷ୍ଟ ବ୍ୟର୍ଥ ହେବ ॥
ଏଥିକୁ ବିଳମ୍ବ ନ କର । କାଟିଣ ନଅ ମୋର ଶିର ॥
ସାଧୁମାନଙ୍କ ସେବା ହେଉ । ଅମ୍ଭର ମହତ୍ୱ ନ ଯାଉ ॥
ମୁଣ୍ଡ ନ ଥିଲେ ପିଣ୍ଡ ଏଥେ । ଚିହ୍ନା ନ ଯିବ କଦାଚତେ ॥
ଏଥିକୁ ନ କରନ୍ତୁ ହେଳ । ମୋ ମୁଣ୍ଡ ଘେନ ଚଳ ॥

ଶୁଣି ପିଅଉ କାତ ଧର । ମନରେ କୃଷ୍ଣ ଚିନ୍ତାକର ॥
ଛେଦନ କର ଶୁନ୍ଦ ଶିର । ଲୁଚାଇ ରଖିଲା କାଖର ॥
ଧରିଲା ଘୃତଭାଣ୍ଡ ହସ୍ତେ । ଘରକୁ ଚଳିଲା ଭରିତେ ॥
ମୁଣ୍ଡ ଭାରିଯା ହସ୍ତେ ଦେଲା । ଲୁଚାଇ ରଖ ଗୋ ବୋଇଲା ॥
ବୁଝାଇ କହିଲା ସମସ୍ତ । ଶୁଣି ଆନନ୍ଦ ହେଲା ମାତ ॥
ଝାଳ ପ୍ରମାଣେ ଚିନ୍ତା ନାହିଁ । ମୁଣ୍ଡ ଯେ ରଖିଲା ଲୁଚାଇ ॥
ବୋଇଲା ସ୍ୱାମୀ ବେଗେ ଯାଅ । ସାଧୁଙ୍କୁ ଘୃତ ନେଇ ଦିଅ ॥
ତା ଶୁଣି ବିଶ୍ୱମ୍ଭର ଗଲା । ସାଧୁଙ୍କ ହସ୍ତେ ଘୃତ ଦେଲା ॥
ଘୃତ ପାଇଣ ସାଧୁ ବୃନ୍ଦେ । ଭୋଜନ କଲେ ମହାନନ୍ଦେ ॥
ଅନେକ କଲ୍ୟାଣ ବାଣ୍ଟିଲେ । ଘରକୁ ଯାଅ ତୁ ବୋଇଲେ ॥
ତାହା ଶୁଣିଣ ବିଶ୍ୱମ୍ଭର । ଚଳିଣ ଗଲେ ନିଜଘର ॥
ସ୍ୱାମୀ ଭାରିଯା ବେନିଜଣ । ଚିନ୍ତିଲେ ଗୋବିନ୍ଦ ଚରଣ ॥
ପୁରର ଭାବ ମନେ ଗୁଣି । ଏମନ୍ତେ ପାହିଲା ରଜନୀ ॥
ଏଥି ଉତ୍ତାରୁ ଶୁଣ ମନ । ଗଣ୍ଡି ଯେ ସାଧୁର ଭବନ ॥
ଖଣ୍ଡିଆ ହୋଇ ପଡ଼ିଥିଲା । ଧନୀ ସେ ଗଣ୍ଡି ଚିହ୍ନି ଦେଲା ॥
ବାଣ୍ଡରେ ପକାଇଲେ ନେଇ । ଅନେକ ଲୋକଙ୍କୁ ଡାକାଇ ॥
ମୁଣ୍ଡ ବିହୀନେ ପିଣ୍ଡ ଚର୍ଚ୍ଚି । ଚିହ୍ନି ଯେ ନ ପାରିଲେ କେହି ॥
ଗ୍ରାମ ବାହାରେ ଘେନିଗଲେ । ଶୂଳ ଉପରେ ବସାଇଲେ ॥
ଅନେକ ଲୋକ ଚର୍ଚ୍ଚି ମିଳି । ଦେଇଣ କୁହାଟ କୁରାଳି ॥
ଚଳିଣ ଗଲେ ଯେଝା ପୁରେ । ଶୁଣ ହେ ଏଥୁ ଅନନ୍ତରେ ॥
ଅଷ୍ଟଥିବୃନ୍ଦ ଚଳିଗଲେ । ଦାସଙ୍କ ପାଶେ ପ୍ରବେଶିଲେ ॥
ଡାକିଲେ ବିଶ୍ୱମ୍ଭର ଦାସ । ବଦନ ଆସ ଆମ୍ଭ ପାଶ ॥
ବଡ ଆନନ୍ଦ ହେଲୁଁ ବାବୁ । ତୋତେ କଲ୍ୟାଣ କରିଯିବୁଁ ॥
ସାଧୁଙ୍କ ମୁଖୁ ଏହା ଶୁଣି । ଆନନ୍ଦ ପୁରୁଷ ତରୁଣୀ ॥
ବୋଇଲେ ଦାସ ବିଶ୍ୱମ୍ଭର । କ୍ଷେ ହଖି ଶୁଣ ମୋ ଉତ୍ତର ॥
ଯାଉଛି ସାଧୁଙ୍କ ସଙ୍ଗର । ଯାଉଅଛୁ ମୁଁ ଖଣ୍ଡେ ଦୁର ॥

ପୁତ୍ର ଖଣ୍ଡିଆ ମୁଣ୍ଡ ଆଣ । ଧରି ମୁଁ ଥିବି ଲୁଚାଇଣ ॥
ସାଧୁମାନଙ୍କୁ ଦେଖାଇବି । ଏକାନ୍ତ ସ୍ଥାନେ ପକାଇବି ॥
ଶୁଣି ସୁନ୍ଦରୀ ତୋଷ ଚିତ୍ତେ । ମୁଣ୍ଡ ଯେ ଦେଲା ସ୍ୱାମୀ ହସ୍ତେ ॥
ପୁତ୍ରର ମୁଣ୍ଡ ପିତା ଧରି । କାଖେ ଯାକିଲା ଗୋପ୍ୟ କରି ॥
ଉତ୍ତମ ବସ୍ତ୍ରଣ ଘୋଡ଼ାଇ । ଚଳିଲେ ଧୀର ଧୀର ହୋଇ ॥
କହିଲେ ବିନୟ ବଚନେ । ବିଜୟ କର ପ୍ରଭୁମାନେ ॥
ଶୁଣି ଚଳିଲେ ସେ ଅତିଥେ । ତାହାଙ୍କୁ ଘେନିଣ ସଙ୍ଗତେ ॥
କେତେକ ଦୂର ଚଳିଗଲେ । ବିଶ୍ୱମ୍ଭରଙ୍କୁ ପଚାରିଲେ ॥
କାହିଁ ତୋହର ନିଜ ପୁତ୍ର । ସଙ୍ଗରେ ଆଣିନାହୁଁ କି'ତ ॥
କାଲି ଅନେକ ସେବା କଲା । ଆଜିତ ଦେଖାହିଁ ନ ଦେଲା ॥
ସାଧୁଙ୍କୁ କରନ୍ତା ଦର୍ଶନ । କିମ୍ପା ନଇଲା ତୋ ନନ୍ଦନ ॥
ଏବେ ତୁ ଯାଅ ଗୃହପର । ଘେନିଣ ଆସ ତୋ କୁମର ॥
ନୋହିଲେ ଏଠାରେ ଥିବୁ । ତାକୁ ନଦେଖିଲେ ନ ଯିବୁ ॥
ତାହା ଶୁଣିଣ ବିଶ୍ୱମ୍ଭର । ବେନି ନୟନୁ ବହେ ନୀର ॥
ତା ଦେଖି ସମସ୍ତ ଅତିଥ । ବୋଇଲେ କାନ୍ଦୁଅଛୁ କିତ ॥
କଥା ବା ପଡ଼ିଲା ବିପତ୍ତି । ସ୍ୱରୂପ କହ କଥା ଏଥି ॥
ମାୟା ନକରି କହ ସତ । ସମସ୍ତ ସାଧୁଙ୍କ ଅଗ୍ରତ ॥
ତାହା ଶୁଣିଣ ବିଶ୍ୱମ୍ଭର । କାଖୁ କାଢ଼ିଲେ ପୁତ୍ରଶିର ॥
ଖଣ୍ଡିଆ ମୁଣ୍ଡ ତଳେ ଥୋଇ । ସାଷ୍ଟାଙ୍ଗେ ଦଣ୍ଡବତ ହୋଇ ॥
ଉଠି କପାଳେ ଦେଇ କର । ବୋଇଲା ଦେଖ ମୋ କୁମର ॥
ଯାହା ଲେଖିଛି ଦେବବର । ଆନ କରିବା ଶକ୍ତି କାର ॥
ତା ଦେଖି ସକଳ ଅତିଥ । କ୍ଷଣକେ ହୋଇଲେ ସ୍ଥକିତ ॥
ବୋଇଲେ ତୋର ପୁତ୍ର ମୁଣ୍ଡ । କହ କେ କଲା ଦୋନଖଣ୍ଡ ॥
ଆମ୍ଭେ ସକଳ ସାଧୁ ଯିବୁ । ତାଙ୍କ ବଂଶ ନିର୍ବଂଶ କରିବୁ ॥
ତା ଶୁଣି ବୋଲେ ବିଶ୍ୱମ୍ଭର । ଏଥିରେ ଦୋଷ କାହିଁ କାର ॥
ତୁମ୍ଭର ମନୋହି ନିମନ୍ତେ । ଘାତ ଯେ ନମିଲା ମୋତେ ॥

ତେଣୁଟି ପିତା ପୁତ୍ରଗଲୁ । ସାଧୁର ମନ୍ଦିରେ ପଶିଲୁ ।
ତା ଘରେ ସିନ୍ଧଗୋଟି ଖୋଳି । ପୁତ୍ର ପଶିଲା ତହିଁତଳି ।
ଘୃତ ବଢ଼ାଇ ମୋତେ ଦେଲା । ପୁତ୍ର ମୋ ଗଳା ଅସୁଥିଲା ।
ସାଧୁ ତ ଚେତନା ପାଇଲା । ପୁତ୍ରକୁ ଓଟାର ଧଇଲା ।
ମୁହିଁ ଝିଙ୍କିଲି ଧରି ଶିର । ତ ଦେଖି ବୋଇଲା କୁମର ।
ତାହା ନପଡ଼ୁ ମୋର ଶିର । କାଟିଣ ଦିଅ ହେ ପିଅର ।
ଘୃତ ଘେନଣ ବେଗେ ଚଳ । ସାଧୁଙ୍କ ସେବା ଆମ୍ଭ ମୂଳ ।
ତାଶୁଣି କାଟିଲି ମୁଁ ମୁଣ୍ଡ । ଘେନି ଅଇଲୁ ଘୃତ ଖଣ୍ଡ ।
ତୁମ୍ଭ ଚରଣେ ସମର୍ପିଲି । ମୁଣ୍ଡ ମୁଁ ଲୁଚାଇ ରଖିଲି ।
ଏମନ୍ତେ ମଲା ମୋର ସୁତ । ଏ ଦୁଃଖ ମୋହର ଅର୍ଜିତ ।
ଭାଗ୍ୟ ମୋ ଅରଜିଛୁ ଯାହା । ଅବଶ୍ୟ ଭୁଞ୍ଜିବଇଁ ତାହା ।
ଶୁଣି ସକଳ ସାଧୁଜନ । ଭକ୍ତକୁ ବୋଇଲେ ବଚନ ।
ଧନ୍ୟରେ ତୋହର ଜୀବନ । ଧନ୍ୟ ତୋ ପତ୍ନୀ ତୋ ନନ୍ଦନ ।
ଆମ୍ଭ ସକାଶେ ପୁତ୍ର ମଲା । ଏହା କଇବ ଭଆଇଲା ।
ସକଳ ସାଧୁ ଏକ ହୋଇ । ବୋଲନ୍ତି ଭକ୍ତ ମୁଖ ଚାହିଁ ।
ତୋ ପୁତ୍ର ଗଣ୍ଡି ଅଛି ଯହିଁ । ଆମ୍ଭଙ୍କୁ ଘେନି ଚଳ ତୁହି ।
ଅବଶ୍ୟ ତୋ ପୁତ୍ର ବଞ୍ଚିବ । ତୋ ଯଶ ଯୁଗେ ଯୁଗେ ଥିବ ॥
ଏହା ଶୁଣିଣ ବିଶ୍ୱମ୍ଭର । ସାଧୁଙ୍କୁ ଘେନଣ ସଙ୍ଗର ।
ପୁତ୍ରର ଗଣ୍ଡିଥିଲା ଯହିଁ । ସାଧୁଙ୍କୁ ଦେଖାଇଲେ ନେଇ ।
ଦେଖିଲେ ବାତାର କୁମର । ବସିଛି ଶୂଳର ଉପର ।
ଶୂଳରୁ ଶବ ଘେନିଆସି । ମଧ୍ୟେ ପକାଇ ବେଢ଼ି ବସି ।
ଗଣ୍ଡି ମୁଣ୍ଡକୁ ଯୋଡ଼ି ଦେଲେ । ତୁଳସୀ ଦଳ ଯୋଡ଼ାଇଲେ ।
ବୋଇଲେ ଧର୍ମ ଯେବେ ସତ୍ୟ । ଜଣୁସୁ ବଞ୍ଚୁ ଏ ବାଳୁତ ॥
ପ୍ରଭୁ ମହିମା ଯେବେ ସତ୍ୟ । ପୁରାଣ ଯେବେ ହେବ ତଥ୍ୟ ॥
ଯେ ପ୍ରାଣୀ ପର ଉପକାରେ । କି ଅବା ହରି ଭଜନରେ ।
କି ପ୍ରାଣ ରକ୍ଷଣ ନିମନ୍ତେ । କି ଅବା ସାଧୁ ସେବା ଅର୍ଥେ ॥

ଅନନ୍ତେ ପଶିଲେକ ଯାଇ । ସାନ୍ତ୍ୱ କରନ୍ତି ସବଗ୍ରାସ୍ଥି ।
ଏ କଥାମାନ ଯେବେ ସତ । କର୍ମ୍ମା ମଣିବ ଏ ଦାରୁତ ।
ଶରଣ ପଞ୍ଜର ତୋ ବାନା । ଭବ ଭୟକୁ ବଜ୍ରସେହ୍ନା ।
ଯେବେ ତୋ ମହିମା ପ୍ରମାଣ । ତେବେ ଏ ପୁତ୍ର ପାଉ ପ୍ରାଣ ।
ନୋହିଲେ ମରିବୁଁ ସମସ୍ତେ । ଯେବେ ଏ ମଲା ଆମ୍ଭ ହାତେ ।
ଏମନ୍ତେ ସର୍ବ ସାଧୁ ବୃନ୍ଦ । ମନରେ ଚିନ୍ତିଲେ ଗୋବିନ୍ଦ ।
ଜୟ କରୁଣାମୟ ସିନ୍ଧୁ । ଜୟ ଜଗତ ଜନ ବନ୍ଧୁ ।
ଜୟ କୋଦଣ୍ଡ କାଣ୍ଡ ମୂର୍ତ୍ତି । ଜୟ ଜାନକୀ ପ୍ରାଣପତି ।
ଜୟ ତୁ ଜୟ ଜଗନ୍ନାଥ । ଜୟ ଲକ୍ଷ୍ମଣ ଜ୍ୟେଷ୍ଠ ଭ୍ରାତ ।
ଜୟ ହେ କୌଶଲ୍ୟା ନନ୍ଦନ । ଜୟହେ ମୁନିଙ୍କ ବନ୍ଦନ ।
ଦଶରଥଙ୍କର ଆତ୍ମଜ । ଜୟ ଦେବାଧି ଦେବରାଜ ।
ହେ ବିଶ୍ୱବାସ ଚରାଚର । ଯାହାର ଅଙ୍କରେ ପ୍ରସ୍ତର ।
କୋଟି ବ୍ରହ୍ମାଣ୍ଡ ଯା ଚରଣ । ଜଗତ ସଂସାର କାରଣ ।
ଯାହା ଅଙ୍କରେ ସିନ୍ଧୁ ଜଳେ । ନ ବୁଡି ଭାସନ୍ତି ଶଇଳେ ।
ଏମନ୍ତେ କଲେ ନାମ ଧ୍ୟାନ । ତକ୍ଷଣେ କମ୍ପିଲା ମେଦିନୀ ।
ତାହା ଜାଣିଲେ ବ୍ରହ୍ମଋଷି । ମାୟାରେ ପୃଥ୍ୱୀ ପାଖେ ଆସି ।
ଜୀବନ ଦାନ ଦେଇଗଲେ । ସେ କଥା କେହି ନ ଜାଣିଲେ ।
ତକ୍ଷଣେ ଉଠିଲା ନନ୍ଦନ । ଭଜିଲା ଶ୍ରୀମଧୁସୂଦନ ।
ସାଧୁଙ୍କୁ ପ୍ରଣମିତ ହେଲା । ପିତାଙ୍କ ଚରଣେ ଲୋଟିଲା ।।
ଦେଖିଣ ଏମନ୍ତ ଚରିତ । ସେ ଦେଶ ଲୋକ ଆଚମ୍ବିତ ।
ବୋଇଲେ ଧନ୍ୟ ଏହା ଜୀବ । ଏହା ଦର୍ଶନେ ଅଛୁ ଲାଭ ।
ତା ଦେଖି ସାଧୁମାନେ ହୋଲେ । ଧରି ଆନନ୍ଦ ହୃଷ୍ଟ ହୋକେ ।
ଯହୁଁ ତା ସୁମନ ଦେଖିଲେ । ସୁମନ ବୋଲି ନାମ ଦେଲେ ।।
ବୋଇଲେ ଦେଇଛୁ କଲ୍ୟାଣ । ଲଭ ତୁ ଶ୍ରୀହରି ଚରଣ ।
ଏବେ ପିତାକୁ ଘେନ ତୋର । ଯାଅ ତୋ ଜନମୀ ପାଖର ।
ଏମନ୍ତ କହିଣ ଅନ୍ତଥେ । ଚଳିଣ ଗଲେ ଯେଝାମତେ ।

ଏଣେ ଯେ ପିତା ପୁତ୍ର ଗଲେ । ମନ୍ଦରେ ପ୍ରବେଶ ହୋଇଲେ ॥
ଜନନୀ ପୁତ୍ର ପାଇ କୋଳେ । ବୁଡ଼ିଲା ସ୍ନେହଭାବ ଜଳେ ॥
ଦେଖ ତାହାର ଭାଗ୍ୟଗୋଟି । ମଲା ଯେ ଅଇଲା ଲେଉଟି ॥
ଜନନୀ ପିତା ପୁତ୍ର ହୋଇ । ସୁଖେ ଭଜିଲେ ଭାବଗ୍ରାହୀ ॥
ସେ ଦେହ ଅନ୍ତେ ତିନିଜଣ । ଲଭିଲେ ଗୋବିନ୍ଦ ଚରଣ ॥
ଶୁଣ ହେ ମନ ନୃପନାଥ । ଦାନର ମହିମା ଏମନ୍ତ ॥
ମୂର୍ଖଲୋକଙ୍କୁ ଏହା ମିଛ । ସାଧୁଙ୍କୁ ଅଟଇ ପ୍ରତ୍ୟକ୍ଷ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଇଣେ ଅଧମ ରାମଦାସ । ସୁଜନ ଜନଙ୍କର ଦାସ ॥
ଶ୍ରୀରାମ ଅଭୟ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ଏ ଦାର୍ଢ୍ୟଭକ୍ତି ରସବାଣୀ । ସୁଜନେ ଚିତ୍ତ ଏହା ଶୁଣି ॥
ବୁଡ଼ ନ ମର ଭବକୂପେ । କୃଷ୍ଣ ଅନନ୍ତ ସାଧୁରୂପେ ॥
ତାହାଙ୍କୁ ଭଜ ହୁଅ ପାର । ଏ କଥା ସର୍ବଶାସ୍ତ୍ରେ ସାର ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ବିଶ୍ୱମ୍ଭର ଦାସ ପତ୍ନୀ ପୁତ୍ର ମୋକ୍ଷ ଯୋଗ
ନାମ ଷଷ୍ଠୋଽଧ୍ୟାୟଃ ।

—*—

## ସପ୍ତମ ଅଧ୍ୟାୟ

### ରାମ ଦାସ ସମ୍ବାଦ

ମନ ଉବାଚ

ଶୁଣି ଆନନ୍ଦ ମନରଜା । ଚୈତନ୍ୟ ପାଦେ କଲେ ପୂଜା ॥
କହ ହେ ଅପୂର୍ବ ଚରିତ । ଶୁଣି ମୁଁ ହୋଇବି ପବିତ୍ର ॥
ଏମନ୍ତ ପ୍ରକାରେ ଭକ୍ତ ଯେତେ । ତାଙ୍କ ଅଛନ୍ତି କହ ମୋତେ ॥
ଅତି ତୃଷିତ ମୋର ମନ । ବେଗେ କରାଅ ସୁଧାପାନ ॥
ଶୁଣି ଚୈତନ୍ୟ ଅନୁରାଗେ । କହଇ ମନରାଜା ଆଗେ ॥
ହେ ମନ ସାବଧାନେ ଶୁଣ । ଶୁଣିଲେ ପାଇବୁ କାରଣ ॥

ଏ ବଡ଼ ଅପୂର୍ବ ଚରିତ । ଶୁଣ ନିଷ୍ଟକ କରିଚିତ୍ତ ॥
ଦକ୍ଷିଣ ଦେଶେ ପୁଣ୍ୟ କ୍ଷେତ୍ର । ଦେଖିଲ ମାତ୍ରକେ ପବିତ୍ର ॥
ଶ୍ରୀ ଲଛମନଙ୍କ ସହର । ଉଜଝ ମୁକ୍ତ ଦୁଆର ॥
ସ୍ୱର୍ଗର ସମାନ ଅଟଇ । ଯମର ବାଧା ନ ଲାଗଇ ॥
ଏମନ୍ତେ ପୁଣ୍ୟ ଗ୍ରାମେ ବାସ । ନାମ ତାହାର ଗ୍ରାମ ବାସ ॥
ଗୃହସ୍ଥ ବୈଷ୍ଣବ ଅନେକ ପୁଣ । ତାର କୁଟୁମ୍ବ ତିନ ଜଣ ॥
ଏକଇ ପୁତ୍ର ଏକ ନାରୀ । ସେ ଗ୍ରାମେ ଥାନ୍ତି ମଠ କରି ॥
ସର୍ବକାଳେ ତା ଭଜନ । କେବଳ ପ୍ରଭୁ ଲଛମନ ॥
ଶ୍ରୀପାଦପଦ୍ମ ପର ଭାବ । ନ ଜାଣେ ଅନ୍ୟ ଦେବା ଦେବୀ ॥
କରଣ ଏହି ଭାବେ ଧ୍ୟାନ । ସୁଖରେ ବଞ୍ଚି ଥାଇ ଦିନ ॥
ଯାହା ମିଳଇ ଭୁଞ୍ଜେ ନିତ୍ୟ । ଚିନ୍ତା ନ ଥାଇ ତାର ଚିତ୍ତେ ॥
ଧୀର ଚତୁର ମହା ଶାନ୍ତ । ପଣ୍ଡିତ ବିବେକ ତା ମତି ॥
ପ୍ରଭୁ ମହିମା ନିତ୍ୟ ଶୁଣେ । ସଂସାର ଭଲ ମନ୍ଦ ଜାଣେ ॥
ବେଦ କହିବା ଯେଉଁ ଲାଭ । କେବଳ କରେ ସେହି ଭାବ ॥
ସାଧୁଙ୍କ ସେବା କରେ ନିତ୍ୟ । ଦିଶଇ ସେହୁ ସଦାବର୍ତ୍ତ ॥
ବୈଷ୍ଣବ ନାନାଦି ପ୍ରକାରେ । ଆସି ମିଳନ୍ତି ତାର ଦ୍ୱାରେ ॥
ନାଗା ନିର୍ମୋହୀ ଖାକୀ ଯେତେ । ବିରକ୍ତ ସଂଯମୀ ସହିତେ ॥
ସ୍ୱରସମ୍ପ୍ରଦା ସାଧୁମାନେ । ଆସି ମିଳନ୍ତି ପ୍ରତିଦିନେ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବାନପ୍ରସ୍ଥ ଗୃହୀ ଭିକାରୀ ॥
ସଂଯୋଗୀ ବିପ୍ରଙ୍କ ସହିତେ । ଦୁଃଖୀ ଦରିଦ୍ର ଆଦି ଯେତେ ॥
ଏମାନେ ସ୍ୱରଦିଗୁଁ ଆସି । ତା ଦ୍ୱାରେ ଭୋଜନ ପ୍ରକାଶି ॥
ନାହିଁ ନ ବୋଲେ ସେ ବଚନେ । ସବୁଙ୍କୁ ତୋଷ ଅନ୍ନଦାନେ ॥
ରୁଟି ଖେଚଡ଼ି ପୁସି ଖସି । ଅନ୍ନ ବ୍ୟଞ୍ଜନ ଆଦିକରି ॥
ଯେ ଯେଉଁ ଦ୍ରବ୍ୟ ଇଚ୍ଛାକରେ । ତୋଷଇ ସେହି ପରକାରେ ॥
ଦଶ ବିଂଶ ବା ଷାଠୀ ଶତେ । କିବା ସହସ୍ର ପରିଯନ୍ତେ ॥
ଯେତେ ଆଇଲେ ତେତେ ଦେଇ । କେବେହେଁ ନାହିଁ ନ ବୋଲଇ ॥

ତାର ସଂକଳ୍ପ ଏହିମତେ । ଦ୍ୱାରେ ଅତିଥି ଥାନ୍ତୁ ଯେତେ ।
ତାଙ୍କ ଚରଣ୍ଣ ଯେବେ ହୋଇ । ତେବେ ସେ ଅନ୍ନ ଖାଏ ଯାଇଁ ।
ନୋହିଲେ ନ କରେ ଭୋଜନ । ଏହି ପ୍ରକାରେ ବଞ୍ଚେ ଜନ ।
ଏମନ୍ତ କେତେଦିନ ଗଲା । ତାର ସମ୍ପଦ ଚ୍ୟୁତ ହେଲା ।
ତା ଦେଖି ବାର ପୁଅ ତାର । ବୋଲନ୍ତି ଶୁଣ ହେ ପିତର ।
ଦିନକୁ ଦିନ ଧନ ଶେଷ । ଅଭାଗ୍ୟ ହେଲାଟି ପ୍ରବେଶ ।
ଆଗହୁଁ ବିଗ୍ଭରଣ ଥିବା । ଅତିଥି କାହୁଁ ଚରଣ ବା ।
ଶୁଣିଣ ଏସନ ସନ୍ଦେଶ । ବୋଇଲା ଭକ୍ତ ରାମ ଦାସ ।
ଚିନ୍ତିତ କମ୍ପା ତୁମ୍ଭ ମନ । ଯାହାର ପ୍ରଭୁ ଲଛମନ ।
ଦେବା ଦିଆଳକା ଠାକୁର । କେବଳ ସେହି ପିତା ମୋର ।
ତା ବିନା ଅଙ୍ଗରେ ଏ ଜୀବ । ଜପ କରିବା ଶକ୍ତି ହେବ ।
ସାଧୁଙ୍କ ସେବାକୁ ମୋ ଘର । ଛୋଟିଏ ଖଣ୍ଡରୁ ଅନ୍ତର ।
କେବଳ ସାହା ଦେବଗୁରୁ । ଏଣୁ ମୋହର ନାହିଁ ଭୟ ।
ଏମନ୍ତେ ମନେ ବିଗ୍ଭରିଲା । ଏକ ସାଧୁ ତା ଦ୍ୱାରେ ହେଲା ।
ଆପଣା ନାମେ ଚୋଜା ଦେଇ । ବୋଇଲା ଶୁଣ ଧର୍ମ ଭୁଞ୍ଜି ।
ସାଧୁମାନଙ୍କ ଚରଣକୁ । ଭେଟ ହେ ଖରଚ ଆମ୍ଭଙ୍କୁ ।
ପ୍ରତିଦିନର ବ୍ୟୟ ଯେତେ । କେବଳ ଦେଉଥିବ ମୋତେ ।
ଏମନ୍ତ ବୋଲି ଚାଲିଗଲେ । ମଢରେ ପ୍ରବେଶ ହୋଇଲେ ।
ପୁଅ ଭଣ୍ଡସାକୁ କହିଣ । ଆନନ୍ଦ ହେଲେ ତିନିଜଣ ।
ସେହି ସାଧୁର ଘରୁ ଧନ । ବ୍ୟୟ କରନ୍ତି ପ୍ରତିଦିନ ।
ଯେତେବେଳରେ ଲୋଡ଼ା ଯାହା । ସାଧୁତ ଦେଉଥାଇ ତାହା ।
ଏମନ୍ତେ ଗଲା କେତେଦିନ । ଗୋଜାରେ ପୂର୍ଣ୍ଣହେଲା ଧନ ।
ଲେଖାରେ ସହସ୍ର ମୋହର । ହେଲା ଯେ ଦାସଙ୍କ ଉପର ।
ଆଉ ନ ଦେଲା ଧର୍ମ ଧନ । କହିଲା ନିଷ୍ଠୁର ବଚନ ।
ବୋଇଲା ଧନ ମୋର ଦିଅ । ଲୋଡ଼ା ହୋଇଲାଣି ଆଉ ନଅ ।
ତା ଠାରୁ ଏବାଣ ଶୁଣିଲେ । ଆବର ଧର୍ମଘର ଗଲେ ।

ଅନେକ ପ୍ରକାରେଣ କଷ୍ଟ । ପୁଣ ଗୋଡ଼ାଏ ଲେଖାଦେଇ ।
ତା ଠାରୁ ବ୍ୟସ୍ତ କଲେ ଧନ । ଏମନ୍ତେ ଗଲା କେତେ ଦିନ ।
ତହୁଁ ସମ୍ପୂର୍ଣ୍ଣ ତାର ହେଲା । ଆଉ ଅଧିକ ସେ ନ ଦେଲା ।
ଏମନ୍ତ ବଣ୍ଟରଣ ମନ । ତାଠାରୁ ବନ୍ଦ କଲେ ଋଣ ।
ନଗରର ସମସ୍ତେ ଜାଣିଲେ । ଦାସେ ଅନେକ ଋଣ କଲେ ।
ଏମନ୍ତେ ସମସ୍ତେ ସାଧୁତ । ଘରେ ନ ଗଲେ କଦାଚିତ ।
ମାଣେ ତଣ୍ଡୁଳ ପ୍ରକାଶିଲେ । ସକଳ ଲୋକେ ଝିଙ୍କାସିଲେ ।
ସ୍ୱନସ୍ଥା ସସ୍ତ୍ର ପାଞ୍ଚସାଏ । ଋଣ କୁ କଲୁ ସବୁଠାଏ ।
ଏତେକ ଅର୍ଥ ନାହିଁ ତୋତେ । ଆହୁରି ମାଗୁଅଛୁ କେତେ ।
ଏମନ୍ତ ସବୁଣ ଜବାଣ । କେଶିଣ ଭକ୍ତ ରାମ ଦାସ ।
ଢଗର କଲକ ମନର । ନ ବୁଦ୍ଧି କରିବ ଏଥର ।
ସାଧୁଙ୍କ ଜବାଣ ବଚନ । ମଠରେ ନାହିଁ ଆଉ ଧନ ।
ଏଣୁ ସମସ୍ତେ ସାଧୁମାନେ । ଯେବେ ଆସିବେ ମୋ ଭବନେ ।
ତାହାଙ୍କୁ ଦେବ ମୁଁ କିସ । ନଦେଲେ ହୋଇବ ଲଘଣ ।
ଅତଏ ଲେଉଟିବେ ଯେବେ । ମୋର ମରଣ ହେବ ତେବେ ।
ଏମନ୍ତ ବିଚାରନ୍ତେ ତା ଶତ୍ରେ । ଆସି ମିଳଲେ ସମାଉତେ ।
ଏକଟେ ପାଞ୍ଚସତ୍ର ମୂର୍ତ୍ତି । ମୁକୁନ୍ଦ ବନ୍ଧା ଆସିଛନ୍ତି ।
ମଠରେ ହୋଇଲେ ପ୍ରବେଶ । ତା ଦେଖି ଭକ୍ତ ରାମ ଦାସ ।
ହୃଦପଦ୍ମରେ କଲା ଧ୍ୟାନ । ଚିନ୍ତିଲା ଅନନ୍ତ ମୂରତ ।
ହେ ପ୍ରଭୁ ତୁମ୍ଭେ ଯାହା କର । ସକଳ ଆସ୍ତ୍ର ତୋହର ।
ଏମନ୍ତ ବିଚାରୁ ତା ମନେ । ଉଠାଳ କଲେ ସାଧୁମାନେ ।
ବୋଇଲେ ଶୁଣ ଦାତା ତୁମ୍ଭ । ଉତ୍ତର କରୁ କାହିଁ ପାଇଁ ।
ଆମ୍ଭ ଚରଚା ବେଗେ କର । ଯେବେ ଧର୍ମକୁ ଇଚ୍ଛା ତୋର ।
ବିଳମ୍ବ ହୋଇଲେ ବହୁତ । ତୋହର ସରିବ ମହତ୍ତ୍ୱ ।
ଅତଏ ସନ୍ତ ନ ପାରିବେ । ନାନା ପ୍ରକାରେ ଗାଳି ଦେବେ ।
ତାହା ଶୁଣିଣ ରାମ ଦାସ । ବୋଇଲେ ତୁମ୍ଭେମାନେ ବସ ।

ତୁମ୍ଭ ତରଛା ବଧ୍ୟମାନ । କରିବେ ପ୍ରଭୁ ଲକ୍ଷମନ ।
ମୋ ଗୁରୁ କେତେକ ମାତର । କହି ଚଳିଲେ ନିଜପୁର ।
ପୁଣ ଷଷଯାକୁ ବସାଇ । ସକଳ କହିଲେ ବୁଝାଇ ।
ସାଧୁମାନେତ ତୁମ୍ଭ ଯେତେ । ମାଣେ ତଣ୍ଡୁଳ ଆଜ୍ଞ ମୋତେ ।
ପରତେ କରଣ ନ ଦେଲେ । କ ବୁଦ୍ଧି କରିବା ଲଗା ଭଲେ ।
ସାଧୁଙ୍କ କଠାଳ ବସ୍ତୁତ । ଘରେତ ନାହିଁ ଆନ୍ନ ବସ୍ତ୍ର ।
ଆନର ଚରଣ କେମନ୍ତେ । କରିବା କହ ବୁଦ୍ଧି ମୋତେ ।
ତା ଶୁଣି ପୁଣ ବାସ କହି । କମ୍ପାଇ ଚନ୍ତା କରୁ ତୁହି ।
ମଠ ପିଢ଼ିକ ଥଳମାନ । ଗଣିଆ ଗଡ଼ୁ କରତନ ।
ଲୋଟିଆ କଳ କୁମ୍ଭ ଯେତେ । ଯେ ସ୍ଥାଳୀ ପରୁଆ ସହିତେ ।
ଏମାନେ ଯେତେ ଅଛୁ ଚୋର । ଆବର ଦେହ ଅଳଙ୍କାର ।
ସମସ୍ତ ଘେନ ବେଗେ ଯାଅ । ସାଧୁଙ୍କ ଘରେ ବନ୍ଧାହୁଅ ।
ଆଜ ଅତିଥିଙ୍କ ନିମନ୍ତେ । ଲୋଡ଼ା ହୋଇବ ଧନ ଯେତେ ।
ବହନ ଯାଇ ଘେନଆସ । ଶୁଣି ଆନନ୍ଦ ରାମ ଦାସ ।
ସମସ୍ତ ଦ୍ରବ୍ୟ ନେଇ ଗଲା । ଘେନାଇ ଧର୍ମାଘର ଗଲା ।
ବୋଇଲା ଶୁଣ ହେ ସାଧୁତ । ବନ୍ଧା ତୁ ରଖି ଏହି ବସ୍ତୁ ।
ଆଜ ସାଧୁଙ୍କୁ ଲାଗେ ଯେତେ । କେବଳ ତାହା ଦିଅ ମୋତେ ।
ଶୁଣି ସାଧୁତ କୋପଭର । ବୋଇଲେ ଶୁଣ ମୋ ଉତ୍ତର ।
ଯେତେ ପଦାର୍ଥ ଅଛି ଚୋର । ସକଳ ବନ୍ଧା ସିନା ମୋର ।
ମୋର ପଦାର୍ଥ ମୋତେ ଦେଇ । ଆସିନ୍ତୁ ଛଟିବାର ପାଇଁ ।
ଶୁଣ ଏ କଥା ମନୁ ଚୋର । ମହନ୍ତ ଯିବଟି ଏଥର ।
ଯେତେ ତୁ ଧନ ଅଛୁ ନେଇ । ନ ଦେଇ ରଖିବୁଂ କମ୍ପାଇଁ ।
କେବଣ ଭରସା ତୋହର । ନ ଦେଉ ପଦାର୍ଥ ମୋହର ।
ଏଥର ମହନ୍ତ ସରିବ । ପୁଣ କୁଟମ୍ବ ବଳାଯିବ ।
ଦେଖିବା କେ ରଖିବ ଚୋର । ଋଣ ଶୁଝିଲେ ଯିବୁ ଘର ।
ଏମନ୍ତ ବୋଲି ଗାଳିଦ୍ୟନ୍ତେ । ମିଳିଲେ ସକଳ ସାଧୁତେ ।

ସକଳ ସାଧୁ ସେହିଠାରେ । ଗର୍ଜିଲେ ନାନା ପରକାରେ ॥
କେ ବୋଲେ ଧନ ଦେଲେ ଯିବୁ । ନୋହିଲେ ଅର୍ଗଳାରେ ଥିବୁ ॥
ଛାଡ଼ ଏ ବାହାପିଆ ପଣ । ଯେ ଯାହା ଧନ ବେଗେ ଆଣ ॥
ଲଜ୍ଜା କି ନାହିଁ କହ ତୋତେ । ଦାତା ବୋଲଇ ଏ ଜଗତେ ॥
ଶୁଣିଣ ସବୁର ବଚନ । ବୋଇଲା ଭକ୍ତ ରାମ ଦାସ ॥
ତୁମ୍ଭେ ସମସ୍ତେ ସାଧୁ ଶୁଣ । ମୋତେ ଲଗିଛୁ ତୁମ୍ଭ ଋଣ ॥
ଉପର ହସ୍ତେ ଅଛ ଦେଇ । ତଳ ହସ୍ତରେ ଅଛୁ ନେଇ ॥
ସେ ବ୍ରହ୍ମ ବିଷର ସମାନ । ଖାଇ କେ ପାଣିକରେ ଋଣ ॥
ବିଷ ଖାଇଲେ ଜଣେ ମରେ । ବ୍ରହ୍ମସ୍ୱ ବଂଶ ନାଶ କରେ ॥
ବ୍ରହ୍ମା ଇନ୍ଦ୍ରାଦି ସୁରାସୁରେ । ଯକ୍ଷ ଗନ୍ଧର୍ବ ଯେ କିନ୍ନରେ ॥
ଋଣ ଭୁଜଙ୍ଗ ଦଂଶେ ଯାରେ । ଗୁଣିଆ ନାହିଁ ଆଉ ତାରେ ॥
ବିଷ ତ ଝଡ଼ିଲେ ଝଡ଼ଇ । ନୋହିଲେ ଦେହ ସଙ୍ଗେ ରହି ॥
ସେ ଯାଇ ଜୀବର ସଙ୍ଗତେ । ବିଷର ବଡ଼ପଣ ଏତେ ॥
ବ୍ରହ୍ମସ୍ୱ କାଳେ ଦେହ ନାଶି । ଗମଇ ଜୀବ ସଙ୍ଗେ ମିଶି ॥
ଋଣର ଗୁପ୍ତା ପ୍ରାପ୍ତେ ହୋଇ । ଜୀବର ସଙ୍ଗେ ଲଟିଥାଇ ॥
ଋଣ ସୁଝିଲେ ଛାଡ଼ିଦେଇ । ନୋହିଲେ ଜନ୍ମେଜନ୍ମେ ଥାଇ ॥
ଏଣୁ ଏ ପୁଣ୍ୟ ଦାର ଧନ । ବୋଲନ୍ତି ଋଣାନୁବନ୍ଧନ ॥
କେବଳ କଥା ଏକ ଅଛି । ଶୁଣ ମୁଁ ତୁମ୍ଭଙ୍କୁ କହୁଛି ॥
ସାଧୁ ଯେ ଚନ୍ଦ୍ର ଗଙ୍ଗାଜଳ । କପାଳୁ କେଉଁ ବା ଶୀତଳ ॥
ବୋଇଲେ ରାଜା ଆଉ ନାହିଁ । ଅଧିକ କି କହିବ ମୁହିଁ ॥
ଶୁଣ ହେ ସକଳ ସାଧୁତେ । ଆଜ ମାଗୁଣି ମୋର ଏତେ ॥
ଏ ସର୍ବ ରଖି ତୁମଠାର । ସାଧୁ ଚରଚା ଆଜ କର ॥
ବିଳମ୍ବ କଲେ ଅପରାଧ । କେ ସହୁ ସାଧୁଙ୍କର କ୍ରୋଧ ॥
ଏଣୁ ମାଗୁଣି ମୋର ଏତେ । କର ବା ନ କର ସମସ୍ତେ ॥
ତୁମ୍ଭ ବ୍ରହ୍ମସ୍ୱମାନ ଯେତେ । ମନେ ଅଛଇ ମୋ ନିରତେ ॥
ଶ୍ରୀଲକ୍ଷ୍ମଣଙ୍କ ଆଜ୍ଞାରେ । ଶୁଝିବ ଦି ଦ୍ୱିତ ଦିନରେ ॥

ତାସଙ୍କ କଥବାରୁ ଏତେ | ଶୁଣିଣ ଆନନ୍ଦ ସମସ୍ତେ ||
ସେ ଯାହା ବସ୍ତା ଆଣିଥିଲେ | ସମସ୍ତ ଫେଲଡାଇ ଦେଲେ ||
ସାଧୁଙ୍କ ଚରଣାକୁ ଯେତେ | ଦେଖିଣ କେଲେ ସେ ସମସ୍ତେ |
ତାହା ଧରିଣ ସମ୍ବାସେ | ଚଳିଲେ ମନର ହରଷେ |
ମଠରେ ପ୍ରବେଶ ହୋଇଲେ | ସାଧୁମାନଙ୍କୁ ଚରଚିଲେ |
ଅତିଥି ଭୋଜନ ସାରିଣ | ଗଲେ ସେ କଲ୍ୟାଣ ବାଞ୍ଛି ଣ |
ଏମନ୍ତେ ତିନଦିନ ଗଲା | ଚତୁର୍ଥ ଦିନ ଆସି ହେଲା |
ଏଥିଅନ୍ତରୁ ଭକ୍ତ ଚଟେ | ଈଶ୍ୱର କଲା ନାନାମତେ |
କି ବୁଦ୍ଧି କରିବ ବୋଇଲା | ସାଧୁମାନଙ୍କୁ କଷ୍ଟ ହେଲା |
ନ ଦେଲେ ତାହାଙ୍କର ବିତ୍ତ | ରହିବେ ନାହିଁ ମୋ ମଠତ ||
ଏଥିଅନ୍ତରୁ ତୀର୍ଥବାସୀ | ଯଦ୍ୟପି ଦ୍ୱାରେ ମୋର ଆସି |
ପ୍ରକାଶ କରିବେ ଭୋଜନ | ମୋତେ ତ ନ ମିଳିବ ଧନ |
ନିରାଶ ହୋଇଣ ସମସ୍ତେ | ଲେଉଟି ଯିବେ ଯେଝାମତେ |
ତାହା ଦେଖିଣ ମୋ ଜୀବନ | ଥିବାର କିସ ପ୍ରୟୋଜନ ||
ନ ଦେଖୁଁ ଏସନ ଚରିତ | ଜୀବନ ଯିବାହିଁ ଉଚିତ |
ଏମନ୍ତ ବୋଲି ଚଳିଗଲେ | ନାଗ ଗରଳ ଅଣାଇଲେ |
ଯତନ କରି ତାହା ରଖି | ପତ୍ନୀକି ବୋଇଲା ସେ ଡାକି |
ଅତିଥି କିଛୁ ନ ପାଇବେ | ନିରାଶ ହୋଇ ବାହୁଡ଼ିବେ ||
ଏହା ଦେଖିବା ଯାଏ ପ୍ରାଣ | ରଖିବା କିସ ପ୍ରୟୋଜନ |
ଏଥିକି ନୁହ ତୁ ବିକଳ | ମୁଁ ଏବେ ଭକ୍ଷିବି ଗରଳ ||
ତା ଶୁଣି ଯୁବତୀ ରତନ | ପତିକି ବୋଲଇ ବଚନ
ତୁମ୍ଭେ ତ ମୋର ସଙ୍ଗଫଳ | ବୃକ୍ଷକୁ ଯେସନ ବକଳ |
ଫଳର ମଞ୍ଜି ପ୍ରାପ୍ତେ ହୋଇ | ବଇକ ଲଗାଇ ଅଛଇ |
ପତିବିହୀନା ଯେଉଁନାରୀ | ସଂସାରେ ଥାନ୍ତି ଦେହଧରି ||
ସେ କହୁ ତାଙ୍କ ଦୁଃଖମାନ | ଜୀବନ୍ତେ ମରଣ ସମାନ |
ମୋତେ ଛାଡ଼ିବା ମନେକରି | ଏ କେଉଁ ଧରମ ତୁମ୍ଭର |

ତୁମ୍ଭେ ପରାଣ ତେଜବ ଯେବେ । ମୁହିଁ ଭୁଞ୍ଜିବି ବିଷ ତେବେ ॥
ତାହା ଶୁଣି ସ୍ୱାମୀ ବୋଲେ ସତ । ପୁତ୍ର ଯେ ହୋଇବେ ଅନାଥ ॥
ଅବଳା ବୋଲଇ ବଚନ । ଯାହାର ପ୍ରଭୁ ଲକ୍ଷମନ ॥
ତାର କାହାକୁ ଅଛି ଡ଼ର । ହେ ସ୍ୱାମୀ ବିସ୍ମର ନ କର ॥
ଏମନ୍ତ କୁହାକୁହି ହେଲେ । ଦୁହେଁଭୁଞ୍ଜିବା ମନ କଲେ ॥
ଏଥି ଉତ୍ତରୁଁ ଶୁଣ ରସ । ରଜନୀ ହୋଇଲା ପ୍ରବେଶ ॥
ପୁତ୍ର ବାପ ତିନିଜଣ । ଆନନ୍ଦେ ଭୋଜନ ସାରିଣ ॥
ଶୟନ ମନ୍ଦିରରେ ପଶି । ସମସ୍ତେ ପ୍ରଭୁ ନାମ ଘୋଷି ॥
ବିଷ ଚାଟିଆ ଲୁଚାଇଣ । ରଖିଲେ ଶୟନ ଠାବେଣ ॥
ଭୁଞ୍ଜିବା ପୁତ୍ର ନିଦ୍ରାଗଲେ । ବୋଲି ଗୁପତେ ବିଚାରିଲେ ॥
ପ୍ରଭୁଙ୍କ ପାଦପଦ୍ମେ ମତି । ଦେଇ ଅନେକ କଲେ ସ୍ତୁତି ॥
ଜୟ ତୁ ଜୟ ଦୀନବନ୍ଧୁ । ନାମ କରୁଣାମୟ ସିନ୍ଧୁ ॥
ଅନାଦି ପ୍ରଭୁ ଆଦିକନ୍ଦ । ଲୋକ ପାଳନ ସଦାନନ୍ଦ ॥
ଏଣୁ ଶରଣ ତୋ ପୟର । ତୁ ନାଥ ଯାହା ଇଚ୍ଛାକର ॥
ଜୟ ତୁ ଅନନ୍ତ ମୂରତି । ଅଶେଷ ଜୀବ ପ୍ରାଣପତି ॥
ଜୟ କୋଦଣ୍ଡ କାଣ୍ଡ ପାଣି । ଚିନ୍ତାର୍ପିଜନ ଚିନ୍ତାମଣି ॥
ଭକତ ବତ୍ସଳ ତୋ ବାନା । ଭବ ଭୟକୁ ବଜ୍ରସେହ୍ନା ॥
ପ୍ରାର୍ଥନା ସରୁଛି ଆମ୍ଭର । ତୁ ନାଥ ଯାହା ଇଚ୍ଛାକର ॥
ଏହା ବୋଲନ୍ତି ବେନ ପ୍ରାଣୀ । ଜାଣିଲେ ସର୍ବ ଅନ୍ତର୍ଯ୍ୟାମି ॥
ମହା ନିଦ୍ରାକୁ ଆଜ୍ଞା ଦେଲେ । ବଚନ ଯିବୁ ତୁ ଟୋଇଲେ ॥
ମୋ ଭକ୍ତ ମାନଙ୍କୁ ଯାଇଣ । ନିଦ୍ରାରେ ମୋହ ଏକ୍ଷଣ ॥
ଆଜ୍ଞା ପ୍ରମାଣେ ନିଦ୍ରାଗଲା । ତିନିଙ୍କ ହୃଦୟ ମୋହିଲା ॥
ବିଷ ଭକ୍ଷିବା ବୁଦ୍ଧି ଯାଇ । ନିଦ୍ରାରେ ପଡ଼ିଲେ ଘୁମାଇ ॥
ଏମନ୍ତ ସମୟରେ ଆସି । ହୋଇଲା କଣ୍ଟାଦଣ୍ଡ ନିଶି ॥
ଯେ ପ୍ରଭୁ ସର୍ବଦା ଅଚିନ୍ତା । ଲାଗିଲା ଭକ୍ତଜନ ଚିନ୍ତା ॥
ଅନ୍ତ୍ୟା ଭାବ ହେଲା ମନୁ । ବିଜୟ ପ୍ରଭୁ ଲକ୍ଷମନୁ ॥

ସେ ରାମ ଦାସଙ୍କ ସ୍ୱରୂପ । ମାୟାରେ ହେଲେ ସେହି ରୂପ ॥
ସଙ୍ଗତେ ଘେନି ବାସଜନ । ବୁହାଇ ସାଧୁଙ୍କର ଧନ ॥
ଛାମୁରେ ବହୁତ ଲଗାଇ । ବିଜୟ କଲେ ଭାବଗ୍ରାହୀ ॥
ସାହୁଙ୍କ ଦ୍ୱାରେ ବିଜେ କରି । ଡାକିଲେ ଧର୍ମ ନାମ ଧରି ॥
ବହନ ହୋଇ ଉଠି ଆସ । ଆମ୍ଭେ ଆସିଛୁ ରାମ ଦାସ ॥
ଦଇବେ କଣ୍ଠ ଆଜ୍ଞାବନ । ନଅ ତୋ ଋଣ ଦେବା ଧନ ॥
ଶୁଣି ସାଧୁତ ବେଗେ ଉଠି । ଦ୍ୱାରେ ପ୍ରଭୁଙ୍କୁ ଯାଇଁ ଭେଟି ॥
ସୁର ଯୋଗୀନ୍ଦ୍ର ମୁନିମାନେ । ଯାହା ଚିନ୍ତନ୍ତି ଦିବ୍ୟଜ୍ଞାନେ ॥
ଭକ୍ତକୁ ଋଣ ଦେବାଫଳେ । ତାଙ୍କୁ ଦେଖିଲେ ଚର୍ମଡୋଳେ ॥
ଯା ମାୟା ବେଦେ ଅଗୋଚର । କାହୁଁ ଚିହ୍ନିବ ନର ଛାର ॥
ନିଜ ଖାତକ ପ୍ରାୟେ ମଣି । ବୋଇଲେ ଶୁଣ ମୋର ବାଣୀ ॥
ଏଡ଼େ ନିଶାରେ କାହିଁପାଇଁ । ଅଇଲ କହ ହେ ଗୋସାଇଁ ॥
ତା ଶୁଣି ଜଗତ ଜୀବନ । ବୋଇଲେ ଶୁଣ ମୋ ବଚନ ॥
ପଦାର୍ଥ ନଥିବାରୁ ମୋତେ । କହୁ ଯେ ଥିଲେ ନାନା ମତେ ॥
ଆଜ ପ୍ରବେଶ ହେଲା ବଉ । ରଖିବା ନୁହଇ ଉଚିତ ॥
ଲେଖିଦେବା ଯେ ଧନ ତୋର । ମିଶାଇ ମଳ କଳନ୍ତର ॥
ସୁନସ୍ତା ଗଣି ଘେନିଯାଅ । ଆମ୍ଭର ଗୋଜା ଗୋଟି ଦିଅ ॥
ଏମନ୍ତ ବୋଲି ଧନ ଦେଲେ । ତାଠାରୁ ଗୋଜା ଘେନିଗଲେ ॥
ବୋଇଲେ ଶୁଣ ହେ ସାଧୁତ । ତୋ ଆଗେ କହୁଁ ଅଛୁ ସତ ॥
ଏବେ ମୁଁ କହୁଅଛୁ ତୋତେ । ବ୍ୟୟ ତୁ ସାଧୁଙ୍କ ନିମନ୍ତେ ॥
ଯେତେ ଲଗିବ ଦେଉଥିବୁ । ସେ ଧନ ଆମ୍ଭେ ଶୁଝିଦେବୁ ॥
ଆମ୍ଭେ ଖାତକ ତୁମ୍ଭେ ସାହୁ । ଏଥିକି କର୍ମା ଡରୁ ଥାଉ ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ସେଠାରୁ ବିଜେ କରିଗଲେ ॥
ଏହି ପ୍ରକାରେ ଯେତେ ସାହୁ । ସଭିଙ୍କ ଦ୍ୱାରେ ମହାବାହୁ ॥
ସୁନସ୍ତାମାନ ଗଣି ଦେଲେ । ସମସ୍ତ ଗୋଜା ଘେନିଗଲେ ॥
ଚଳିଣ ଗଲେ ସେ ସନ୍ଧରେ । ମନ ଅଛଇ ଭକ୍ତଠାରେ ॥

ପ୍ରବେଶ ଦାସଙ୍କ ଭୁବନେ । ବିଜୟ କଲେ ସୀମସ୍ଥାନେ ॥
ବସ୍ତ୍ର ଚାଟିଆ କରେ ଧରି । ଫିଙ୍ଗିଣ ଦେଲେ ଦୂର କରି ॥
ଯେସନ୍ତ ଚାଟିଆ ପରେ ଗୋଜା । ରଖି ଦେବାଧି ଦେବରାଜା ॥
ଅନ୍ତର ହେଲେ ଜଗନ୍ନାଥ । ଏମନ୍ତେ ଗଲା ରାତ୍ର ପାନ୍ଥ ॥
କାକ କୁକ୍କୁଟ ରଡ଼ି ଶୁଣି । ନିଦ୍ରା ତେଜିଲେ ଦେବପ୍ରାଣୀ ॥
ଉଠି ପ୍ରଭୁଙ୍କ ନାମ ଗୁଣ । ପଣ୍ଡା ବୋଇଲେ ପତ୍ନୀ ଶୁଣ ॥
ମୁଁ ବଡ଼ ମନ୍ଦକର୍ମ କଲି । ବସ୍ତ୍ର ନ ରଖି ନିଦ୍ରା ଗଲି ॥
ଦେଖ ପାଞ୍ଚଲି ଆସି ରାଏ । ଏମନ୍ତ ବୋଲି ବସ୍ତପାଏ ॥
ଦେଖିଲେ ବସ୍ତ୍ର ନାହିଁ କଛୁ । ପାଏ ଯେ ଖଣ୍ଡ କେତେ ଅଛୁ ॥
ବୋଇଲେ କି ଅଦ୍ଭୁତ ହେଲା । ରଖିବା ବସ୍ତ୍ର କେଣେ ଗଲା ॥
ଏମନ୍ତ ବୋଲି ପାଏ ଧରି । ଖପ ଲଗାଇ ପାଠ କରି ॥
ଆପଣା ନାମ ଗୋଜା ଜାଣି । ବୋଇଲେ ଶୁଣ ପ୍ର ସ୍ୱାମିଣି ॥
ଏହାତ ବଡ଼ ଆଚମ୍ବ ତ । କେବଳ ପ୍ରଭୁଙ୍କ ଆସ୍ଥିତ ॥
ଗରନପାଏ କେଣେ ଗଲା । ଆମ୍ଭର ଗୋଜ କେ ଆଣିଲା ॥
କେମନ୍ତେ ଜାଣିବା ଏ କଥା । ମୋର ମନକୁ ଲାଗେ ବ୍ୟଥା ॥
ଏମନ୍ତେ କୁହାକୁହି ହୋନ୍ତେ । ଆସିଣ ମିଳିଲେ ଅନ୍ତେଥେ ॥
ବେଳ ପ୍ରହରେ ଅଛି ହୋଇ । ବସିଲେ ମଠଦ୍ୱାରେ ଯାଇ ॥
ସମସ୍ତେ ଏକସ୍ଥାନେ ବସି । ଦାସଙ୍କୁ ଅନେକ ପ୍ରଶଂସି ॥
ଡାକିଲେ ଆସ ରାମ ଦାସ । କାଲିରୁ ସର୍ବେ ଉପବାସ ॥
ଆମ୍ଭ ତରସ୍ତ ବେଗେ କର । ତା ଶୁଣି ମଠରୁ ବାହାର ॥
ସାଧୁଙ୍କୁ କରଣ ବର୍ଣନ । ଦାସର କଲା ପଞ୍ଚମନ ॥
ଏଥର କି ବୁଦ୍ଧି କରିବ । କାହାକୁ ଯାଇ କି ମାଗିବ ॥
ସାଧୁମାନଙ୍କ ଦ୍ୱାରେ ଗଲେ । ମହତ୍ତ୍ୱ ସାରିବେ ମୋ ଭଲେ ॥
ଏମନ୍ତେ ବସ୍ତୁଛନ୍ତି ତଳେ । ସାଧୁ ଯେ ଆସିଣ ଭୁଲନ୍ତେ ॥
ବୋଇଲେ ଶୁଣ ହେ ଗୋସାଇଁ । ମନରେ ଦୁଃଖ କାହିଁ ପାଇଁ ॥
ସକାଳ ଯାଏ ନ ରଖିଲ । ରାଏ ଅର୍ଦ୍ଧରେ କମ୍ପା ଗଲ ॥

ସୁନ୍ଦି ସକଳ ସାଦ୍ଧୁ ଧନ । ଘେନଅଇଲ ଗୋଟା ପୁଣ ॥
ବହପାତ୍ରିବା ଯାଏ ଥିଲେ । ଦେବା ତୁମ୍ଭଙ୍କୁ ଚଣ୍ଡୁଥିଲେ ॥
ତା ଶୁଣି ଭକ୍ତ ରାମ ଦାସ । ପୁଛଇ ସାଧୁଙ୍କର ପାଶ ॥
ତୁମ୍ଭଙ୍କୁ ଧନ ଦେବାବେଳେ । ଦେଖିଲଟିକ ଚର୍ମଡୋଳେ ॥
ତା ଶୁଣି ବୋଲନ୍ତି ସାଧୁତେ । ଗୋଟା ଦେଲନ୍ତୁ ତୁମ୍ଭ ହସ୍ତେ ॥
ତୁମ୍ଭେ ଆମ୍ଭକୁ ଦେଲ ଧନ । ଏବେତ କହୁଛ ଏମାନ ॥
ତା ଶୁଣି ଭକ୍ତ ଅତି ସ୍ନେହେ । ଧନୀମାନଙ୍କୁ ଧରି ବୋଲେ ॥
ବୋଇଲେ ଧନ୍ୟ ତୁମ୍ଭେମାନେ । ପ୍ରଭୁଙ୍କୁ ଦେଖିଲ ନୟନେ ॥
ମୁଁ କେତେ ପାପ କରିଥିଲି । ଜନେ ସ୍ୱପନେ ନ ଦେଖିଲି ॥
ତାହା ଶୁଣିଣ ମହାଜନେ । ଅତି ଗଦଗଦ ହେଲେ ମନେ ॥
ବୋଇଲେ ନମସ୍ତେଁ ଭକ୍ତସ୍ତେ । କୃଷ୍ଣୁ ଯେ ଜଗନ୍ତ ସାକ୍ଷାତେ ॥
ହେ ରାମ ଦାସ ତୋ କୃପାରୁ । ଆମ୍ଭେ ଦେଖିଲୁ ମହାମେରୁ ॥
ତୋ ସଙ୍ଗେ ନ ଥିଲେ କ୍ୟାପାଉ । କାହୁଁ ଦେଖନ୍ତୁ ଈଶ୍ୱରର ॥
ଏବେ ଅମ୍ଭର କଥା ଶୁଣ । ଦାର ତନୟ ଧନପ୍ରାଣ ॥
ଆଜୁଁ ତୁ ଯାହା କଲେ କର । ଚରଣେ ଶରଣ ତୋହର ॥
ଏମନ୍ତ କହି ଚଳିଗଲେ । ସାଧୁଙ୍କ ପାଇଁ ସଞ୍ଚା ଦେଲେ ॥
ତାହା ଦେଖିଣ ରାମଦାସ । ସମର୍ପି ଅତିଥିଙ୍କ ପାଶ ॥
ନିଜପୁରକୁ ଚଳିଗଲେ । ପୁତ୍ର ଭାରିଯା ବସାଇଲେ ॥
କହିଲେ ସକଳ ଚରିତ । ଶୁଣି ସେ ହେଲେ ଆଚମ୍ବିତ ॥
ବୋଇଲେ ପ୍ରଭୁ ବିନା ଆନ । ଏହା କେ କରିବା ଭଜନ ॥
ପ୍ରାଣୀ ନ ଜାଣି ମୂଢ଼ପଣେ । ଭ୍ରମୁଅଛନ୍ତି ଅକାରଣେ ॥
ଯାର ମହିମା ଚରାଚର । ପୂରି ରହିଛି ପରାପର ॥
ଚିନ୍ତିଲେ ନାହିଁ ଭୟ ଭ୍ରାନ୍ତି । ନ ଥିବ ଜନ୍ମ ମୃତ୍ୟୁ ପ୍ରାନ୍ତି ॥
ଏମନ୍ତ ବୋଲି ତିନିଜଣ । ଚିନ୍ତିଲେ ଅନନ୍ତ ଚରଣ ॥
ଏକଇ ଚିତ୍ତ ଏକମନ । ହୋଇଣ ପ୍ରଭୁ ଲଗ୍ନମନ ॥
ପାଦପଦ୍ମରେ ଚିତ୍ତ ଦେଲେ । ଦିବସ ରଜନୀ କଟିଲେ ॥

ନରକେ ପର ଉପକାର । କରିବା ମୂଳ ଅଟେ ତାର ।
ଏମନ୍ତ ବଞ୍ଚାଇଲେ ଧନ । ପ୍ରଭୁଚରଣେ ଦେଇ ମନ ।
ଶୁଣ ହେ ମନ ନ ପ୍ରନାଥ । ବାନର ମହିମା ଏମନ୍ତ ।
ପାଷାଣ୍ଡଲୋକ ଯେତେମାନେ । ପରତେ ନାହିଁ ତାଙ୍କମନେ ।
ଯେ ଅବା ଜାଣଇ ଏ ଭାବ । ତାଙ୍କମାନଙ୍କୁ ଏ ଦୁର୍ଲ୍ଲଭ ।
କହଇ ରାମ ଦାସ ମନ । ମୂଳ ମୋ ପ୍ରଭୁ ଲକ୍ଷ୍ମଣ ।
ସେ ଭାବପଦ୍ମରେ ନରତ । ଭ୍ରମର ହୋଇ ମୋର ଚିତ୍ତ ।
ସାଧୁମାନଙ୍କ ପାଦ ଧୂଳି । ମଣ୍ଡିତ ହୋଇ ମୋ ମଉଳି ।
ଏମନ୍ତ ଚଇତନ୍ୟ କଥା । ଶୁଣି ଗ୍ରାହକ ଭବବ୍ୟଥା ।
ସୁଜନ ଶୁଣି ତୁଅ ପାର । ଶମନ କଣ୍ଠରୁ ଉଦ୍ଧାର ।
କସ କହଇ ରାମଦାସ । ମୂଳଟି ଅଟଇ ବିଶ୍ୱାସ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟସମ୍ବାଦେ
ରାମଦାସ ମୋକ୍ଷଣେ ନାମ ସପ୍ତମୋଽଧ୍ୟାୟଃ ।

—ଃ୦ଃ—

## ଅଷ୍ଟମ ଅଧ୍ୟାୟ

### ରଘୁଅରକ୍ଷିତ ସମ୍ବାଦ

### ଚୈତନ୍ୟ ଉବାଚ

ହେ ମନ ଶୁଣ ଧନ୍ୟରସ । ଅଶେଷ ଜନ୍ମ ପାପନାଶ ।
ଏକଉ ଆଚମ୍ବିତ କଥା । ଶୁଣି ଗ୍ରାହକ ଦୁଃଖବ୍ୟଥା ।
ଅମୃତ ରସର ସମାନ । ଶୁଣ ସୁସ୍ଥିର କରି ମନ ।
ଯେବଣ ବଙ୍ଗଦେଶ ନାମ । ସକଳ ଦେଶରେ ଉତ୍ତମ ।
ସେ ଦେଶେ ଏକଇ ସହର । ନାମ ତାହାର ହରିପୁର ।
ସେ ଦେଶେ ଅଟେ ଅଧିପତି । ଅଚଳାଚଳ ତା ସମ୍ପତ୍ତି ।
ନାମ ତା କୃଷ୍ଣ ମହାପାତ୍ର । ତାହାର ଏକଗୋଟି ପୁତ୍ର ।
ପତ୍ନୀର ନାମ ତା କମଳା । ସଦା ଆନନ୍ଦ ଅତି ଭୋଳା ।
ପୁତ୍ରର ନାମ ରଘୁନାଥ । ଭକ୍ତିର ଅଂଶେ ସେତୁ ଜାତ ।

ଏମନ୍ତେ ତିନଜଣ ଥାନ୍ତି | କରଣ ନର୍ମଳ ଭକତ ||
ଦୁଃଖୀ ଦରିଦ୍ର ଜନଠାରେ | ଜଗଣ ନ ଥାଇ ମନରେ ||
ଦଅଇ ଶକ୍ତି ଯେନ ତାର | କଲତେ ପର ଉପକାର ||
ଅମୃତ ସମାନେ ବଚନ | କହୁ ତୋଷଇ ପ୍ରାଣୀମନ ||
ଏମନ୍ତେ କେତେଦିନ ଗଲା | ପୁତ୍ରର ଶୋଳବର୍ଷ ହେଲା ||
ତା ଦେଖି ଜନମ ପିଅର | ଖୋଜ ଉତ୍ତମ ବନ୍ଧୁ ଘର ||
ମଧ୍ୟବଙ୍ଗଳା ଯେ ସହର | ସେ କଳାବତୀପୁରେ ଘର ||
କରଣ ନାମ ଗଙ୍ଗାଧର | କୁବେର ସମ ଧନ ତାର ||
ସପତ ପୁତ୍ରରେ କୁମାରୀ | ଲକ୍ଷଣବନ୍ତ ସୁକୁମାରୀ ||
ନାମ ତାହାର ଅନ୍ନପୂର୍ଣ୍ଣା | ପଦ୍ମିନୀ ଜାତି ଯେ ସୁଷମା ||
ଅନେକ ଧନ ବ୍ୟୟ କଲେ | କୃଷ୍ଣ ପୁତ୍ରକୁ ବିଭା କଲେ ||
ଏମନ୍ତେ କେତେଦିନ ଗଲା | ତାର ସମ୍ପଦ ଚ୍ୟୁତ ହେଲା ||
ଦରିଦ୍ର ହୋଇ ଦୁଃଖ ପାଇ | କଷ୍ଟ ସେ ନ ପାରିଲା ସହି ||
ଚିନ୍ତା କରିଣ ପିତା ମଲା | ମାତା ଅନଳେ ଝାସ ଦେଲା ||
ରହିଲା ଏକଇ କୁମର | ଦଇବେ ଅତି ସୁକୁମାର ||
ତା କଷ୍ଟ କହୁଁ ନ ସରଇ | ଭିକ୍ଷା ମାଗିଣ ସେ ଖାଅଇ ||
ଏମନ୍ତେ କେତେଦିନ ଗଲା | ତା ଚିତ୍ତେ ଦିବ୍ୟଜ୍ଞାନ ହେଲା ||
ବିଚାର କଲା ଅନୁକ୍ଷଣେ | ଏଥେଁ ମୁଁ ଥିବି କି କାରଣେ ||
ସକଳ ଜୀବର କରତା | ଭକତି ମୁକତିର ଦାତା ||
କମଳାଦେବୀ ପ୍ରାଣପତି | ଦୀନବାନ୍ଧବ ଜଗଜ୍ଜ୍ୟୋତି ||
ବିଜୟ ଶ୍ରୀ ନୀଳକନ୍ଦର | କମ୍ବୁ ରଥାଙ୍ଗ ଧରିକର ||
ସେ ପ୍ରଭୁ ଛାମୁକୁ ମୁଁ ଯିବି | ସକଳ କଷ୍ଟ ଜଣାଇବି ||
ଶ୍ରୀମହାପ୍ରସାଦ କୈବଲ୍ୟ | ଖାଇ ବଞ୍ଚିବି ମୋର କାଳ ||
ଦଇବେ ମହାପୁଣ୍ୟକ୍ଷେତ୍ର | ମଲେତ ହୋଇବି ପବିତ୍ର ||
ଏମନ୍ତେ ମନେ ବିଚାରିଲା | ଶ୍ରୀକ୍ଷେତ୍ରେ ବେଗେ ଚଳିଗଲା ||
ବର୍ଣ୍ଣନ କଲା ପଦ୍ମମୁଖ | ଛାମୁରେ ଜଣାଇଲା ଦୁଃଖ ||

ପିତା ଜନନୀ ଦୁହେଁ ମଲେ । ମୋତେ ଅନାଥ କରିଗଲେ ॥
ଏଣୁକି ରଘୁ ଅରକ୍ଷିତ । ତୋ ପାଦେ ଶରଣ ବାଞ୍ଛିତ ॥
ହେ ପ୍ରଭୁ ଯାହା ଇଚ୍ଛା କର । କହିଲା ଦାସ ମୁହିଁ ତୋର ॥
ଏମନ୍ତେ କନ୍ଧ ସୁତ କଲେ । କ୍ଷେତ୍ରରେ ବୁଲି ଦିନ ନେଲେ ॥
ବୈଷ୍ଣବ ମଠଧାମଦ୍ୱାରେ । ମହାପ୍ରସାଦ ଭିକ୍ଷା କରେ ॥
ଭାଗ୍ୟେ ମିଳଇ ଯେତେ ଅବା । ଆନନ୍ଦେ ତାହା କରେ ସେବା ॥
ପ୍ରଭୁଙ୍କୁ କରି ଦରଶନ । ଏହି ପ୍ରକାରେ ବଞ୍ଚେ ଜନ ॥
ଏମନ୍ତେ କେତେଦିନ ଗଲା । ଶ୍ୱଶୁର ଘର ତା ଜାଣିଲା ॥
ରଘୁଅର୍କ୍ଷିତ ଦୁଃଖ କଥା । ସକଳେ ପାଇଲେ ବାରତା ॥
ସମସ୍ତ କୁଟୁମ୍ବ ବସିଣ । ଭାବ ଦୁହିତା ପତି ଗୁଣ ॥
ବାହୁଡ଼ି କାନ୍ଦୁ ମାତା ପିତା । ଖାଇଣ ହୋଇଲା ଅଚେତା ॥
ସର୍ବ ସମ୍ପଦ ନାଶ କରି । ଭିକ୍ଷା ମାଗଇ ବେଶ ଫେରି ॥
ଅର୍କ୍ଷିତ ଲୋକ ପ୍ରାୟେ ହୋଇ । ମିଳିଲା ଶ୍ରୀକ୍ଷେତ୍ରରେ ଯାଇଁ ॥
ସମସ୍ତ ଦ୍ୱାରେ ଭିକ୍ଷା କରେ । ପ୍ରାଣ ପୋଷଇ ଅନାଗ୍ରରେ ॥
ତାକୁ କେମନ୍ତେ ଝିଅ ଦେବା । କରିବା ଅନ୍ୟଜନେ ବିଭା ॥
ଏମନ୍ତ ବୋଲିଣ ସମସ୍ତେ । ବିଚାର କଲେ ଦୃଢ଼ଚିତ୍ତେ ॥
ସେହି ରାଜ୍ୟର ରଜା ପାତ୍ର । ନାମ ତା ବାସୁ ମହାପାତ୍ର ॥
ଦୁହିତା ପାଇଁ ତା ପୁତ୍ରକୁ । ଖୋଜିଲେ ବିଭା କରିବାକୁ ॥
ଆସନ୍ତା ଫଗୁଣ ମାସରେ । ଶୁକ୍ଳପକ୍ଷ ପଞ୍ଚମୀରେ ॥
ବିଭା କରିବା ହେବା ମୂଳ । ତା ଶୁଣି ଦୁହିତା ବିକଳ ॥
ମନେ ବିଚାର ହେଲା ତାର । ଧିକ ଜୀବନ ଅଟେ ମୋର ॥
ମୋ ପ୍ରାଣନାଥ ଥାଉଁ ଥାଉଁ । ବିଭା କରିବେ ମୋତେ ଆଉ ॥
ମୁଁ ପୁଣି ଧରି ଏ ଶରୀର । ବଦନ ଚାହିଁବ କାହାର ॥
ଏମନ୍ତ ମନେ ବିଚାରିଣ । ଚିତ୍ତେ ଚିନ୍ତିଲା ନାରାୟଣ ॥
ହେ ପ୍ରଭୁ ଗଜ ନିସ୍ତାରଣ । ଦ୍ରୌପଦୀ ଲଜ୍ଜା ନିବାରଣ ॥
ମୃଗୁଣୀ ଉଦ୍ଧାରଣ ପ୍ରାୟେ । ମୋତେ ଉଦ୍ଧର ଦେବରାଏ ॥

ଭେଟ କରାଅ ମୋର କାନ୍ତ । ନୋହିଲେ ମରିବ ନିଶ୍ଚିତ ॥
ଏମନ୍ତ ଚିନ୍ତି ଭଗବାନ । ବଦଳର କଲ ତାର ମନ ॥
କେ ଏବେ ଯିବ କ୍ଷେତ୍ରବରେ । କହିବ ମୋ ପତି ସ୍ଥାମୂରେ ॥
ଏମନ୍ତେ ବରନ୍ତି ବର୍ନ୍ତି । କେତେହେଁ ଜଣ ସେ ଗ୍ରାମରୁ ॥
ଶ୍ରୀଜଗବନ୍ଧୁଙ୍କ ଦର୍ଶନ । ଏମନ୍ତେ କରନ୍ତେ ଗମନ ॥
ତା ଦେଖି ଆନନ୍ଦ ସୁନ୍ଦରୀ । ପତ୍ର ଲେଖିଲା ଗୋପ୍ୟକରି ॥
ବୋଇଲା ଆହେ ପ୍ରାଣେଶ୍ୱର । ମୁଁ ଯେବେ ଦାସୀଟି ତୁମ୍ଭର ॥
ଆସନ୍ତା ଫଗୁଣ ମାସରେ । ଶୁକଳ ପକ୍ଷ ପଞ୍ଚମୀରେ ॥
ଏ ରାଜ୍ୟପାଣ୍ଡ କୁମରକୁ । ବିଭା କରିବେ ମୋତେ ତାକୁ ॥
ଏଥିକୁ ବୁଝି ବେଗେ ଆସ । ମୋଠାରେ ଅଛି ଯେବେ ଆଶ ॥
ଆସ ନଆସ ତୁମ୍ଭ ମନ । ମୁଁ ଏବେ ଗଣୁଅଛି ଦିନ ॥
ଯେବେ ଏ କଣ୍ଠ ପରିଯନ୍ତେ । ଦେଖା ନ ଦେବ ତୁମ୍ଭେ ମୋତେ ॥
ପ୍ରାଣ ଗୁଡ଼ିକ ଆମ୍ବାଖାତେ । ଲାଗିବ ସ୍ତ୍ରୀହତ୍ୟା ତୋତେ ॥
ଏମନ୍ତେ ଚିଠାଉ ମୁଡିଲା । ପଥିକଜନ ହସ୍ତେ ଦେଲା ॥
ଦିନସ୍ତେ କହିଲା ବହୁତ । କ୍ଷେତ୍ରେ ଅଛନ୍ତି ମୋର କାନ୍ତ ॥
ରଘୁଅହିଁତ ନାମ ତାର । ଭିକ୍ଷା ମାଗଇ ଦ୍ୱାର ଦ୍ୱାର ॥
ଏ ଲେଖା ଦେବ ତାଙ୍କ ହସ୍ତେ । ଜୀବନଦାସ ଦେବ ମୋତେ ॥
ଜନ୍ମ ଜନ୍ମରେ ଉପକାର । ସୁଝି ନ ପାରିବି ତୁମ୍ଭର ॥
ଏମନ୍ତ କହିଲାକ ବାଳୀ । ପଥିକଜନ ଗଲେ ଚଳି ॥
କେତେହେଁ ଦିନକ ଉତ୍ତାରେ । ମିଳିଲେ ଯାଇଁ କ୍ଷେତ୍ରବରେ ॥
ଏକଇ ସ୍ଥାନେ ବସାକରି । ପ୍ରଭୁଙ୍କ ଦରଶନ ସାରି ॥
ସୁନ୍ଦରୀ କଥା ଅଛି ମନେ । ତା ପତି ଲୋଡ଼େ ପ୍ରତିଦିନେ ॥
ରଘୁଅହିଁତ ନାମ ଧରି । ଯାହାକୁ ଦେଖିଲେ ପଚାରି ॥
ଏମନ୍ତେ କେତେଦିନ ପରେ । ଭେଟପଡ଼ିଲା ସିଂହଦ୍ୱାରେ ॥
ନାମ ଗୋସାଇଁ ପଚାରିଲେ । ଚିଠାଉ ତାର ହସ୍ତେ ଦେଲେ ॥
ବୁଝ ହେ ପତ୍ରପାଠ କରି । ଦେଇଅଛନ୍ତି ତୁମ୍ଭ ନାରୀ ॥

ତା ଶୁଣି ରଘୁ ଅରକ୍ଷିତ । ଚଟାଙ୍ଗ ଧରଣ ଏକାନ୍ତ ॥
ସକଳ ବୃତ୍ତାନ୍ତ ବୁଝିଲେ । କି ବୁଦ୍ଧି କରିବ ବୋଇଲେ ॥
ପଥ ଅଟଇ ମାସକର । ନ ଗଲେ ମଲ ପ୍ରିୟା ମୋର ॥
କଣ୍ଠ ରହିଲ ବଶଦ୍ଧନ । ନ ଗଲେ ଯୁବତୀ ରତନ ॥
ନଷ୍ଟେ ମରିବ ଆତ୍ମଘାତେ । ଏଥକୁ ସାହା ଜଗନ୍ନାଥେ ॥
ଏମନ୍ତ ବୋଲି ଚଳିଗଲେ । ପ୍ରଭୁଙ୍କ ସମ୍ମୁଖରେ ମିଳିଲେ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଦେଇ ହସ୍ତ ॥
ବୋଇଲେ ପ୍ରଭୁ ଚକ୍ରପାଣି । ଚିନ୍ତାର୍ଥି ଜନ ଚିନ୍ତାମଣି ॥
ନମସ୍ତେ ବାଞ୍ଛା କଳ୍ପତରୁ । କୃପାସମୁଦ୍ର ମହାମେରୁ ॥
ଭକ୍ତ କାମନା କାମଧେନୁ । ଘୋର ଦୁରିତତମ ଭାନୁ ॥
ମୋର ଶଙ୍କଟ ନିବାରଣେ । ତୁମ୍ଭହୁଁ ନାହିଁ ଅନ୍ୟ ଜଣେ ॥
କିସ କରିବ ଦେବସ୍ୱାମୀ । ତୁମ୍ଭେତ ସର୍ବ ଅନ୍ତର୍ଯ୍ୟାମୀ ॥
କାହେକ ଫେଡ଼ ଅଭିମାନ । ନୋହିଲେ ଗଲାଟି ଜୀବନ ॥
ପ୍ରଭୁ ନୋହିଲେ ସାହାପନ୍ଥ । ସଂସାରେ ନାହିଁ ମୋତେ ରକ୍ଷ ॥
ଶୁଣିଲ ରଘୁ ଅରକ୍ଷିତ । ବୋଲିଣ ଚଳିଲ ତ୍ୱରିତ ॥
ମିଳିଲ ସିଂହଦ୍ୱାରେ ଯାଇ । ଛୁଣ୍ଡା କଟସ ପାଖ ଶୋଇ ॥
ଚିନ୍ତିଣ ଶରଣ ପଞ୍ଜର । ହାରିଲ ଦେହ ବୁଦ୍ଧି ତାର ॥
ଘୋର ନିଦ୍ରାରେ ଅଶକତ । ତାହା ଜାଣିଲେ ଜଗନ୍ନାଥ ॥
ଭୃତ୍ୟ ବସ୍ତ୍ରକ ଯାଉ ବାନା । ଲଗିଲ ସେବକ ବେଢ଼ା ।
ପ୍ରଭୁ ତା ସଙ୍ଗ ନ ପାଇଲେ । ବେତାଳ ଘାଇ ଆଜ୍ଞାଦେଲେ ॥
ବୋଇଲେ ଏହିକ୍ଷଣି ଯିବ । ମୋର ଭକ୍ତକୁ ବହି ନେବ ॥
ନିଦ୍ରା ନ ଭାଙ୍ଗୁ ଟେକି ନେବ । ତୁମ୍ଭ ନେବାର ନ ଜାଣିବ ॥
ଯେ କଳାବତୀ ପାଟଣାର । ରଘୁଅରକ୍ଷିତ ବନ୍ଧୁ ଘର ॥
ଶୀଘ୍ର ଆସିବ ସେଠାର । ଯାଅରେ ବିଳମ୍ବ ନ କର ॥
ବେତାଳେ ପ୍ରଭୁ ଆଜ୍ଞାପାଇ । ଚଳିଲେ ଅତି ବେଗ ହୋଇ ॥
ରଘୁଅରକ୍ଷିତ ପାଶେ ମିଳି । କଟସ ସଙ୍ଗତରେ ଟେକି ॥

ମାସ୍ତୁପଲଙ୍କେ ଶୁଆଇଲେ । ଶୂନ୍ୟମାର୍ଗରେ ବହିନେଲେ ॥
ପ୍ରବେଶ କଲାବଣ୍ଠପୁରେ । ବାସଙ୍କ ଶ୍ୱଶୁର ଦୁଆରେ ॥
ନିଷ୍ଟଲେ ଶୁଆଇ ଅଇଲେ । ପ୍ରଭୁଙ୍କ ସ୍ତମ୍ଭରେ କହିଲେ ॥
ଭକ୍ତ ଚଳିଲେ ନିଜପୁର । ଏମନ୍ତେ ହେବେ ଝଦାକର ॥
ରଘୁଅଣ୍ଡିତ ଦେଖି ବ୍ରହ୍ମି । ଦେଖିଲ ଖେଦବରେ ନାହିଁ ॥
ବସ୍ତ୍ର ଜଳ ତାର ତଣ୍ଡ । ଏତ ଅଟଇ ବିପରୀତ ॥
ଥିଲି ମୁଁ ସିଂହଦ୍ୱାରେ ଶୋଇ । କେ ମୋତେ ଗଲ ଏଥେ ଥୋଇ ॥
ଏହା ମୁଁ ଜାଣିବ କେମନ୍ତ । କାହାକୁ ପଚାରିବ ଏଥେ ॥
ଏ ପୁଣି ଅଟେ କେଉଁ ଗ୍ରାମ । କାହାର ଅଟେ ଏ ଆଶ୍ରମ ॥
ଏମନ୍ତ ଭାବନ୍ତି ତା ମନେ । ପୁଚ୍ଛିଲ ଗତାଗତ ଜନେ ॥
ଲୋକେ କୋଇଲେ ତାହା ଶୁଣି । ଶୁଣ ଭକ୍ତକ ଆମ୍ଭ ବାଣୀ ॥
ଏ ଅଟେ କଳାବଣ୍ଠପୁର । ଏ କୃଷ୍ଣ ମହାପାତ୍ର ଘର ॥
ଶୁଣି ଭକତ ମନେ ଗୁଣି । ମୋ ଚିନ୍ତା ଜାଣି ଚକ୍ରପାଣି ॥
ପେଷିଲେ ମାୟାକରି ଏଥେ । ଆନର ବଳେ ନୋହେ ଏତେ ॥
ବ୍ରହ୍ମାଣ୍ଡ ଯାର ଖେଳଘର । ଏ କଥା କେତେକ ମାତର ॥
ଏମନ୍ତେ ଭାବନ୍ତୁ ତା ମନେ । ଘରୁ ବାହାର ଶଳାମାନେ ॥
ଦ୍ୱାରେ ଦେଖିଲେ ଉପଗତ । ହୋଇଛନ୍ତି ରଘୁ ଅରକ୍ଷିତ ॥
ଛୁଣ୍ଡାଲେଙ୍କଡ଼ା ବେଶହୋଇ । ଚହ୍ଲି ଘରକୁ ଗଲେ ଧାଇଁ ॥
କହିଲେ ପିତାଙ୍କ ସ୍ତମ୍ଭରେ । ତୁମ୍ଭ ଦୁହିତା ପତି ଦ୍ୱାରେ ॥
ବସିଛୁ କେମନ୍ତ ପ୍ରକାରେ । ଚାଲ ଦେଖିବ ଧାଡ଼କାରେ ॥
ତା ଶୁଣି ଜନନୀ ପିଅର । ସୁନ୍ଦ ଦୁହିତା ଆଦି ତାର ॥
ମଧ୍ୟରୁ ବାହାର ହୋଇଲେ । ବସିଛୁ ଅନାଇଣ ଦେଲେ ॥
ଦୁହିତା ଦେଖି ମହାସୁଖୀ । ସକ୍ରର ମୁଖ ଟଳ ଶୁଖି ॥
ବୋଇଲେ ଦରବ କି କଳ । ଆସିତ ମନ୍ଦବୃତ୍ୟ ହେଲ ॥
ନ କଲେ ଏହାକୁ ଅର୍ଚ୍ଚନା । ଯାଇବା ଲୋକେ ନିନ୍ଦା ସିନା ॥
ଏମନ୍ତ ବୋଲି ଡାକନେଲେ । ସ୍ନାନ ମାର୍ଜନା କରାଇଲେ ॥

ଦିବ୍ୟ ବସନ ପିନ୍ଧାଇଲେ । ନାନାଦି ଅଳଙ୍କାର ଦେଲେ ॥
ଭୋଜନ ଆଦ୍ୟ କର୍ମ ଯେତେ । ସକଳ ସାରିଲେ ଭୃଶତେ ॥
କପଟ ରଖିଣ ହୃଦରେ । ଚୋଷିଲେ ଅନେକ ପ୍ରକାରେ ॥
ଏଥି ଉତ୍ତରେ ତାତ ମାତ । ଦୁହିତା ଗୁଡ଼ ସାତ ସୁତ ॥
ଏକାନ୍ତେ ବସି ବିଚାରିଲେ । କି ବୁଦ୍ଧି କରିବା ବୋଇଲେ ॥
ଏଥିକୁ ଉପାୟ କରିବା । ଭୋଜନ ବେଳେ ବିଷ ଦେବା ॥
ମଲେ ଏ ରଘୁ ଅରକ୍ଷିତ । ଦୁହିତା ନୋହିବ ଅନାଥ ॥
ଏମନ୍ତ କହିବାରୁ ତାତ । ସମସ୍ତେ କଲେ ସନମତ ॥
ସମ୍ମତ କରି ଚଳଗଲେ । ଗୋପ୍ୟେ ଗରଳ ଅଣାଇଲେ ॥
ଅନ୍ନ ବ୍ୟଞ୍ଜନ ପିଠାକ୍ଷୀରି । ରନ୍ଧନ କଲେ ବିଷ ଭରି ॥
ତାହା ଜାଣିଲା ମହାସତୀ । ହୃଦପଦ୍ମରେ କଲା ଯୁକ୍ତି ॥
ଏକେ ଚତୁରୀ ଶିରୋମଣି । ତରକ ହୃଦେ ତାହା ଜାଣି ॥
ବିଚାରି କଲା ତାର ମନ । ନଷ୍ଟେ ମୋ ପତିର ଜୀବନ ॥
ଗରଳ ଦେଇଣ ହରିବେ । କି ବୁଦ୍ଧି କରିବି ମୁଁ ଏବେ ॥
ଏମନ୍ତ ବୋଲି ପତ୍ର ଧରି । ଲେଖିଲା ଶ୍ରୀହରି ସୁମରି ॥
ବିଷ ଯେ ଭରିଛନ୍ତି ଏଥେ । ଭୁଞ୍ଜିବ ନାହିଁ କଦାଚିତେ ॥
ଏମନ୍ତ ଲେଖି ଗୋପ୍ୟକରି । ପିଠା ଗୋଟିକ ମଧ୍ୟେ ଭରି ॥
ଥୋଇଲା ବିଷ ପିଠା ପରେ । ଶୁଣ ହେ ଏଥୁ ଅନନ୍ତରେ ॥
ରଘୁଅରକ୍ଷିତକୁ ତ୍ୱରିତେ । ଡାକିଲେ ଭୁଞ୍ଜିବା ନିମନ୍ତେ ॥
ଆଦର କରି ଘେନି ଗଲେ । ଗମ୍ଭୀର ମଧ୍ୟେ ବସାଇଲେ ॥
ରଘୁଅରକ୍ଷିତେ ପାଦ ଧୋଇ । ବସିଲେ ଆସନରେ ଯାଇଁ ॥
ବିଷ ମିଶ୍ରିତ ଦ୍ରବ୍ୟ ଯେତେ । ବାଢ଼ିଲେ ରଘୁର ନିମନ୍ତେ ॥
ଆନନ୍ଦେ ରଘୁଅରକ୍ଷିତ । ଧ୍ୟାନେ ଚିନ୍ତିଲେ ଜଗନ୍ନାଥ ॥
ଜଳ ଗଣ୍ଡୁଷ କରେ ଧରି । ପ୍ରଭୁଙ୍କୁ ନଇବେଦ୍ୟ କରି ॥
ଇଷ୍ଟ ବ ବୋଲିଣ ଭକତ । ଧରିଲା ବିଷପିଠା ହସ୍ତ ॥
ପ୍ରଭୁ ଆଜ୍ଞାରେ ପିଠା ଲଗାଟି । ଭାଙ୍ଗନ୍ତେ ତଳେ ପଡ଼େ ଚିଠି ॥

ଧରଣ ପଡ଼ିଲା ଭୂଇଁରେ । ବସ୍ତ୍ରର କଳା ହୃଦଗତେ ।
ନ ଜାଣି ଅପରାଧ କଲି । ପ୍ରଭୁଙ୍କୁ ବିଷ ଭୁଞ୍ଜାଇଲି ।
ବୁଦ୍ଧି ଯେ ନ ଦିଶଇ ମୋତେ । ପ୍ରସାଦ ଗ୍ରହିବ କେମନ୍ତେ ।
ଜନମ ହୋଇଲେ ନଅଛି । ଅବଶ୍ୟ ମରିବାର ସତି ।
ଯେବେ ମୁଁ ପ୍ରସାଦ ଗ୍ରହିବ । ତାଲେ କି ଅମର ହୋଇବ ।
କେବଳ ପ୍ରଭୁ ଅପଣନ୍ଦେ । ପଶିବ ମହାନର୍କ ମଧ୍ୟେ ।
ଏଥେ ପାଇବ କେଉଁ ଲାଭ । ଭୁଞ୍ଜିବା କଥା ମୋ ଦୁର୍ଲ୍ଲଭ ।
ଏମନ୍ତେ ଦିଶ ଦ୍ରବ୍ୟଧର । ଭୁଞ୍ଜିଲା ଗୋବିନ୍ଦ ସୁନ୍ଦର ।
ରେ ପ୍ରମାଣେ ନ ଥୋଇଲା । ପ୍ରସାଦ ବୋଲି ତା ଭୁଞ୍ଜିଲା ।
ଦେଖୁ ଦେଖୁ ସେ ମହାଵିଷ । ଉଦରେ ହୋଇଲା ପ୍ରବେଶ ।
ଘୋଟିଲା ବ୍ରହ୍ମଘରେ ଯାଇ । ଡ଼ାକଣ ପଢ଼ିଲାକ ମହୀ ।
ହାରିଲା ଉଜତ ଜୀବନ । କେଶି ଆନନ୍ଦ ଗୃହଜନ ।
ଆଗେଣ କବାଟ କଳଦେଲେ । ପୁତ୍ରକୁ ଚାହିଁ ପିତା ବୋଲେ ।
ରଜନୀ ପ୍ରହରରୁ ନଅ । ନ ପୋଡ଼ ପୋଡଣ ପକାଅ ।
ଲୋକେ ପୁଚ୍ଛିଲେ କହ ଏତେ । ଜୁଆଇଁ ମଲା ସର୍ପାଘାତେ ।
ଶୁଣିଣ ସମସ୍ତେ ହରଷ । ଏଥୁ ଅନ୍ତରେ ଶୁଣ ରସ ।
ସେ ରତ୍ନଅଙ୍କିତ ଘରଣୀ । ପତି ନିଧନ କଥା ଶୁଣି ।
ବସ୍ତ୍ରର କଳ ତାର ଛଟେ । ଅଗ୍ନିର ସଙ୍ଗ ହେଲା ମୋତେ ।
ଯାହା ଲେଖିଛୁ ଦେବବର । ଅନ୍ୟଥା କରୁ କାହା ଯାର ।
ଏମନ୍ତ ବୋଲି ସେ ତରୁଣୀ । ଚିନ୍ତିଲା ପ୍ରଭୁ ଚକ୍ରପାଣି ।
କମ୍ପିଲା ଇନ୍ଦ୍ର ସିଂହାସନ । ଜାଣିଲେ ପ୍ରଭୁ ଭଗବାନ ।
ଭୃତ୍ୟଙ୍କୁ ପଡ଼ିଲା କଷଣ । ସେଠାରୁ ଅଇଲେ ବହନ ।
ପ୍ରବେଶ କଳାବଣ୍ଟି ପୁରେ । ଭୃତ୍ୟ ପଡ଼ିଛନ୍ତି ଯେଉଁଠାରେ ।
ଚାହିଁ ବିଜୟ ଦେବହରି । ଦେଖିଲେ ଭୃତ୍ୟ ଅଛି ମରି ।
ତୋଳି ଧଇଲେ ଦେବରାଏ । ପୁତ୍ରକୁ ଯେସନ୍ତେ ବାପ ମାଏ ।
ଜଗତନାଥ ପଦ୍ମକରେ । ଆଶ୍ୱାସି ସର୍ବାଙ୍ଗ ଯାଇକରେ ।

ବୋଇଲେ ଜଠରେ ନନ୍ଦନ । କର୍ମା ତୁ ନହେ ଅଚେତନ ॥
ଯାହା ସହାୟେ ପୀତବାସ । ତାର ଗରଳ ସ୍ଥିର କିସ ॥
ତତକ୍ଷଣେ ପାଇଲା ଜୀବନ । ପ୍ରଭୁ ହୋଇଲେ ଅନ୍ତଧାନ ॥
ଭକତ ଉଠି ବେଗ ହୋଇ । ପାଶେ ଦେଖିଲା କେହି ନାହିଁ ॥
ବିସ୍ମର କଲା ତାର ଚିତ୍ତେ । ପ୍ରଭୁ କରୁଣା କଲେ ମୋତେ ॥
ଗରଳ ତାପୁ ଉଦ୍ଧାରଣ । ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ॥
ଏମନ୍ତ ବୋଲି ଉଠି ବସି । ଭାବେ ଶ୍ରୀହରି ନାମ ଘୋଷ ॥
ଏଥି ଉତ୍ତାରୁ ଦିନ ଶେଷ । ଦିବସ ହୋଇଲା ପ୍ରବେଶ ॥
ପିତା ପୁତ୍ରଙ୍କୁ ଘେନି ଗଲା । କବାଟ ଫେଡ଼ି ଅନାଇଲା ॥
ବସିଛି ରଘୁ ଅରକ୍ଷିତ । ଶ୍ରୀହରି ପାଦେ ଦେଇ ଚିତ୍ତ ॥
ଭଜୁଛି ରାମ କୃଷ୍ଣ ହରି । ତାଙ୍କୁ ଦେଖିଲେ ବେଶି ଜରି ॥
ବୋଇଲେ ଏ'ତ ବିଷଖାଇ । କେମନ୍ତେ ଅଛୁ ପ୍ରାଣ ପାଇ ॥
ଏ ନିଶ୍ଚେ ନୁହଁଇଟି ଆନ । ଜାଣ ଏ ଦଇବ ସମାନ ॥
ଏମନ୍ତେ ବୋଲି ଯେଷ୍ଠାମତେ । ମିଳିଲେ ରଘୁର ଅଗ୍ରତେ ॥
କହି ବିନୟ କଥାମାନ । ବୋଇଲେ ବାନ୍ଧବ ହେ ଶୁଣ ॥
ଆମ୍ଭେ ଅପ୍ରାଧ କଲୁ ଯେତେ । ଚିତ୍ତେ ନ ଧର କଦାଚିତ୍ତେ ॥
ତା ଶୁଣି ରଘୁ ଅରକ୍ଷିତ । ବୋଇଲେ ଶୁଣ ହେ ଜଗତ ॥
ତୁମ୍ଭର କିଛିନାହିଁ ଦୋଷ । ପୂର୍ବେ ତାହାକୁ ଦେଲି ବିଷ ॥
ତେଣୁ ଏ ଜନ୍ମେ କଲି ପାନ । ଅର୍ଜିଲି କଥା ନୋହେ ଆନ ॥
କେବଳ ମୋର ପ୍ରାଣପତି । ଅନନ୍ତ ଦାରୁ ବ୍ରହ୍ମ ମୂର୍ତ୍ତି ॥
ତେଣୁ ପାଇଲି ମୁହିଁ ପ୍ରାଣ । କଥା ଏ କହୁଅଛି ଶୁଣ ॥
ଦେଖି ମୋ ଦରିଦ୍ର ସ୍ୱଭାବ । ତୁମ୍ଭ ଦୁହିତା ଆନେ ଦେବ ॥
ସକଳେ କରିଣ ବିଚାର । ଆମ୍ଭେ ଯାଉଛୁ ଦୟାକର ॥
କିବା ଧର୍ମକୁ ଥିଲେ ଭୟ । ମୋହର ସତୀ ମୋତେ ଦିଅ ॥
ସଙ୍ଗତେ ଘେନି ଯିବି ଚଳି । ସେ ମୋର ଦୁଃଖର ସଙ୍ଗାଳି ॥
ହୋଇଲେ ଯେ ତୁମ୍ଭର ଇଚ୍ଛା । ଗଲଟି ନାହିଁ ମୋର କଥା ॥

ଏମନ୍ତ ବୋଲି ରାମହରି । ମୁକୁନ୍ଦ ମାଧବ ମୁରାରି ।
ଭଜ ଗୋବିନ୍ଦ ଦାମୋଦର । ମନ୍ଦିରୁ ହୋଇଲେ ବାହାର ।
ତା ଦେଖି ଗୃହଜନ ଯେତେ । ପଛରେ ଧାଇଁଲେ ସମସ୍ତେ ।
ବୋଇଲେ ଆଜ ମାସ. ରହ । ପତ୍ନୀକି ଛୋଡ଼ି କେଣେ ଯାଅ ।
ତା ଶୁଣି ରଘୁ ଅରକ୍ଷିତ । ରହିଲେ ନାହିଁ କଦାଚିତ ।
ଦେଖି ଶ୍ୱଶୁରଣନା ଗଲେ । ମନ୍ଦରେ ପ୍ରବେଶ ହୋଇଲେ ।
ପୁଛିଲେ ଦୁହିତା ଅଗ୍ରତେ । କହ କି ବର୍ଣ୍ଣରୁ ତଙ୍କେ ।
କୁମାରୀ ବୋଲେ ଶୁଣ ତାତ । ଯିବି ମୁଁ ସ୍ୱାମୀର ସଙ୍ଗତ ।
ସେ ଯୋଗୀ ମୁଁ ତାହାର ଥାଳ । ମୋତେ ରଖିଲେ ଅମଙ୍ଗଳ ।
ଅଧିକ କି କହିବି ତୋତେ । ବୋଲୁଅଛି କହିବୁ କି ମୋତେ ।
ମୁଁ ନୁହେଁ ଏମନ୍ତ ତରୁଣୀ । ହତ୍ୟାରେ ହୋଇବୁ କାରିଣୀ ।
ଶୁଣି ଦୁହିତା ସଜ କଲେ । ବସ୍ତ୍ର ଭୂଷଣ ଧନ ଦେଲେ ।
ସଙ୍ଗତେ ଯେଣ ଗଲେ ଚଳି । ରଘୁ ଅକ୍ଷିତ ପାଶେ ମିଳି ।
ବୋଇଲେ ତୁମ୍ଭ ପତ୍ନୀ ନଅ । ଆମ୍ଭଙ୍କୁ ଦୟା କରିଥାଅ ।
ତାତ ଜନନୀ ଥାଇ ଭଲେ । ସଂସାର ଲଜ୍ଜା ଛଡ଼ାଇଲେ ।
ସମର୍ପି ଦେଲେ କରେ କର । ବୋଇଲେ ପତ୍ନୀ ନଅ ତୋର ।
ଆଦ୍ୟ ଏ ଲାଗିଲାଟି ତୋରତ । କନ୍ୟା ଚଳିଲେ ଯେଷ୍ଠାମତେ ।
ଏଥି ଜରିନ୍ତୁ ସ୍ୱାମୀ ପାଦେ । ଝଟି ପଡ଼ିଲା ଅପ୍ରମାଦେ ।
ଉଠି କପାଳେ ଦେଲା ହାତ । ବୋଇଲା ଆହେ ପ୍ରାଣନାଥ ।
କେଣିକି ଯିବା ବଜେ କର । ଏଥିରେ ବିଳମ୍ବ ନ କର ।
ତା ଶୁଣି ରଘୁ ଅରକ୍ଷିତ । ଧରିଲା ନିଜ ପତ୍ନୀ ହାତ ।
ଚଳିଣ ଗଲେ ଯେଷ୍ଠାମତେ । ଶୁଣ ହେ ମନ ନୃପ ନାଥେ ।
ଭକତ ନିମନ୍ତେ ଶ୍ରୀବତ୍ସ । ଦୁଅନ୍ତି ସେ ଏଡ଼େ ସମର୍ଥ ।
କେବଳ ନିର୍ମଳ ହୃଦରେ । ଡ଼ାକିଲେ ଲକ୍ଷେ ଯୋଜନରେ ।
ପାଶେ ଡ଼ାକିଲା ପ୍ରାୟେ ମଣି । ତାକୁ ଭେଟନ୍ତି ଚକ୍ରପାଣି ।
କୁଟିଳ ହୃଦ ଯେଉଁ ନର । ସେ ଡ଼ାକୁ ରହିଣ ପାଶର ।

ତାଙ୍କୁ ବର୍ଧିଭଜନ ମତେ । ଶୁଣନ୍ତୁ ନାହିଁ କଦାଚତେ ॥
ଏଣୁ ବିଶ୍ବାସ ଏକା ମୂଳ । ଶୁଣ ହେ ମନ ମହୀପାଳ ॥
ଏ ବାର୍ଦ୍ଧ୍ୟଭକ୍ତି ରସାମୃତ । ଅଶେଷ ରସର ଉଦ୍ଧୃତ ॥
ସୁଧା ପୂରିତ ପଦେ ପଦ । ବିଷୟୀ ବିଷକୁ ଏ ଗଦ ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳ ବିଳାସ ॥
ସୁଜନେ ଏହି ରସେ ଭସ । ମୋହର କ୍ଷମା କର ଦୋଷ ॥

ଇତି ଶ୍ରୀ ବାର୍ଦ୍ଧ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ॥
ରଘୁ ଅରକ୍ଷିତ ବିଷଭକ୍ଷଣେ ନାମ ଅଷ୍ଟମୋଽଧ୍ୟାୟଃ ।

—ଃ୦ଃ—

## ନବମ ଅଧ୍ୟାୟ

## ରଘୁ ଅରକ୍ଷିତ ସମ୍ବାଦ

### ମନ ଉବାଚ

ଶୁଣ ସାନନ୍ଦ ମନରାୟେ । ଚୈତନ୍ୟ ପାଦେ କରି ଧ୍ୟାୟେ ॥
ବୋଲଇ କୃତ୍ୟ କୃତ୍ୟ ହୋଇ । ପବିତ୍ର କଲୁ ମୋତେ ତୁହି ॥
ଶୁଣିଲି ପ୍ରଭୁଙ୍କ ମହିମା । ଆଦର ଭକତ ଗାରିମା ॥
ପୁଣି ପଚାରୁଅଛି ତୋତେ । ମନେ ସଂଶୟ ମୋର ଏତେ ॥
ଚହୀକ ହେନଣ ସଙ୍ଗତ । ଗଲା ଯେ ରଘୁ ଅରକ୍ଷିତ ॥
କାହିଁ ରହିଲ ସେହୁ ଯାଇ । ଏ କଥା କହିବ ବୁଝାଇ ॥
ଆଦର ମହାପାତ୍ର ଘର । କଣ୍ଠ ଯେ ଥିଲା ନୂଆ ବର ॥
ସେ କଥା ବୃଣି ହେଲା କିସ । କହ ହେ ଏଥିର ସନ୍ଦେଶ ॥
ଶୁଣି ଚୈତନ୍ୟ ଅତି ତୋଷେ । କହଇ ମନ ରାଜା ପାଶେ ॥
ହେ ମନ ସାବଧାନେ ଶୁଣ । ସେ କୃଷ୍ଣ ମହାପାତ୍ର ପୁଣ ॥
ଏଣେ ଦୁହିତା ପଠାଇଲା । ତେଣେ ଦୂତଙ୍କୁ ପେଶି ଦେଲା ॥
ସେ ରାଜ୍ୟ ପାତ୍ରର ଅଗ୍ରତେ । ଯାଇଣ କହିଲେ ଭରତେ ॥
ତୁମ୍ଭ ପୁତ୍ରକୁ ଯେଉଁ କନ୍ୟା । ଦେବାକୁ ଥିଲା ମୋ ବାସନା ॥
ଆସି ତାହାର ନିଜ ପତି । ଘେନିଣ ଗଲା ମୋ ଦୁହିତା ॥

ଯେତେ ଉପାୟ ଆମ୍ଭେ କଲୁ । କେବେହେଁ ରକ୍ଷି ନ ପାରିଲୁ ॥
ତୁମ୍ଭର ଗୋଚର ନିମନ୍ତେ । ପେଷିଣ ଦେଇଅଛୁଁ ଦୂତେ ॥
ତୁମ୍ଭର ଉପାୟ ଥିଲେ କର । ବାଟେ ଅଛନ୍ତି କନ୍ୟାବର ॥
ତା ଶୁଣି ପାତ୍ର କୋପଭରେ । ସୈନ୍ୟ ସାଜିଲା ସେ ସତ୍ୱରେ ॥
ଧାଇଁଣ ଗଲେ ରାଜବାଟେ । ମିଳିଲେ ରଘୁର ନିକଟେ ॥
ବୋଇଲେ ଆରେ କନ୍ୟାଚୋର । ଜୀବନେ ଆଶା ଥିଲା ତୋର ॥
ଯୁଦ୍ଧ ସକାଶ ଏ ସୁନ୍ଦରୀ । ନୋହିଲେ ନେବୁ ବାନ୍ଧିକରି ॥
ଶୁଣି ପଛକୁ ଦେଲା ଚାହିଁ । ଅନେକ ସୈନ୍ୟ ଛନ୍ତି ଧାଇଁ ॥
ତା ଦେଖି ପତ୍ନୀ ଆଗେ କଲା । ଆପଣେ ପଛରେ ରହିଲା ॥
ପତ୍ନୀ ବୋଇଲା ସ୍ୱାମୀ ଶୁଣ । ଏଥର ହେଲା ମୋ ମରଣ ॥
ତୁମ୍ଭଙ୍କୁ ମାରି ମୋତେ ନେବେ । ଅନେକ ଭର୍ତ୍ସନା କରିବେ ॥
ଏଥିକି କି ବୁଦ୍ଧି କରିବା । କେମନ୍ତେ ଏଥିରୁ ବଞ୍ଚିବା ॥
ତା ଶୁଣି ରଘୁଅରକ୍ଷିତ । ବୋଇଲା ଶୁଣରେ ସଙ୍ଗାତ ॥
ମୋ ପ୍ରଭୁ ବାସୁଦେବ ମୂର୍ତ୍ତି । ଏ ଘୋର କେତେକ ବିପତ୍ତି ॥
ଯେ ତୋତେ ମୋତେ ଭେଟକରି । ଯେ ବଷତାର୍ଯ୍ୟ କଲେ ପାରି ॥
ଏବେ ରଖିବେ ସେହି ମତେ । କେ ସଖି ଭୟ କମ୍ପା ଚିତ୍ତେ ॥
ଶରଣ ପଞ୍ଜର ଯା ବାନା । ସର୍ବ ଭୟକୁ କରୁ ସେହ୍ନା ॥
ବ୍ରହ୍ମା ଇନ୍ଦ୍ର ଯାର ପାଦେ । ଧ୍ୟାନେ ରହନ୍ତି ଅପ୍ରମାଦେ ॥
ସେ ପ୍ରଭୁ ଥାଉଁ ଥାଉଁ ମୋର । କମ୍ପା ତୁ ଡରୁ କାହାକର ॥
ଏମନ୍ତ କହୁ ପ୍ରିୟା ପାଶେ । ଆଗେ ମିଳିଲେ ବେନି ଅଶ୍ୱେ ॥
ଶ୍ରୀବଳଦେବ ବ୍ରହ୍ମବଶି । ବେନି ଅଶ୍ୱରେ ଛନ୍ତି ବସି ॥
କନ୍ଧେ ଉଭଶା ଅଛି ପଡ଼ି । କଟୀରେ ଯମଦାଢ଼ ଭିଡ଼ି ॥
ଢାଲ ପଡ଼ିଛି ପିଠି ପାଶେ । ଦ୍ୱିକ୍ଷୟେଶ୍ୱର ପ୍ରାୟେଦଶେ ॥
ଦଶମସିଂହ ପ୍ରାପ୍ତ ହୋଇ । ମିଳିଲେ ଭୃତ୍ୟ ପାଶେ ଯାଇ ॥
ବୋଇଲେ ପ୍ରଭୁ ଦାମୋଦର । କେବଣ ଦେଶେ ତୁମ୍ଭ ଘର ॥
କାହୁଁ ଆଇଲ ଯିବ କାହିଁ । ଏକାକୀ ସଙ୍ଗେ କେହି ନାହିଁ ॥

ଆବର ତୁମ୍ଭ ପଛକତ । ଅନେକ ସୈନ୍ୟ ଧାଇଁଛନ୍ତି ।
କହ ଏ କେବଣ ଚରିତ । ତା ଶୁଣି ରଘୁ ଅରକ୍ଷିତ ॥
କହେ ଅତ୍ୟନ୍ତ ଧୀରବାଣୀ । ଶୁଣ ଶଙ୍କିସ୍ତୁ ଚୂଡ଼ାମଣି ॥
ଏ ବଡ଼ ଆଚମ୍ଭିତ କଥା । କହୁ କହିଲେ ହେବ ପୋଥା ॥
ମୋର ପତ୍ନୀକି ମୁଁ ନଅଣେ । ମାରିବେ ଆସୁଛନ୍ତି ମୋତେ ॥
ଅନାଥ ପ୍ରାଣୀ ମୁଁ ଅଟଇ । ସଖା ସୋଦର ମୋର ନାହିଁ ॥
କେବଳ ପ୍ରଭୁ ଚକ୍ରପାଣି । ଶିଳାବ୍ଦ୍ରି ଚନ୍ଦ୍ର ଚୂଡ଼ାମଣି ॥
ତାହାଙ୍କ ବିନା ଅନ୍ୟ ଜଣେ । ନାହିଁ ମୋ ଶରଣ ରକ୍ଷଣେ ॥
ଶୁଣି ସାନନ୍ଦ ବେନି ଭାଇ । ରହିଲେ ଆଗ ପଛ ହୋଇ ॥
ଦାସ ଦାସୀଙ୍କି ଆଗ କଲେ । ନଭୟେ ଚାଲ ହୋ ବୋଇଲେ ॥
ଆଜ୍ଞା ପ୍ରମାଣେ ବେନିଜନ । ଅଭୟ ପଞ୍ଚରେ ପଶିଣ ॥
ଆନନ୍ଦେ କରନ୍ତି ଗମନ । ପଛେ ଯେ ଧାଇଁଛନ୍ତି ସୈନ୍ୟ ॥
ଭୃତ୍ୟଙ୍କୁ ଅନାଇଣ ଦେଲେ । ଗୋବିନ୍ଦ ମାୟା ବିଆଇଲେ ॥
ଗୋଟିଏ ସ୍ୱରୂପ ହୋଇଣ । ବେଢ଼ି ଅଛନ୍ତି ନାଗସ୍ତୁଣ ॥
ଦେଖି ପ୍ରାଣକୁ ଭୟ କରି । ସୈନ୍ୟ ଯେ ଗଲେ ଅପସରି ॥
ଭେକ ଫଣୀକି ଦେଖି ଯେହ୍ନେ । ଭୟେ ପଳାନ୍ତି ଏଣେ ତେଣେ ॥
କେଶରୀ ଦେଖି ମୃଗ ଗଜ । ଯେହ୍ନେ ହୁଅନ୍ତି ହତ ବୀର୍ଯ୍ୟ ॥
ଗରୁଡ଼ ଦେଖି ଯେହ୍ନେ ବ୍ୟାଳ । ପଳାଇ ପଶିଲା କି ବିଳ ॥
ତେମନ୍ତ ପ୍ରାଣର ଆରତେ । ପଳାଇଗଲେ ଯେଝା ମତେ ॥
ଯହୁଁ ସେ ଦଣ୍ଡଭଙ୍ଗ ହେଲେ । ଭୃତ୍ୟଙ୍କୁ ଘେନି ପ୍ରଭୁ ଗଲେ ॥
ସେ ରାଜ୍ୟ ସୀମା ପାରିକରି । ଯାଅ ବୋଇଲେ ଦେବହରି ॥
ତା ଦେଖି ରଘୁ ଅରକ୍ଷିତ । ପ୍ରଣାମ କଲା ଅପ୍ରମିତ ॥
ବୋଇଲା ତୁମ୍ଭର କୃପାରୁ । ପ୍ରାଣ ପାଇଲୁ ଶତ୍ରୁଠାରୁ ॥
ନୋହିଲେ ଆମ୍ଭ ଏ ଶରୀର । ଦେଖନ୍ତା ଯାଇ ଯମପୁର ॥
ଏଣୁ ତୁମ୍ଭର ପଦ୍ମ ପାଦେ । ଶରଣ ଗଲୁ ଅପ୍ରମାଦେ ॥

ଯା ମାୟା ଦେବେ ଅଗୋଚର । ଜାହୁଁ ଚିହ୍ନିବ ନର ଛାର ।
ଦେଖ ସେ ପ୍ରଭୁ ନାରାୟଣ । ଭୃତ୍ୟଙ୍କୁ ସଙ୍କଟୁ ତାରଣ ।
ବିଜୟ କଲେ ଆନନ୍ଦକ । ପ୍ରବେଶ ହେଲେ ନୀଳାଚଳ ।
ଏଥି ଉତ୍ତରୁ ବେନପ୍ରାଣୀ । ଛନ୍ଦେ ଚଳିଲେ ଚକ୍ରପାଣି ।
ସବୁ ଆପଦୁଁ ପାର ହୋଇ । ଆନନ୍ଦେ ଗଲେ ପଥ ବାହି ।
କେତେଦିନେ ବନର ଭିତରେ । ପ୍ରବେଶ ହେଲେ କ୍ଷେତ୍ରବରେ ।
ପ୍ରଭୁଙ୍କ ଦରଶନ କଲେ । ଦକ୍ଷିଣ ପାରୁଶେ ରହିଲେ ।
ମଣ୍ଡପ ଦରଶନ କଲେ । ଦକ୍ଷିଣ ପାରୁଶେ ରହିଲେ ।
ମଣ୍ଡପ ଖଣ୍ଡିଏକ କଣି । ତହିଁ ରହିଲେ ବେନପ୍ରାଣୀ ।
ସକଳ ଚିନ୍ତା ଦୂରେ ତେଜି । ହୃଦେ ପ୍ରଭୁଙ୍କୁ ଭାବେ ଭଜି ।
ନ ଜାଣେ ଅନ୍ୟ କଥା ମାନ । ନିରତେ ଗୋବିନ୍ଦ ଗାୟନ ।
ଦାରୁବ୍ରହ୍ମଙ୍କ ଲୀଳା ଯେତେ । ଲକ୍ଷ୍ୟ ଯେ ଥାଇ ଅନୁବ୍ରତେ ।
ନିଧୂପ ପଞ୍ଚ ଅବକାଶ । ଖଟିଣ ଥାଇ ପ୍ରଭୁ ପାଶ ।
କଳାଶ୍ରୀ ମୁଖକୁ ଚାହିଁଣ । ବାଖାଣୁଥାଇ ତାଙ୍କ ଗୁଣ ।
ଦେଖିଣ ଶ୍ୱେତ ପଦ୍ମତୋଳା । ଆନନ୍ଦେ ହେଉଥାଇ ଭୋଳା ।
ଶ୍ରୀ ପାଦ ପଦ୍ମେ ନୃତ୍ୟ ଭାବ । ବୋଲେ ମୁଁ ପଞ୍ଚମୁଣ୍ଡା ଶିବ ।
ଏମନ୍ତ ବୋଲି ଭାବ ଭୋଳେ । ନେତ୍ରୁ ଲୋତକ ଧାରା ଗଳେ ।
କରେ ବଜାଇ କରତାଳ । ଭଜନ ଗୋବିନ୍ଦ ଗୋପାଳ ।
ନାଚଇ କଳାଗଣ୍ଠ ଘରେ । ତା ଭଙ୍ଗି କହିଲେ ନ ସରେ ।
ଜଗମୋହନେ ଗଡ଼ ଯାଇ । ଗରୁଡ଼ ପଛେ ଉଭା ହୋଇ ।
ଜଣାଇ ଦୁଃଖ ସୁଖ ଯେତେ । ଚଳଇ ଭିକ୍ଷାର ନିମନ୍ତେ ॥
କ୍ଷେତ୍ରବରେ ବୁଲି ଭିକ୍ଷାକରେ । ଯେ ଅବା ମିଳେ ତା ଭାଗ୍ୟରେ ।
ଘେନି ଚଳଇ ନିଜପୁରେ । ବିଅଇ ନେଇ ପତ୍ନୀଠାରେ ।
ପତ୍ନୀ ଯା କରଇ ରନ୍ଧନ । ସ୍ୱାମୀ ତା କରଇ ଭୋଜନ ।
ତା ଅବଶେଷ ଖାଏ ନାରୀ । ତା ବିନୁ ନ ଲୋଡ଼ଇ ବାରି ।
ଏମନ୍ତେ ବଞ୍ଚଇ ତରୁଣୀ । ପତିଙ୍କ ଗୁରୁ ସ୍ଥାନେ ମଣି ।
ପତିକ କରେ ଅତି ଦୟା । ଏକଇ ସ୍ଥାନ୍ତ ବେନି କାୟା ।

ଏମନ୍ତ ବଞ୍ଚୁଥାଇ ଦିନ । ଭଜଣ ଶ୍ରୀ ମଧୁସୂଦନ ॥
ସାଧୁ ଜନଙ୍କୁ ଦେଖେ ଯହିଁ । ନମିଣ ଭକତି କରଇ ॥
ସକଳ ଜୀବେ ଦୟା ତାର । କରତେ ପର ଉପକାର ॥
ନ ହରେ ପର ନାରୀ ଚିତ୍ତ । ନୋହେ କପଟ କୁଟଚିତ୍ତ ॥
ଦ୍ୱାରେ ଦେଖିଲେ ଅଭ୍ୟାଗତେ । ବିପ୍ର ବୈଷ୍ଣବ ଆଦି ଯେତେ ॥
ବାନ୍ଧବ ଭ୍ରାତୃ ତାଙ୍କୁ ମଣି । ତୋଷଇ ଦେଇ ଅନ୍ନପାଣି ॥
ଚିନ୍ତାନ ଥାଇ ତାର ମନ । ପ୍ରଭୁ ପ୍ରେମରେ ସେ ମଗନ ॥
ଏମନ୍ତେ ଗଲା ଦିନ କେତେ । ତା କୀର୍ତ୍ତି ଶୁଭିଲା ଜଗତେ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ରଘୁଅରକ୍ଷିତର ଜୀବନ ॥
ଦରିଦ୍ର ହେଲେ କସ ହେବ । ଦୁର୍ଲ୍ଲଭ ଅଟେ ତାର ଭାବ ॥
ଭିକ୍ଷା ସେ ମାଗିଣ ଜୀଉଛି । ଯେ ଯାହା ମାଗିଲେ ଦେଉଛି ॥
ଆବର ପ୍ରଭୁ ନାମ ଯେତେ । ଗାୟନ କରୁଥାଇ ନିତ୍ୟେ ॥
କହେ ବିନୟ ଧୀରବାଣୀ । ଧନ୍ୟ ଅଟନ୍ତ ଦେବ ପ୍ରାଣୀ ॥
ଏମନ୍ତେ ବୋଲନ୍ତି ସମସ୍ତେ । ପ୍ରଶଂସା କରି ଯେଝାମତେ ॥
ଏମନ୍ତ ସମୟରେ ପୁଣ । ବୈଷ୍ଣବ ସାତ ପାଞ୍ଚଜଣ ॥
ଅପୂର୍ବ ଅଟନ୍ତି ସେମାନେ । ଆଇଲେ କ୍ଷେତ୍ର ଦରଶନେ ॥
ପ୍ରବେଶ ହେଲେ ନୀଳଗିରି । ପ୍ରଭୁଙ୍କ ଦରଶନ ସାରି ॥
ବୁଲିଲେ ଭୋଜନ ନିମନ୍ତେ । ତହୁଁ ବୋଇଲେ ଜଣକେତେ ॥
ରଘୁଅରକ୍ଷିତଙ୍କ ଭୁବନେ । ବିଜୟ କର ସାଧୁମାନେ ॥
ତାହାର ଅଛି ଭକ୍ତିଭାବ । ଗଲେ ଭୋଜନ ନିଶ୍ଚେ ଦେବ ॥
ଶୁଣି ଚଳିଲେ ସାଧୁ ବୃନ୍ଦ । ମନରେ ହୋଇଣ ଆନନ୍ଦ ॥
ଭକତ ଦ୍ୱାରେ ବିଜେକଲେ । ତା ନାମ ଧରିଣ ଡାକିଲେ ॥
ଅତିଥି ଡାକ ଶୁଣି କର୍ଣ୍ଣେ । ଅତି ଆନନ୍ଦ ହୋଇ ମନେ ॥
ମନ୍ଦିରୁ ବାହାର ହୋଇଲା । ସାଧୁଙ୍କୁ ଦରଶନ କଲା ॥
ବୋଇଲା ଆଜ୍ଞା କର ମୋତେ । କି କାର୍ଯ୍ୟ କରିବି ତୁରିତେ ॥
ଶୁଣି କହିଲେ ସାଧୁ ମାନେ । ଆମ୍ଭଙ୍କୁ ତୋଷ ଅନ୍ନ ଦାନେ ॥

ଅଇଲୁ ଜାଗି ଶୁଣି ଚୋର । ଏଥିରେ ବିଳମ୍ବ ନ କର ॥
ସନ୍ତୋଷ କଲେ ସାଧୁ ଗଣ । ପାଇବୁ ପରମ କାରଣ ॥
ତା ଶୁଣି ଇନ୍ଦୁଅରହତ । ଈଶ୍ୱର କଲ ହୃତଗତ ॥
କି ବୁଦ୍ଧି କରିବି ଏଥର । ଘରେତ କିଛି ନାହିଁ ମୋର ॥
କେବଳ ପ୍ରଭୁ ଚକ୍ରଧର । ସଙ୍କଟ ଫେଡ଼ିବେ ମୋହର ॥
ଏମନ୍ତ ବୋଲି ଅତିଥିଙ୍କୁ । ବସାଇ ଗଲେ ମନ୍ଦିରକୁ ॥
ପତ୍ନୀକୁ ବୋଲେ ସଖି ଶୁଣ । ଅତିଥି ପାଞ୍ଚ ସାତଜଣ ॥
ଦ୍ୱାରେ ପ୍ରବେଶ ହେଲେ ଆସି । ଭୋଜନ ମାଗୁଛନ୍ତି ବସି ॥
ଏଥିକୁ କି ବୁଦ୍ଧି କରିବା । କେମନ୍ତେ କରି ତରିଚିବା ॥
ଘରେତ କିଛି ନାହିଁ ଧନ । କହ ଗୋ ଯୁବତୀ ରତନ ॥
ତା ଶୁଣି ବୋଲଇ ସୁନ୍ଦରୀ । ଶୁଣହେ ପ୍ରାଣ ଅଧିକାରୀ ॥
ଦେବା ବୁଆଇବାକୁ ହରି । କରତା ଅଟନ୍ତି ସବୁରି ॥
ଏଥିକୁ ଶୋଚନା ନ କର । ମୋ ଅଙ୍ଗେ ଯେତେ ଅଳଙ୍କାର ॥
ଅଛଇ ବେଗେ ନେଇଯାଅ । ସାଧୁଙ୍କ ଘରେ ବନ୍ଧାଦିଅ ॥
କିଛିହିଁ ଧନ ନେଇ ଆସ । ସାଧୁ ଚରିତ କର ତୋଷ ॥
ତାହା ଶୁଣିଣ ନିଜ ପତି । ବୋଲେ ବସାଇଣ ଯୁବତୀ ॥
ବୋଇଲା ଧନ୍ୟ ଚନ୍ଦ୍ରମୁହିଁ । ମୋର ସୁଗତିଦାୟୀ ତୁହି ॥
ଏବେ ତୁ ଶୁଣ ମୋ ଉତ୍ତର । ହୃଦୟ ମଧ୍ୟରେ ବିଚାର ॥
ନେଲେ ମୁଁ ଏତେ ଅଳଙ୍କାର । ଲୋକେ ଦେଖିଲେ ଅସୁନ୍ଦର ॥
ବୋଲିବେ ଇନ୍ଦ୍ରଅରହିତ । କାହୁଁ ଆଣିଲା ଏତେ ବିତ୍ତ ॥
ଭିକ୍ଷା ମାଗିବା ଲୋକ ଏହି । କାହୁଁ ବା ଆଣିଲା ଚୋରାଇ ॥
ଏମନ୍ତ ବୋଲି ମନେ ମନ । କରିବେ ସିନା ଅନୁମାନ ॥
ଏବେ ତୁ ଅଳଙ୍କାର ନେଇ । ବହନ ଯାଅରେ ତରୁଣୀ ॥
ସାଧୁର ଘରେ ବନ୍ଧାଦେଇ । ପଞ୍ଚାଶ ମୁଦ୍ରା ଆଣ ତୁହି ॥
ଅଠ ଦିନକୁ କଣ୍ଟ କର । ମିଶାଇ ନେଲ କଳନ୍ତର ॥
ଶୁଝିଣ ନେବା ମଳ ତାର । ଆଣିବା ଆମ୍ଭ ଅଳଙ୍କାର ॥

ସ୍ୱାମୀ ବଚନୁ ଏହା ଶୁଣି । ସେ ପତିବ୍ରତା ଶିରୋମଣି ॥
ଚଳିଲା ଗଲା ଆନନ୍ଦରେ । ପ୍ରବେଶ ସାଧୁର ମନ୍ଦରେ ॥
ଅଙ୍ଗ ଭୂଷଣ ମାନ ଫେଇ । ଥୋଇଲା ଧନୀ ଆଗେ ନେଇ ॥
ବୋଇଲା ଶୁଣ ମହାଜନ । ରଖ ଏ ଅଳଙ୍କାର ମାନ ॥
ଶତେ ସୁନଆ ଦେଇଥିବ । ଲାଭ ମିଶାଇ ମୂଳ ନେବ ॥
ଅନେକ ହେବ ଉପକାର । ଧର୍ମେ ଲଗିବ ଧନ ତୋର ॥
ସୁଧା ସମାନ ଧୀରବାଣୀ । ଧନୀ ସୁନ୍ଦରୀ ମୁଖୁ ଶୁଣି ॥
ବସ୍ତ୍ରର କଳା ତାର ଚକ୍ଷେ । ଏକେକ୍ଷେ ଲାଭ ହେବେ ମୋତେ ॥
ତାର ସୁନ୍ଦର ରୂପ ଚିନ୍ତ । ବୋଲଇ ଶୁଣରେ ଯୁବତୀ ॥
ବନ୍ଧାରେ ପ୍ରୟୋଜନ ନାହିଁ । ଯାହା କହୁଛୁ ଶୁଣ ତୁହି ॥
ଯେବେ ତୁ ହେବୁ ରତିଦାନ । ଗଣି ଦେଉଛୁ ନଅ ଧନ ॥
ତାହା ଶୁଣିଣ ନାରୀମଣି । ବଜ୍ର ପଡ଼ିଲା ପ୍ରାୟେ ମଣି ॥
ପୁଣି ସେ ଶାନ୍ତ କରି ମନ । ବୋଲଇ ଶୁଣ ମହାଜନ ॥
ବନ୍ଦେକ ମାତ୍ର ତୁଅ ସ୍ଥିର । କହି ଚଳିଲା ନାରୀବର ॥
କାନ୍ତ ଆଗରେ ଏ ଚରିତ । ବୁଝାଇ କହିଲା ସମସ୍ତ ॥
ଏ ହୀନ ଲାଭର କାରେଣି । ତୁମ୍ଭେ ମୋହର ପ୍ରାଣମଣି ॥
ଏଥକୁ କ ବସ୍ତ୍ରର କହ । ଶୁଣି ସନ୍ତୋଷ ହେଉ ଦେହ ॥
ତା ଶୁଣି ରଦ୍ରୁ ଅରକ୍ଷିତ । ବୋଇଲା ଶୁଣରେ ସଙ୍ଗାତ ॥
ସାଧୁମାନଙ୍କ ଉପକାରେ । ଲଗିବ ଆମ୍ଭରେ ଭାଗ୍ୟରେ ॥
ଯାହା ବୋଇଲା ମହାଜନ । ସମ୍ମତ କରି ଆଣ ଧନ ॥
ତାହା ଶୁଣିଣ ମହାସତୀ । ବୋଲଇ ଶୁଣ ପ୍ରାଣପତି ॥
ତୁମ୍ଭର ଆଜ୍ଞା ପାଇ ମୁହିଁ । ଗଲେଟି ମୋର ଦୋଷ ନାହିଁ ॥
ଏମନ୍ତ କହି ଚଳିଗଲା । ସାଧୁର ମନ୍ଦିରେ ମିଳିଲା ॥
ବୋଇଲା ଶୁଣ ହେ ସାଧୁତ । ଆମ୍ଭେ ତା କଲୁ ସନମତ ॥
ଝଳମ୍ଭ ନକରିଣ ଧନ । ଦଅନ୍ତୁ ଯିବଇଁ ବହନ ॥
ରଜନୀ ପହରକଠାରେ । ତୁମ୍ଭେ ଆସିବ ଆମ୍ଭ ପୁରେ ॥

ବାଞ୍ଛା ସମ୍ପୂର୍ଣ୍ଣ ରତି ରଙ୍ଗ । ଭୋଗ କରିବ ମୋର ସଙ୍ଗ ॥
ଶୁଣି ଆନନ୍ଦ ମହାଜନ । ନଗଦ ଗଣିଦେଲା ଧନ ॥
ଧରି ସୁନ୍ଦରୀ ଚାଲିଗଲା । ସ୍ୱାମୀର ହସ୍ତେ ନେଇ ଦେଲା ॥
ସେ ଧନ ପାଇ ଆନନ୍ଦିତ । ହୋଇଣ ରଘୁ ଅରହିତ ॥
ଚାଲିଣ ଗଲା ଅତି ବେଗେ । ମିଳିଲା ସିଂହଦ୍ୱାର ଲାଗେ ॥
ଶ୍ରେଷ୍ଠସେବକ ଡାକ ଆଣି । ବରଗି ଦେଲା ତାକୁ 'ଗଣି ॥
ବୋଇଲା ଶୁଣ ହେ ସୁଆର । ପ୍ରଭୁ ମଣୋହି ବେଗେ କର ॥
ହିସି ଖେଚେଡି ଶାଳିଅନ୍ନ । ନାନାଦି ପ୍ରକାର ବ୍ୟଞ୍ଜନ ॥
ନାଡ଼ୁ ଯେ ସରପୁଳି ଗଜା । ଅମାଲୁ ଆଦି ଦ୍ରବ୍ୟ ଖଜା ॥
କାନ୍ତି କାକରା ଆଦି ପିଠା । ହେ ସରପଣା ଦଧି ମିଠା ॥
ପ୍ରଥମ ଧୂପେ ଏତେ ହେବ । ସାଧୁଙ୍କ ନିମନ୍ତେ ଆସିବ ॥
ଏଥିରେ ବିଳମ୍ବ ନକର । କହି ଚଳିଲେ ନିଜପୁର ॥
ଏମନ୍ତେ କେତେବେଳ ଗଲା । ଭୋଷାଇ ତିଆରି ହୋଇଲା ॥
ଭୋଗ ମଣ୍ଡପେ ଭୋଗକରି । ପ୍ରଭୁଙ୍କୁ ନଇବେଦ୍ୟ ସାରି ॥
ମହାପ୍ରସାଦ ବହି ନେଲେ । ରଘୁ ଅର୍ଚ୍ଚିତ ପାଶେ ଦେଲେ ॥
ଦେଖି ଭକତ ଅତିତୋଷେ । ମିଳିଲା ଅତିଥିଙ୍କ ପାଶେ ॥
ବୈଷ୍ଣବ ପଙ୍ଗତ ବସାଇ । ପ୍ରସାଦ ପରଷିଲେ ନେଇ ॥
ଯାହାର ଯେଉଁ ଦ୍ରବ୍ୟମାନ । ସନ୍ତୋଷେ କଲେ ତା ଭୋଜନ ॥
ଭୋଜନ ସାରି ସାଧୁଗଣ । ବାସକୁ କରିଣ କଲ୍ୟାଣ ॥
ଚାଲିଣ ଗଲେ ଯେଝାମତେ । ପ୍ରଶଂସା କରିଣ ସମସ୍ତେ ॥
ଏଥି ଉତ୍ତାରୁ ଧନ ଶେଷ । ରଘୁ ଅର୍ଚ୍ଚିତ ପତ୍ନୀପାଶ ॥
କହଇ ଶୁଣ ପ୍ରାଣସଖୀ । ତୋତେ ଯେ ଧନ ଅଛି ଦେଇ ॥
ସେ ବଣିକେ କଲେ ଆତ୍ମପୂର । କରିବୁ ଅତ୍ୟନ୍ତ ଆଦର ॥
ତାଙ୍କୁ ମୋଠାରୁ ଶତଗୁଣେ । ସେବା କରିବୁ ତା ଚରଣେ ॥
ଯେଉଁ ପ୍ରକାରେ ମନ ତାର । ସେହି ପ୍ରକାରେ ସେବାକର ॥
ଯେବେ ମୋଠାରେ ଅଛି ମନ । ବୁଝିବୁ ସୁବର୍ଣ୍ଣ ରତନ ॥

ଏମନ୍ତ କହି ଚଳିଗଲା । ଅନ୍ତର ହୋଇଣ ରହିଲା ॥
ପକ୍ଷୀ ଅନେକ କୋଷ ହୋଇ । କନକ ସମ ଯାଇ ଦେଖି ॥
ଅଗ୍ରେ ଜାଳିଣ ଘପାବଳୀ । ପଲଙ୍କେ ବସି ଅଛୁ ବାଳୀ ॥
ଏମନ୍ତ ସମୟରେ ତହିଁ । ସେ ଧର୍ମ କାମାତୁର ହୋଇ ॥
ମିଳିଲେ ତାହାଙ୍କର ଦ୍ୱାରେ । ଭୃତ୍ୟ ଶୁଣାଇ ଜାଣି ଧୀରେ ॥
ତାହା ଶୁଣିଣ ଶୁଭ୍ରକେଶୀ । ଉଠେ ଚନ୍ଦ୍ରଳ ବ୍ରହ୍ମବଶି ॥
ବୋଇଲା ଶୁଣ ଧର୍ମଶିଷ୍ୟ । ଜର୍ଭିସ୍ତ ହୋଇ ବେଗେ ଆସ ॥
ଶନ୍ୟ ମନ୍ଦରେ ମୁହିଁ ଏକା । କର୍ମା ତୁମ୍ଭର ମନେ ଶଙ୍କା ॥
ଆମ୍ଭ ଭରସା ନରବର । ଦ୍ରୌପଦୀ ଲଜ୍ଜା ନାଶକାସ୍ଥି ॥
ଏମନ୍ତ ପ୍ରଭୁ ଥାଉଁ ଥାଉଁ । ଉଠେ କାହାକୁ ଭୟ ଆଉ ॥
ପଲଙ୍କ ଉପରକୁ ଧୀରେ । ଗୁହାଁନ୍ତେ ପ୍ରେମ ନୟନରେ ॥
ଦେଖିଲେ ବସିଛୁ ସୁନ୍ଦରୀ । ଅତି ଆନନ୍ଦ ମନକରି ॥
ତାହାର ପଟେ ଦେବବର । ସଖୀକ କୋଳାଗ୍ରତ କରି ॥
ଆକୋଳି ବସିଣ ଅଛନ୍ତି । ଲକ୍ଷ୍ମୀଙ୍କି ଯେନ ଯଦୁପତି ॥
କିବା ପାର୍ବତୀ କୋଳେ ଧରି । ବିଜୟ ପ୍ରଭୁ ଶୂଳଧାରୀ ॥
କି ଇନ୍ଦ୍ର କୋଳେ ଇନ୍ଦ୍ରାଣୀ । ଚନ୍ଦ୍ରର କୋଳେ କି ରୋହିଣୀ ॥
କିବା ସାରଦା ଯେଣ ପତି । ବିଜୟ କରିଣ ଅଛନ୍ତି ॥
ତେସନ ପ୍ରଭୁ ଭବଗ୍ରାହୀ । ସଖୀକି କୋଳରେ ବସାଇ ॥
ବିଜୟ ପ୍ରଭୁ ଆଦ୍ୟମୂଳ । ଧର୍ମ ଦେଖିଣ ହେଲା ଭୋଳ ॥
ଶ୍ରୀହର ଅଭୟ ପଞ୍ଜରେ । ଭକ୍ତ୍ୟନାରୀକି କୋଳେ କଲେ ॥
ତା ଦେଖି ଧର୍ମ ପାଞ୍ଚେ ମନ । ଏତ ଜ୍ୱଳନ୍ତା ହୁତାଶନ ॥
ଡେଇଁବା କରୁଥିଲା ମନ । କେମନ୍ତେ ଧରିବ ପବନ ॥
ନିଜ ଜନମଠାରେ ଯେବେହେଁ । ମୂଢ଼ ବୁଦ୍ଧି ଇଚ୍ଛେ ମନେ ॥
ମୁଁ ମୂଢ଼ ତେବେହେଁ ମନ୍ଦକଲି । ଫଣୀ ଫଣାରେ ହାତ ଦେଲି ॥
ଏମନ୍ତ ବୋଲି ଅବହେଳେ । ପଡ଼ିଲା ସଖୀ ପାଦତଳେ ॥
ତାହା ଦେଖିଣ ମହାସଖୀ । ହୃଦପଦ୍ମରେ କଲା ସାକ୍ଷୀ ॥

ବୋଇଲା ଏ କି ବିପରୀତ । ସୁଭକ୍ତ ଗୃହ ବନ୍ଧୁବତ ॥
ଭଣିବା ଉଚିତ ନୁହଇ । ଉଠ ସାଧୁଙ୍କ ବେଗ ହୋଇ ॥
ଅବଳା ମୁର୍ଖୀ ଏହା ଶୁଣି । ଉଠି କପାଳେ ଦେଲା ପାଣି ॥
ବୋଲେ ହେସନ୍ତ ନମେ ତୋତେ । ଶରଣ ଗଲି ରଖ ମୋତେ ॥
ଯେତେ ଅପ୍ରାଧ୍ କଲି ତୋତେ । ଚିତ୍ତେ ନ ଧର କଦ ଚିତ୍ତେ ॥
ପୁତ୍ର ଯେ ମାତାଗର୍ଭେ ଥାଇ । ସେ ଯେତେ ପାଦ ପ୍ରହାରଇ ॥
ମାତା କି ଘେନେ ତାର ଦୋଷ । ସେରୂପେ ମୂର୍ଖି ତୋର ଶିଷ୍ୟ ॥
ତୁମ୍ଭେ ଯେ ପୁଣ୍ୟସ୍ତ ରୀ ବୋଲି । ମୁଁ ମୂଢ଼ ଜାଣିତ ନଥିଲି ॥
ଏବେ ତୋ କୃପାଦୃଷ୍ଟି ଲାଗି । ମୁଁ ଯେ ହୋଇଲି ମୋକ୍ଷଭାଗୀ ॥
ଏମନ୍ତ ବୋଲିଣ ଲେଉଟି । ସନ୍ତ ଚରଣ ତଳେ ଲୋଟି ॥
ଏଥିଅନ୍ତରୁ କଥା ଶୁଣ । ସେ ହରି ଭକତ ଲକ୍ଷଣ ॥
ଅନ୍ତର ହୋଇ ଯାଇଥିଲା । ତାହାର ମନେ ବିଚାରିଲା ॥
ଧର୍ମ ଯେ ଥିଲା ଧନଦେଇ । ସନ୍ତୋଷ ହେଲା କି ସେ ନାହିଁ ॥
ଏମନ୍ତ ବୋଲିଣ ସତ୍ୱର । ପ୍ରବେଶ ହେଲା ନିଜପୁର ॥
ଦେଖିଲା ନାରୀ ପାଦତଳେ । ଧର୍ମ ଶୋଇଛନ୍ତି ଭାବଭୋଳେ ॥
ଉଦୂଅର୍ଷିତ ବୋଲେ ତହିଁ । ଉଠ ସାଧିତ ବେଗ ହୋଇ ॥
ଯୁବତୀ ଗୋଟିକ ଚରଣେ । ପଡ଼ିଛ କେବଣ କାରଣେ ॥
ତା ଶୁଣି ଧର୍ମ ବେଗେ ଉଠ । ଉଦୂଅର୍ଷିତ ପାଦେ ଲୋଟି ॥
କହିଲା ସଜଳ ଦୃଷ୍ଟାଇ । ଦେଖ ହେ ପ୍ରଭୁ ଭାବଗ୍ରାହୀ ॥
ତୁମ୍ଭ ପତ୍ନୀକି କୋଳେ ଧରି । ପ୍ରଭୁ ଅଛନ୍ତି ଢେଜ କରି ॥
ତା ଶୁଣି ଆଚମ୍ବିତ ହେଲେ । ସମସ୍ତ ଅନାଇଣ ଦେଲେ ॥
କ୍ଷଣେ ନ କ୍ଷଣେ ଭଗବାନ । ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ସେ ତିନିଜଣ ଭାବଭୋଳେ । ଏକି ଆଉକେ ଧରି କୋଳେ ॥
ପ୍ରଭୁ ମହିମା କହି ଭଲେ । ଆନନ୍ଦ ସାଗରେ ଭାସିଲେ ॥
ଏଥିଁ ଉତ୍ତରୁ ସେ ସାଧୁକ । ବିନୟ କହିଲା ବହୁତ ॥
ପୁଣି ଅନେକ ଧନ ଦେଲା । ମେଲାଣି ହୋଇଣ ଘରେ ଗଲା ॥

ସେ ପତି ପତ୍ନୀ ବେନଜନ । ଚିନ୍ତିଲେ ଶ୍ରୀହରି ଚରଣ ॥
ଆନନ୍ଦେ ବଞ୍ଚିଲେକ ଦିନ । ଭାଳେ ଲଭିଲେ ମୁକ୍ତିସ୍ଥାନ ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳା ବିଳାସ ॥
ସେ ଦାରୁବ୍ରହ୍ମଙ୍କ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ଏ ଦାର୍ଢ୍ୟଭକ୍ତିରସାମୃତ । ସୁଜନେ ପିଅ ଶ୍ରୁତି ପଥ ॥
ମୁକତି ହେବ ଦିନୁ ଦିନ । ନ ହେବ ଯମ ଦରଶନ ॥
ସୁଖେ ଅମର ପଦ ପାଇ । ବସିବ ଦେବଲୋକେ ଯାଇ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ
ରଘୁଅରକ୍ଷିତ ମୋକ୍ଷଣେ ନାମ
ନବମୋଽଧ୍ୟାୟଃ ।

—*—

## ଦଶମ ଅଧ୍ୟାୟ

### ମଳାମ୍ବର ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ଶୁଣ ଚୈତନ୍ୟ ମନତୋଷ । କହଇ ମନରାଜା ପାଶେ ॥
ହେ ମନ ସାବଧାନେ ଶୁଣ । କହିବା ଭକତ ଲକ୍ଷଣ ॥
ଜଣର ଖଣ୍ଡେ ତାର ଘର । ବ୍ରାହ୍ମଣ ନାମ ମଳାମ୍ବର ॥
କୁଟୁମ୍ବ ପୋଷଣ ନିମନ୍ତେ । ଯାଚକା କରେ ନାନାମତେ ॥
ଗୃହୀ ଗୃହରେ ରହିଥାଇ । ଦୁଃଖକୁ ଶୋଚନା ନ ଥାଇ ॥
ବିଷୟାଜାଲ ଏ ସଂସାର । ସକଳ ଜୀବେ ବନ୍ଧା ତା'ର ॥
ଶ୍ରୀହରି କଥାମୃତ ସାର । ଶ୍ରୁତି ପିବଇ ନିତ୍ୟେ ଯାର ॥
ସକଳ ଶାସ୍ତ୍ର ସୁପଣ୍ଡିତା । ଜାଣଇ ପାପ ପୁଣ୍ୟକଥା ॥
ଜିତ ଇନ୍ଦ୍ରିୟ ଧୀର ବୁଦ୍ଧି । ନିର୍ଲୋଭ ଶାନ୍ତ ଆତ୍ମା ଶୁଦ୍ଧି ॥
ନିଷ୍କ୍ରୋଧ ନିର୍ମୋହ ନିର୍ଭୟ । ପଢ଼ଇ ସଦାନନ୍ଦ ମୟ ॥
କେବଳ ଗୋବିନ୍ଦ ଭଜନ । କରି ବଞ୍ଚଇ ସବ ଦିନ ॥
ଏମନ୍ତେ କେତେଦିନ ଗଲା । ଦିନେ ତା ମନେ ବିଚାରିଲା ॥

ଯେତେ ଏ ପୁତ୍ର ଦାରାଧନ । ଏ ସବୁ ମାୟାର ବନ୍ଧନ ॥
ଏହାଙ୍କ ସଙ୍ଗେ ସଙ୍ଗ ହୋଇ । ବ୍ୟର୍ଥ ଗଲା ମୋର ଦେହି ॥
ଯେ ପ୍ରଭୁ ଜଗତ ଈଶ୍ୱର । କମଳା ଦେବୀଙ୍କର ବର ॥
ଅଶେଷ ଜୀବର କରତା । ଭକତ ମୁକତିର ଦାତା ॥
ସେ ପ୍ରଭୁ ବିଜେ ନୀଳଗିରି । କମ୍ବୁ ରଥାଙ୍ଗ କରେ ଧରି ॥
ପ୍ରବେଶ ହେଲେ ତାଙ୍କ ପାଶେ । ଅଶେଷ ଜନ୍ମ ପାପ ନାଶେ ॥
ସେ ଦାରୁବ୍ରହ୍ମ ଦରଶନ । ନ କଲା ଧିକ ମୋ ଜୀବନ ॥
ମିଥ୍ୟା ସଂସାର ଦାରା ଧନ । ବୈରାଗ୍ୟ ଉପୁଜିଲା ମନ ॥
ସଜ ହୋଇଲା ସେ ଭକତେ । କ୍ଷେତ୍ରକୁ ଯିବାର ନିମନ୍ତେ ॥
ପଥକୁ ଧଇଲା ସଙ୍ଗ.ଳ । କନ୍ଧରେ ପକାଇ ଜାଉଁଳ ॥
ଛାଡ଼ି ଚଳିଲା ଭବଗ୍ରାହୀ । ଆନନ୍ଦେ ଗଲା ପଥ ବାହି ॥
ମନ ନିବେଶି ନୀଳାଚଳେ । ଧୀରେ ଚଳଇ ସ୍ୱବସ୍ୱେଳେ ॥
ମାତା ଅନ୍ତରେ ପୁତ୍ର ଯେହ୍ନେ । ମାତା ଲୋଡ଼ଇ ତାର ମନେ ॥
ସେହି ପ୍ରକାରେ ତାର ମନ । ଚିନ୍ତଇ ସଦା ଭଗବାନ ॥
ପ୍ରଭୁଙ୍କ ଗୁଣ ଗୁଣି ଚଳେ । ଚଳଣ ଯାଏ ରାଜପଥେ ॥
କେତେକ ଦିନର ଉତ୍ତାରେ । ମିଳିଲା ଯାଇଁ ଗଙ୍ଗାତୀରେ ॥
ଘୋର ବନସ୍ତ ପଞ୍ଚକୋଶ । ତା ମଧ୍ୟେ ହୋଇଲା ପ୍ରବେଶ ॥
ଏକା ଗମଇ ନାହିଁ ଶ୍ରାନ୍ତ । ଚିନ୍ତଣ ଦାରୁବ୍ରହ୍ମମୂର୍ତ୍ତି ॥
ସେ ବନ ଅନ୍ତେ ଗଙ୍ଗାତଟେ । ମିଳିଲା ଅତି ମନ ହୃଷ୍ଟେ ॥
ଦେଖିଲା ପୂରିଅଛି ଜଳ । ଦିଶଇ ନାହିଁ ଥଳକୂଳ ॥
ଏକେତ ବରଷା ସମୟ । ଦେଖି ହୃଦରେ କଲା ଭୟ ॥
କେମନ୍ତେ ଗଙ୍ଗା ପାରିହେବ । ତରଇ ବିନା କି ତରିବ ॥
ଜନ ଶବଦ ଏଥେ ନାହିଁ । କାହାକୁ ପଚାରିବ ମୁହିଁ ॥
ନାବ ଅଛଇ କେଉଁପାଶେ । ବୋଲି ବୁଲିଲା ଦଶଦିଶେ ॥
ଏକ ତରଇ ଖଣ୍ଡ ଦୂରେ । ନାବ ପକାଇ ମୀନ ମାରେ ॥
ଦେଖି ଉଲସି ନୀଳାମ୍ବର । ଡାକ ଛାଡ଼ିଲା ଉଚ୍ଚସ୍ୱର । ॥

ତସ୍କର ଘାଇ ନାବ ଆଣ । ଏ ଜନ୍ତୁଁ କର ପରିତ୍ରାଣ ॥
କେଳ ଯେ ହେଉଛୁ ଉତ୍ତର । ଘୋର ଗହନ ନଦୀଘାଟର ॥
ଏଠାରେ ଘର ଗ୍ରାମ ନାହିଁ । ନଦୀ ତରିଲେ ଯିବ ମୁହିଁ ॥
କେଉଁଠୋ ସାହା କେହି ନାହିଁ । ଅନାଥ ହୋଇଣ ଅଛଇ ॥
ମୋତେ ତୁ କଲେ ଏଥୁ ପାର । ଅନେକ ହେବ ଉପକାର ॥
ତା ଶୁଣି ତସ୍କର ହରଷ । ନାବ ବାହିଲା ତାର ପାଶ ॥
ଦ୍ବିରଦଗଲୁ ଦେଲା ଦୃଷ୍ଟି । ଜନଗହନ କନ୍ତୁ ନାହିଁ ॥
ବସ୍ତ୍ର କଲା ତାର ହସ୍ତେ । ନଇବ ଭେଟାଇଲା ମୋତେ ॥
ଏହି ପଥିକର ଯାଉଁଳ । ମୋର ହୋଇବ ସଙ୍ଗାନ ॥
ଧନ ରତନ ଥିବ ଯେତେ । ଖାଇ ବଞ୍ଚିବ ଦିନାକେତେ ॥
ବିଳମ୍ବ ନ କରିଣ ଏବେ । ଏହାକୁ ବସାଇବି ନାବେ ॥
ବିପତେ ନାବ ବାହିଦେବି । ଅଥଳ ଜଳେ ପେଲିଦେବି ॥
ଏମନ୍ତ ବିଚାରି ହୃଦରେ । ବୋଇଲା ଶୁଣ ବିପ୍ରବରେ ॥
ଏ ଜନ୍ତୁଁ ପାରକଲେ ତୋତେ । କହ ତୁ କିସ ଦେବୁ ମୋତେ ॥
ତା ଶୁଣି ବୋଇଲା ଭକତ । ଯେ ଦୁଃଖ ମୂଲ୍ୟ ତୋ ଉଚିତ ॥
ଦେଇଣ ଯିବ ମୁହିଁ ତୋତେ । ବେଗେଣ ପାରିକର ମୋତେ ॥
ଶୁଣି ତସ୍କର ଶ୍ରଦ୍ଧାଭାବେ । ବିପ୍ରକୁ ବସାଇଲା ନାବେ ॥
ତେତକ୍ଷଣ ଆଉ ଯାଉ କୂଳ । ନାବ ବାହିଲା ଘୋର ଜଳ ॥
ଯେ ଦିଗେ ଥିଲ କୂଳ ନାହିଁ । ସେହି ଦିଗକୁ ନେଲା ବାହି ॥
ଦେଖିଣ ଶ୍ରୀହରି ଭକତ । ବୋଇଲା ଏ କି ଉପଘାତ ॥
କୂଳକୁ ତେଜି ନାବ ଏଣେ । ବାହୁ ତୁ କେଉଣ କାରଣେ ॥
କଷ୍ଟେ ତୁ ମୋର ନାଶ ଅର୍ଥେ । ବସ୍ତ୍ର କରୁଅଛୁ ହସ୍ତେ ॥
ଧର୍ମ ଲଙ୍ଘି ତୁ କରେ ଦୁଷ୍ଟ । ତା ଶୁଣି ଧୀବର ବୋଲଇ ॥
ହେ ବିପ୍ର କି ବିପ୍ରରୁ ମୋତେ । ତୋର ମରଣ ମୋର ହସ୍ତେ ॥
ନଇବ ନର୍କ କରିଥିଲା । ତେଣୁ ଏକାନ୍ତେ ଭେଟାଇଲା ॥
ତାହା ଶୁଣିଣ ସେ ଭକତ । ହୋଇଲା ଅତି ଭୟଗ୍ରସ୍ତ ॥

ଆରତେ ଚିନ୍ତେ ଚିନ୍ତାମଣି । ରଖ ରଥାଙ୍ଗ କମ୍ବୁପାଣି ।।
ରଖ ହେ କମଳାବଲ୍ଲଭ । ରଖ ହେ ନୀଳାଦ୍ରି ସୁଲଭ ।।
କାରଣ ଦୁଃଖ ନିବାରଣ । କାତରକୁ ରଖିବା ଶରଣ ।।
ପ୍ରଭୁ ନୋହିଲେ ସାହାପକ୍ଷ । ଏ ଦାସ ମଲଟି ପ୍ରତ୍ୟକ୍ଷ ।।
କଳମ୍ବେ ନାହିଁ ଅଉ କାର୍ଯ୍ୟ । ସତ୍ୱରେ ଆସି ଦେବରାଜ ।।
ଦେଇ କରୁଣା ନାବ ତୋର । ଚିପରି ସମୁଦ୍ର ଉଦ୍ଧର ।।
ତୁମ୍ଭର ଶ୍ରୀମୁଖ ବର୍ଣ୍ଣନ । ଉଣ୍ଟୁ ଯାଉ ମୋ ଜୀବନ ।।
ସକଳ ଜ୍ଞାଣ ମହାବାହୁ । ମୋ ପ୍ରୁର କି କହିବ ଆଉ ।।
ତୁମ୍ଭେତ ସର୍ବ ଅନ୍ତର୍ଯ୍ୟାମୀ । ରଖ ନ ରଖ ବେଦସ୍ୱାମୀ ।।
ମୋର ଆରତ ନିବାରଣେ । ବ୍ରହ୍ମାଣ୍ଡେ ନାହିଁ ଅନ୍ୟଜଣେ ।।
ଏମନ୍ତ ବୋଲି ସ୍ତୁତି ଭଣି । ଧ୍ୟାନେ ଚିନ୍ତିଲା ଚକ୍ରପାଣି ।।
ତାହା ଜାଣିଲେ ଭଗବାନ । ତେଜିଲେ ରତ୍ନ ସିଂହାସନ ।।
ଭୃତ୍ୟ ଭକ୍ଷଣ ଆଦ୍ୟମୂଳ । ଝଞ୍ଜସ୍ତୁ କଲେ ଗଙ୍ଗାକୂଳ ।।
ମାୟାରେ ଷଣ୍ଢ ରୂପଧର । ଚିତା ଚୈତନ୍ୟ ଶିରେ ଭର ।।
ଚମ୍ପକ ଢେଉକା ପାଖୁଡ଼ା । ମଉଳ ପଡ଼ିଅଛି ବେଢ଼ା ।।
କର୍ଣ୍ଣେ କୁଣ୍ଡଳ ଝଲକତ । କି ଅବା ଅରୁଣ ଉଦିତ ।।
କସ୍ତୁରୀ ଚିତା ଭାଲ ପଟେ । ସୁରତ୍ନମାଳା କଣ୍ଠତଟେ ।।
ହୃଦରେ ପଦକ ଝଲସଇ । ପୀତବସନ କଟୀମାଝେ ।।
ବାହେ ବ ହୁଟି ସାରଙ୍ଗେତ । କାଣ୍ଡ କୋଦଣ୍ଡ ଧର ହସ୍ତ ।।
ନବପଲ୍ଲବ ଡାଳେ ଡାଳେ । ଖଞ୍ଜିଣିଛନ୍ତି ଭୁଜମୂଳେ ।।
ଅତି ସୁନ୍ଦର ରତ୍ନଗଢ଼ । କନା ଶ୍ରୀମୁଖ ଯାକ ପଡ଼ ।।
ହେମକଙ୍କଣ ବେଣୁପାଣି । ଝୁନ ବସରେ ନାନା ମଣି ।।
ନୂତନ ନଖ ଦାଡ଼ି ସାଜେ । ଚନ୍ଦ୍ରହୁଁ ଶ୍ରୀମୁଖ ବସରେ ।।
ଷୋଡ଼ଶାବେଶ ନବଯୁବା । କୋଟିଏ ଚନ୍ଦ୍ର ଜିଣି ପ୍ରଭା ।।
ଝଟକ ବଦ୍ୟୁ ସ୍ଥାସ୍ତେ ଦଶି । ଗଗନୁ ପଡ଼ିଲେ କି ଖସି ।।
ଧାଇଁଅଛନ୍ତି ବେଗବର । ଯେସନେ ବହ୍ନମ କେଶରୀ ।।

ବାମ୍ଫୁକ ଅତ୍ୟନ୍ତ ଉଚ୍ଚାର । ଡାକିଲେ ରେରେକାର କରି ॥
ଛଗଇ ନାବ ଘେନି ଆସ । ଜୀବନେ ଯେବେ ଅଛୁ ଆଶ ॥
ଶୁଣି ଶ୍ରୀଧର ସିଂହରଡ଼ି । ଛଗଇ ମୁଣ୍ଡେ ବଜ୍ର ପଡ଼ି ॥
ଷଷ୍ଠବଟିକ ବେଳ ବୁଝି । ଧୀବର ମନେ ବିଚାରଇ ॥
ଏ ବିପ୍ରବଡ଼ ଭାଗ୍ୟବନ୍ତ । ଚେଣ୍ଡୁଟି ରଖିଲେ ଅନନ୍ତ ॥
କ୍ରୋଧରେ ଆସୁଛନ୍ତି ଧାଇଁ । ବିପ୍ରଙ୍କୁ ନେବେ ମୁକୁଳାଇ ॥
ମୁଁ ଏବେ କି ବୁଦ୍ଧି କରିବି । ବିପ୍ର ଜନ୍ମଲେ ନାଶ ଯିବି ॥
ଏହା ବିଚାରି ନାବ ଫେରି । ବାହିଲା ଧୀର ଧୀର କରି ॥
ନାବ ବାହିବା ହେଲା ଦେଖି । ତକ୍ଷଣେ ପ୍ରଭୁ ପଦ୍ମଆଖି ॥
ଧଇଲେ ମନଭେଦ ଶର । ବିନ୍ଧିଲେ ବ୍ରହ୍ମାଣ୍ଡ ଠାକୁର ॥
ଶବଦ କଠଣ ପ୍ରଚଣ୍ଡ । ନାବେ ବାଜିଲା ଯାଇ କାଣ୍ଡ ॥
ଲାଗି ରହିଲା ମୂନ ଗଳା । ଯେସନେ ଝୁଂଟକ ବଜୁଳ ॥
ଦେଖି ଛଗଇ ଥନ ଥନ । ନାବ ବାହିଲା ଘନ ଘନ ॥
ପ୍ରବେଶ ପ୍ରଭୁ ପାଶେ ଯାଇ । ନାବରୁ ପଡ଼ିଲା ଓହ୍ଲାଇ ॥
ବିପ୍ର ଛଗଇ ବେନିଜନ । ଭେଟିଲେ ଗୋବିନ୍ଦ ଚରଣ ॥
ଦେଖି ଶ୍ରୀଧର କୋପଭର । ଗଜିଲେ ଛଗଇ ଉପର ॥
ରେ ରେ ଧୀବର ବୁଦ୍ଧି ମୂଢ଼ । ଆଜୁଁ ଏ ଗର୍ବପଣ ଗୁଢ଼ ॥
ଆମ୍ଭେ ଏ ବନେ ଜଗିଥାଉଁ । ନ କହି କମା ନାବ ବାହୁ ॥
ଏକାକ୍ଷୀ ଲୋକେ ଘାଟିକରୁ । ରାଜାର ଟଣ୍ଡା ନାଶ କରୁ ॥
ଏବେ ଏପରି ବୁଦ୍ଧି ଭଲେ । ନାଶ ଯିବୁଟି ଜାଣ ଭଲେ ॥
ଏମନ୍ତ କହି କୋପମୂର୍ତ୍ତି । କଣ୍ଠେତେ କଲେ କୋପ ଶାନ୍ତି ॥
ଅନନ୍ତ ହସି ନାରାୟଣ । ବୋଇଲେ ଆହେ ବିପ୍ର ଶୁଣ ॥
ଏ ବନ ଜାଗିବା ନିମନ୍ତେ । ଶାଢ଼ୀ ଦେଇଛି ରାଜା ମୋତେ ॥
ଯେ ଅବା ଝଣ୍ଡପଣ କରେ । ପଥିକ ଜନ ଧନ ହରେ ॥
କି ଅବା ଧନ ବସ୍ତୁମାନ । ଛଡ଼ାଇ କରଇ ନିଧନ ॥
ତାହାଙ୍କୁ ଦେଖିବା ନିମନ୍ତେ । ଠଣା ମୁଁ ଜଗିଥାଇ ଏଥେ ॥

ଏକାନ୍ତେ ତାଙ୍କ ପ୍ରାଣ ହର । ପେଶଇ ଯମରାଜ୍ୟ ପୁରୀ ॥
ତୁମ୍ଭେ ଅଇଲ ସେହିପଥେ । ଥରେ ତ ନ କହିଲ ମୋତେ ॥
ତା ଶୁଣି ବୋଲଇ ବ୍ରାହ୍ମଣ । ମୋହର ନା ଜାଣିବା ପଣ ॥
ଏଥେ ତୋ ଠଣା ଅଛୁ ବୋଲି । ଏହା ମୁଁ ଜାଣିତ ନ ଥିଲି ॥
ତୁମ୍ଭଙ୍କୁ ନ ଦେଖିଲି ଯେଣୁ । ନ କହି ଅଇଲି ମୁଁ ତେଣୁ ॥
ଏମନ୍ତ ବୋଲି ବିପ୍ର ତହିଁ । ଚହ୍ନିଲି ନାହିଁ ଗୁରୁଗୁମ୍ଫି ॥
ଯା ମାୟା କେବେ ଅଗୋଚର । କାହୁଁ ଜାଣିବ ନର ଛାର ॥
ଯୋଗୀର ଧ୍ୟାନକୁ ଯେ ଦୂର । ମୁନିମାନଙ୍କୁ ଅଗୋଚର ॥
ଏତେ ମନୁଷ୍ୟ ହୀନବୁଦ୍ଧି । କାହୁଁ ଚହ୍ନିବ ବିପ୍ରାନିଧି ॥
ମନୁଷ୍ୟ ପ୍ରାପ୍ତ ତାଙ୍କୁ ମଣି । ବୋଇଲା ଶୁଣ ସାଇମଣି ॥
ମୋତେ କରୁଣା କେତେ କର । ମୁଁ ଏବେ ଯିବି କ୍ଷେତ୍ରବର ॥
ମୋ ପ୍ରାଣନାଥ ଚକ୍ରଧର । ତାଙ୍କୁ ଦର୍ଶନେ ଇଚ୍ଛା ମୋର ॥
ଏବେ ମୁଁ ଏଥି ଗଙ୍ଗାନଦୀ । ତରିବି ଯେଉଁ କହ ବୁଦ୍ଧି ॥
ତା ଶୁଣି ପ୍ରଭୁ ନାରାୟଣ । ବୋଲନ୍ତି ତରିବରେ ଶୁଣ ॥
ବିପ୍ରଙ୍କୁ ନାବରେ ବସାଇ । ଏଥି ସଲଖେ ନଅ ବାହି ॥
ମୋ ଦେଖୁଁ ଦେଖୁଁ ପାରିକର । ଜୀବନେ ଆଶା ଥିଲେ ତୋର ॥
ଶୁଣି ତରାଇ କମ୍ପମାନ । ମୁଖରୁ ନସ୍ଫୁରେ ବଚନ ॥
ଅନେକ କଷ୍ଟବତ କଲା । ବିପ୍ରଙ୍କୁ ନାବେ ବସାଇଲା ॥
ଶୁଣ ସୁଜନେ ହେତୁ ଦେଇ । ସାଧୁଙ୍କୁ କଣ୍ଟାଳ ତରାଇ ॥
ଦେଖିଲ ପ୍ରଭୁ ଆନନ୍ଦେ କଲ । ସେବାରେ କେତେ ହୁଏ ଫଳ ॥
ବିପ୍ରହିଁ ନାବରେ ବସିଲ । ଧୀବରେ କୁଣ୍ଠ ନ କହିଲ ॥
ଯେଣୁ ସେ ଅଟେ ସାଧୁ ଚେତା । ନ ଶହେ ପର ନାଶ କଥା ॥
ଆନନ୍ଦେ ହରି ନାମଗାଇ । ତରାଇ ନାବ ନେଲା ବାହି ॥
ଦାରୁବ୍ରହ୍ମଙ୍କୁ ବନ୍ଦାକରି । ସୁଖେ ତରିଲେ ଗଙ୍ଗା ବାରି ॥
ନାବରୁ ଉଠି ବିପ୍ରଗଲେ । ଶ୍ରୀହରି ଅନ୍ତର୍ଦ୍ଧାନ ହେଲେ ॥
ତରାଇ ଗଲା ନିଜପୁର । ଏଥି ଉତ୍ତାରୁ ବିପ୍ରବର ॥

କେତେହେଁ ଦିନେ ପଥ ବାହି । ମିଳିଲେ କ୍ଷେତ୍ରବରେ ଯାଇ ॥
ଏମନ୍ତ ସମୟରେ ଶୁଣ । ଯେ ପଞ୍ଚକୋଶର ମଧ୍ୟେଣ ॥
ଯାତ୍ରା ହୋଇଛି ନୀଳାଚଳେ । ଶ୍ରୀନନ୍ଦୀଘୋଷରଥ ଚଳେ ॥
ତହିଁ ବିଜୟ ବେଦବତ୍ର । ଶ୍ରୀଭୁଜେ ଶଙ୍ଖ ଚକ୍ରଧର ॥
ତାଳଧ୍ୱଜରେ ବେଦବାଜ । ରୋହିଣୀଦେବୀଙ୍କ ଅଗ୍ରଜ ॥
ବିଜେ ଲଙ୍ଗଳ ହଳଧାରୀ । ପ୍ରଳମ୍ବା ଗଜର କେଶରୀ ॥
ବିଜୟୀରଥେ ଦେବୀ ବିଜେ । କି ହେମ ପ୍ରତିମା ବିରାଜେ ॥
ବର୍ଣ୍ଣି ଛାପନ୍ତିମାନେ ରଥେ । ଧରିଣ ଯୋଡ଼ ବେତ ହସ୍ତେ ॥
ତ କନ୍ତୁ ମହିମା ମହିମା । ଭୃତ୍ୟଙ୍କ ଗୁହାରି ଶୁଣିମା ॥
ସେବକେ ଘଣ୍ଟାନାଦ କରି । ଶବଦେ କମ୍ପେ ବସୁନ୍ଧରୀ ॥
ବଜାଇ ଶ୍ରୀବାର କାହାଳି । ଭମ୍ବୁ ଶବଦ ହୁଳହୁଳି ॥
ଲୁଷି ବଇଁଶୀ ବାଦ୍ୟ ଯେତେ । ଝମ୍ପକ ନିଶାଣ ସହିତେ ॥
ସେବକ ବୃନ୍ଦ ହୋଇ ମେଳି । ନାଚନ୍ତି ଦେଇ କରତାଳି ॥
ମୃଦଙ୍ଗ ମର୍ଦ୍ଦଳେ କେ ଧରି । ବଜାଇ ନୃତ୍ୟଗୀତ କରି ॥
କେ ପ୍ରଭୁମାନଙ୍କୁ ଅନାଇ । ଭାବରେ ଗଡ଼ି ଯାଉଥାଇ ॥
କେବା କପାଳେ ଦେଇ କର । ଡାକଇ ଜୟ ଜୟକାର ॥
ସବୁରି ମୁଖେ ନାମ ଧ୍ୱନି । କରନ୍ତେ କମ୍ପାଇ ମେଦିନୀ ॥
କାଳ ପିଠିଆ ଅପ୍ରମିତ । ରଥଦଉଡ଼ି ଧରି ହସ୍ତ ॥
ଅତିଆନନ୍ଦେ ଉଠାରନ୍ତି । ରଥ କରଇ ଦିବ୍ୟଗତି ॥
ସକଳ ଶବଦରୁ ବଳି । ଶ୍ରୀନନ୍ଦୀଘୋଷ ରଥ ଚଳି ॥
କୋଟିବ୍ରହ୍ମାଣ୍ଡ ଶୁଭେ ପୂରି । ପ୍ରଭୁ ସମ୍ଭ୍ରମେ ବିଜେକରି ॥
କାରଣ ସୁର ନର ଗୋଷ୍ଠୀ । ସକଳ ଲୋକେ ସମଦୃଷ୍ଟି ॥
ତା ଲକ୍ଷି ଦ୍ୱିଜ ବେଗେ ଧାଇଁ । ଭକ୍ତିଭାବରେ ଭୋଳହୋଇ ॥
ଭେଟିଲା ପ୍ରଭୁ ପାଶେ ଯାଇ । ସାଷ୍ଟାଙ୍ଗେ ପାଦେ ପଡ଼ି ଶୋଇ ॥
ଉଠେ ମସ୍ତକେ ଦେଲା ହସ୍ତ । ବୋଇଲା ନାମା ଜଗନ୍ନାଥ ॥
ତୁମ୍ଭ ଶ୍ରୀମୁଖ ଦରଶନ । ପାଇଁ ଆଜିର ମୋ ଜୀବନ ।

ବାଟେ ଶଙ୍କଟ୍ଟ ରକ୍ଷାକର । ମୋତେ ଯେ ଆଣିଲ ଉଦ୍ଧରି ॥
ତର୍ତ୍ତିର ନାହିଁ ଏତେ ହେଉ । ତୋ ପାଦ ଚିନ୍ତା ଜନଯାଉ ॥
ଏମନ୍ତ ବୋଲି ନାମଧରି । କୃଷ୍ଣ କେଶବ ଦଇତାରି ॥
ମୁକୁନ୍ଦ ମାଧବ ଅଚ୍ୟୁତ । ପରମାନନ୍ଦ ଗୋପିନାଥ ॥
ଶ୍ରୀନାରାୟଣ ଚକ୍ରପାଣି । ଦୀନବାନ୍ଧବ ରଘୁମଣି ॥
ଶ୍ରୀବତ୍ସଲାଞ୍ଛନ ବରଜ । ଜୟ ଦେବାଧି ଦେବରାଜ ॥
ଏସନ ନାମ ଗାୟନରେ । ନେଇ ଲୋତକଧାର ଝରେ ॥
କଳାଶ୍ରୀମୁଖ ଧ୍ୟାନକରି । ପ୍ରଭୁ ସ୍ୱରୂପ ମନେଧରି ॥
ଚାଲି ନଦେଖି ଶ୍ରୀପୁର । ପ୍ରାଣ ଗୁଣ୍ଡିଲା ଦ୍ୱିଜବର ॥
ସମସ୍ତେ ଦେଖୁଁ ଦେଖୁଁ ତର୍ତ୍ତି । ଭୂଲିଣ ଗୁଡ଼ିଲାକ ମଞ୍ଜି ॥
ଶୁଣ ସୁଜନେ ହେଉ ହେଇ । ସେ ଯେଉଁ ଗତି ଥିବ ପାଇ ।
ତାହା କହିବାକୁ ସକ୍ଷମ । ନୁହଇ ମୁହିଁ ନରାଧମ ॥
କେବଳ ସାଧୁଜନ ମାନେ । କହିଲେ କହିବେ ବଚନେ ॥
ଶୁଣ ସୁଜନ ଏ ଚରିତ । ଭକତ ଲକ୍ଷଣ ଏମନ୍ତ ॥
ଅଶେଷ ଲୋକଙ୍କ ମହିମା । ବେଦ ନ ଜାଣେ ଗୁଣସୀମା ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ଶ୍ରବଣେ ପଠନେ ମୁକତ ॥
ପଢ ପଢନ୍ତେ ସୁଖ ହେବେ । ଅଶେଷ ଜନ୍ମ ପାପ ଛେଦେ ॥
କହଇ ରାମଦାସ ମୂଢ଼ । ମୋ ପ୍ରଭୁ ନନ୍ଦଘୋଷା ରୂଢ଼ ॥
ସେ ଦାରୁବ୍ରହ୍ମଙ୍କ ଚରଣେ । ମନ ମୋ ରହୁ ଅନୁକ୍ଷଣେ ॥
ତାଙ୍କ ମୋ ମନ ମଧୁକର । ନଷ୍ଟକେ ରହୁ ସେ ପୟର ॥
ନମସ୍ତେ ସାଧୁଙ୍କ ଚରଣ । ଏ ବର ଦଅ ଅନୁକ୍ଷଣ ॥
ସୁଜନେ ଏହି ରସେ ରସ । ଏ ଭବଜଳରେ ନ ଭାସ ॥
ସାଧୁ ଶ୍ରୀ କୃଷ୍ଣନାମ ବନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ବସ୍ତ୍ର ମଳାମ୍ବର ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ଦଶମୋଽଧ୍ୟାୟଃ ।

---

# ଏକାଦଶ ଅଧ୍ୟାୟ

## ରଘୁ କେଉଟର ସମ୍ବାଦ

### ମନ ଉବାଚ

ମନ ବୋଲଇ ଚଇତନ । ଶୁଣିଲି ଅପୂର୍ବ ବଚନ ॥
ସେ ନୀଳାମ୍ବର ଦାସ କଥା । ଶୁଣି ଗୁଞ୍ଜଇ ମନବ୍ୟଥା ॥
ଏହି ପ୍ରକାରେ କଥା ଯେତେ । ଅଛଇ କହୁଥାଅ ମୋତେ ॥
ମୋର ପୂଜ୍ୟ ବା ଯାଏ ଆଉ । ତୁମ୍ଭ କହିବାର ନ ଥାଉ ॥
କେବଳ ସାଧୁକଥା କେତେ । କହି ପବିତ୍ର କର ମୋତେ ॥
ଶୁଣି ଚୈତନ୍ୟ ଅତି ତୋଷେ । କହଇ ମନ ରାଜା ପାଶେ ॥
ହେ ରାଜା ସାବଧାନେ ଶୁଣ । ଏ ଦାର୍ଢ୍ୟଭକ୍ତିର ଲକ୍ଷଣ ॥
ପୁରୁଷୋତ୍ତମ ମହାକ୍ଷେତ୍ର । ଯେ କ୍ଷେତ୍ରମାନଙ୍କେ ପବିତ୍ର ॥
ତହିଁକ ଦଶକ୍ରୋଶଠାରେ । ଶ୍ରୀନୀଳାଚଳ ପାରୁଶରେ ॥
ପିପ୍‌ପଲୀ ଗ୍ରାମ ନାମ ତାର । ସେହି ଗ୍ରାମରେ ତାର ଘର ॥
ଜାତିରେ ଅଟଇ ଧୀବର । ରଘୁ କେଉଟ ନାମ ତାର ॥
ତାହାର ଘରେ ତିନପ୍ରାଣୀ । ମାତା ସଙ୍ଗତେ ତା ଘରଣୀ ॥
ଏମନ୍ତେ ତିନଜଣ ଥାନ୍ତି । କରି ତାହାଙ୍କ ନିଜ ବୃତ୍ତି ॥
ଜାଲ ପକାଇ ମୀନ ମାରି । ପ୍ରାଣ ପୋଷଇ ବିକ୍ରୀକରି ॥
ଏମନ୍ତେ କେତେଦିନ ଅନ୍ତେ । ସୁଜ୍ଞାନ ହେଲା ତାର ଚିତ୍ତେ ॥
ଶ୍ରୀଗୁରୁମନ୍ତ୍ର ଜପକରି । ତୁଳସୀମାଳା ହୃଦେ ଧରି ।
ବସଇ ସାଧୁଜନ ଭକ୍ତି । ଶ୍ରୀଭାଗବତ ପଢ଼େ ନିତି ।
ଜୀବ ମାରିବା ଦୋଷ ଯେତେ । ବିଚାର କରୁଥାଇ ଚିତ୍ତେ ॥
ବଣ୍ଡ୍ରବଣ୍ଡ୍ରିଙ୍କେ ଶୋକଇରେ । କର କମ୍ପଡ଼ ହୃଦୟରେ ॥
ବୋଲେ ବିଧାତା ଏହା କଲୁ । ଧୀବରକୁଳେ ଜନ୍ମ ଦେଲୁ ॥
ଜୀବମାରଣେ ପୋଡେ ମୁହିଁ । ନରକେ ପଡ଼ିବଇଁ ଯାଇଁ ॥
ଏମନ୍ତ ମନରେ ବିଚାରି । ନ ଗଲା ଆଉ ମୀନ ମାରି ॥
ବଇଲେ ଦୁଃଖୀ ଘର ପିଁନା । ହୋଇଲା ଅତ୍ୟନ୍ତ ଯାତନା ॥

ତାହାର ମାତା ପତ୍ନୀ ନିତ । ନାନାପ୍ରକାରେ ଗାଳିଦ୍ୟନ୍ତି ।
ତୁ ଏବେ ହୋଇବୁ ସନ୍ନ୍ୟାସ । ଆମ୍ଭଙ୍କୁ ରଖି ଉପବାସ ।
ନୋହିଲେ ମୀନ ମରି ଯାଅ । ନିଜ କୁଟୁମ୍ବ ପୋଷୁଥାଅ ।
ଶୁଣି ଧୀବର କୋପଭରେ । ପେଲଣା ଜାଲ ଧରି କରେ ।
ଗଲା ସେ ମୀନ ମାରିବାରେ । ପ୍ରବେଶ ହେଲା ସରୋବରେ ।
କୃଷ୍ଣ ସ୍ମରି ପଶି ଜଳେ । ଜାଲ ବାନ୍ଧିଲା ବୃକ୍ଷକୂଳେ ।
ଏମନ୍ତେ କେତେ ସମୟରେ । ଶ୍ରୀ ଜଗନ୍ନାଥଙ୍କ କୃପାରେ ।
ପଡ଼ିଲା ରୋହିମାଛ ଗୋଟି । ତା ଜାଲ ମଧ୍ୟରେ ତହଟି ।
ତାହା ଦେଖିଣ ଜଳବର୍ତ୍ତି । ମାଇଲା କପାଳରେ ହାତ ।
ବିଚାର କରଇ ସେ ଚିତ୍ତେ । ଏହାକୁ ମାରିବ କେମନ୍ତେ ।
ସାହାତେ ମୀନ ଅବତାର । ଯେତୁ ନାଶିଲେ ଶଙ୍ଖାସୁର ।
ସେ ଦିବ୍ୟ ରୂପ ନାଶ କରି । ମୁଁ କେମନ୍ତେ ଥିବି ଦେହ ଧରି ।
ଯେବେ ନ ମରିବ ଏ ମୀନ । ମୋତେ ନ ମିଳିବ ଭୋଜନ ।
ପତ୍ନୀ ଯେ ଦୁଆରୁ ତଡ଼ିବ । ଅନ୍ନ ନ ଦେଇ ଦଣ୍ଡିବ ।
ଏମନ୍ତ ବୋଲି ଭାବନ୍ତେନେ । ବେନି ନୟନୁ ଧାର ଚଳେ ।
ସେ ମୀନ ଧରି ବେଗେ ଗଲା । ଶୁଷ୍କ ଭୂମିରେ ପକାଇଲା ।
ବୋଇଲା ମୀନ ରୂପୀ ଶୁଣ । ତୁ ଯାହା କରିବୁ ଭିଆଣ ।
ମୋର ତ ଧୀବର ସ୍ୱଭାବ । କେ ତାହା ଅନ୍ୟଥା କରିବ ।
ତୋତେ ନ କଲେ ଆଜ ନାଶ । ମୋତେ ତ ନ ମିଳିବ ଗ୍ରାସ ।
ଏଣୁ ମାରିବା କଥା ସତ । ବୋଲି ତଣ୍ଡିରେ ଦେଲା ହସ୍ତ ।
ଅଳପ ଯାକନ୍ତେଲ ଧରି । ସେ ମୀନ ବଚନ ବିସ୍ତାରି ।
ଡାକିଲା ରକ୍ଷ ନାରାୟଣ । ଧୀବର ଶୁଣିଲା ଶ୍ରବଣ ।
ନିଧି ପ୍ରାପତ ହେଲା ଯେସନ୍ତେ । ତେସନ ଆନନ୍ଦ ତା ମନେ ।
ସେ ମୀନ ଘେନି ଚଳି ଗଲା । ଅଗମ୍ୟ ବନସ୍ତେ ମିଳିଲା ।
ନିର୍ଝରଠାରେ ଝର ଘର । ଦେଖି ହରଷ ମନ ତାର ।
ସେ ଝରତଟେ କୁଣ୍ଡ କରି । ଅଳପ ଘର ତହିଁ ଭରି ।

ସେ ଜଳେ ସେ ମୀନ ଭେଟେଣି । ଦୃଢ଼ ଆସନ କରି ବସି ।
ବୋଲେ ଏ ମୀନ ଗର୍ଭଗତେ । ଯେ ନାମ ଶୁଣାଇଲା ମୋତେ ।
ସେ ଏବେ ରୂପବନ୍ତ ହୋଉ । ମୋତେ ସେ ଦେଖା ଦେଇଯାଉ ।
ନୋହିଲେ ଜୀବନ ହାରିବି । ହତ୍ୟା ତାହାର ପରେ ଦେବି ।
ଏମନ୍ତେ ନିଷ୍ଠାବ୍ରତ କଲା । ସେ ମୀନ ରୂପେ ହେତୁ ଦେଲା ।
ଇନ୍ଦ୍ରିୟମାନଙ୍କ ବଶ କରି । ଚଞ୍ଚଳ ଚିତ୍ତ ସ୍ଥିର କରି ।
ସୁମାର୍ଗେ ରଖି ନେତ୍ର ଦୁଇ । ମନକୁ ଜ୍ଞାନମାର୍ଗେ ଥୋଇ ।
ଭଜନ କଲା ନାରାୟଣ । ଯେ ନାମ ପରମ କାରଣ ।
ସେ ନାରାୟଣ ନାମ ଗୋଟି । ହୃଦପଦ୍ମରେ କଲା ଗଣ୍ଠି ।
ନିରତେ ବନ୍ଦନରେ ଗୁଣି । ନ ଜାଣେ ଦିବସ ରଜନୀ ।
ଏମନ୍ତେ ଜନାର୍ଦ୍ଦନ ହେଲା । କେଶିକ ପାଦେ ନ ଟଳିଲା ।
ମରିବା କଥା କଲା ମୂଳ । ତାହା ଜାଣିଲେ ଆଦିମୂଳ ।
ବିପ୍ର ସ୍ୱରୂପ ଗୋଟି ଧରି । ଧୀବର ଆଗେ ବିଜେ କରି ।
ବୋଇଲେ ଶୁଣ ହେ ତପସ୍ୱୀ । କି ତପ କରୁ ଏଥେ ବସି ।
କି ଜାତି ତୋହର ଅଟେ ଚୋର । କି ଚୋର ନାହିଁ ଘର ଦ୍ୱାର ।
କିସ ଚିନ୍ତୁଅଛୁ ମନେ । ଏକାନ୍ତେ ବସିଅଛୁ ବନେ ।
କହ ହେ କେବଣ ତତ୍ତ୍ୱ । ଶୁଣି ବୋଲଇ କଇବର୍ତ୍ତ ।
ହେ ବିପ୍ର କି ମୋତେ ପଚାର । ଜାତିରେ ଅଟେ ମୁଁ ଧୀବର ।
କୁଟୁମ୍ବ ଜଞ୍ଜାଳ ନିମନ୍ତେ । ପେଲଣାଜାଲ ଧରି ହସ୍ତେ ।
ଅଇଲି ମୀନ ମାରିବାରେ । ପ୍ରବେଶ ହେଲି ସରୋବରେ ।
ଜାଲ ପକାନ୍ତେ ଜଳେ ପଶି । ପଡ଼ିଲା ରୋହିମାଛ ଆସି ।
ସେ ମୀନ ପକାଇଣ କୂଳେ । ଧରି ମୁଁ ମାରିବାର ବେଳେ ।
ସେ ମାଛ ପାଟି ବିସ୍ତାରିଣ । ଡାକିଲା ରଖ ନାରାୟଣ ।
ଶୁଣି ମୁଁ ଆଚମ୍ବିତ ହୋଇ । ମୀନକୁ ଧରି ଅଇଲଇଁ ।
ଏ ଘୋର ବନସ୍ତରେ ପଶି । ମୀନକୁ ଜଗିଅଛୁ ବସି ।
ଯେ ନାମ ଶୁଣାଇଲା ମୋତେ । ତାହାକୁ ଦେଖିବା ନିମନ୍ତେ ।

ତେବେ ମୁଁ ନୀଳପୁରେ ଯିବ । ନୋହିଲେ ଜୀବନ ହାରିବ ॥
ଏ କଥା ମୋର ସତ୍ୟବ୍ରତ । ତେଣୁ ମୁଁ ଆସିଅଛି ଏଥ ॥
କହିଲ ମନର ବେଦନା । ହେ ବିପ୍ର ଦ୍ୱିବେଦଙ୍କ ଜନା ॥
ତୁମ୍ଭେ ଥିବାରୁ ମୋ ଆଗର । ଭଜନ ହେଉଛି ଉତ୍ତର ॥
ଏମନ୍ତ ବୋଲି ନାରାୟଣ । ନାମ ଭଜନ କଲି ପୁଣ ॥
ସେ ଅନ୍ତର୍ଯ୍ୟାମୀ ନାରାୟଣ । ଜାଣିଲେ ରଘୁଦାସ ମନ ॥
ବୋଇଲେ ଶୁଣ ହେ ଧୀବର । ଏ କଥା ବିପରୀତ ତୋର ॥
ମୀନ ଭକ୍ଷିବ ନାମ କାହିଁ । ଏ କଥା ଘଟିତେ ନ ଯାଇ ॥
ଯେବେ ଭକ୍ଷିବ ପରମାଣ । କରିବ ବୋଲି ତାକୁ ଜାଣ ॥
ସେ କାହିଁ ଦେଖାଦେବ ତୋତେ । ବିଅର୍ଥେ ବସିଅଛୁ ଏଥେ ॥
ଏବେ ତୁ ନୀଳପୁରେ ଯାଅ । ଅଧିକ କଷ୍ଟ କିଁ ନ ପାଅ ॥
ତା ଶୁଣି ବୋଲେ କଇବର୍ତ୍ତ । ଭଲ କହିଲୁ ବିପ୍ର ସୁତ ॥
ସେ ସିନା ଦେଖାଦେବା ଦୂର । ମୋର ମାଇବାଟି ନଜର ॥
ଏଥକୁ ଉପ୍ସ ନାହିଁ କହୁ । ପ୍ରାଣ ମୁଁ ମୁଠୁଛି ରଖିଛି ॥
କେବଳ ଦୀନବନ୍ଧୁ ନାମ । ବନ୍ଧୁ ଅଛନ୍ତି ଦାରୁବ୍ରହ୍ମ ॥
ପତିତ ରକ୍ଷଣ ନିରତେ । ବେଇଲେ ବାନ୍ଧିଛନ୍ତି ନେତେ ॥
ଭକ୍ତ ଆରତ ନିବାରଣେ । ଶ୍ରୀ ଭୁଜେ ଚକ୍ର ଅନୁକ୍ଷଣେ ॥
ଧରି ବିଜୟ ଦାରୁହରି । ଏଣୁ ଭରସା ଅଛି କରି ॥
ଅବଶ୍ୟ ଦେଖାଦେବେ ଥରେ । ବିଶ୍ୱାସ ଅଛି ମୋ ମନରେ ॥
ନୋହିଲେ ପ୍ରାଣ ମୋର ଯାଉ । ତାର କାରଣ ରହି ଥାଉ ॥
ଏବେ ହୋ ଶୁଣ ବିପ୍ରବର । ତୁମ୍ଭଙ୍କୁ କୋଟି ନମସ୍କାର ॥
କଲ୍ୟାଣ କର ମୋତେ ଭଲ । ଭଜନ ହେଉଅଛି ହେଳ ॥
ତା ଶୁଣି ଶ୍ୱେତ ପଦ୍ମଡ଼ୋଳା । ଜଗତ ସବେ ହେଲେ ଭୋଳା ॥
ବିସ୍ମୟ କଲେ ହୃଦଗତେ । ମୂର୍ଚ୍ଛି ନିଶ୍ଚେଷ୍ଟ ହେଲେ ଏଥେ ॥
ନଷ୍ଟ ମରିବ ଏ ଧୀବର । ଜୀବନ ଆଶା ନାହିଁ ସ୍ଥିର ॥
ଏମନ୍ତ କହି ପୀତବାସ । ବୋଇଲେ ଶୁଣ ରଘୁଦାସ ॥

ଆମ୍ଭେଟି ମୀନ ଗର୍ଭଗତେ । ସେ ନାମ ଶୁଣାଇଲୁ ତୋତେ ॥
ତୋ ମନେ ସଂଶୟ ନ କର । ଆମ୍ଭେଟି ଜଗତ ଈଶ୍ୱର ॥
ଆସିଣ କୃପା କଲୁ ତୋତେ । ବର ତୁ ମାଗି ଘେନ ମୋତେ ॥
ତା ଶୁଣି ବୋଲଇ ଧୀବର । ଦେଖାଅ ନିଜ ରୂପ ତୋର ॥
ଯାହାରେ ଦେଖିବ ଚର୍ମ ଡୋଳେ । ଖଣ୍ଡିବ ଜନ୍ମ ମୃତ୍ୟୁ ହେଳେ ॥
ତା ଶୁଣି ପ୍ରଭୁ ଦେବରାଜ । ତକ୍ଷଣେ ହେଲେ ଚତୁର୍ଭୁଜ ॥
କମ୍ବୁ ରଥାଙ୍ଗ ଗଦାଧର । ଶୋଭା ପାଉଛି ସୁନ୍ଦର ॥
ପ୍ରତ୍ୟକ୍ଷେ ଭକ୍ତ ପୀତବାସ । ଦେଖି ଉଠିଲେ ରଘୁଦାସ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ି ହାତ ॥
ବୋଲନ୍ତି ନମୋ ଚକ୍ରପାଣି । ଭକତଜନ ଚିନ୍ତାମଣି ॥
ବ୍ରହ୍ମା ଇନ୍ଦ୍ରାଦି ଯୋଗେଶ୍ୱର । ଧ୍ୟାନେ ଚିନ୍ତନ୍ତି ଯା ପୟର ॥
ସେ ପ୍ରଭୁ ମୋହ ପୁର ପାଇଁ । ବିଜୟ କଲେ ଦୟାବନ୍ତ ॥
ଆଜ ମୁଁ କି ବର ମାଗିବି । ତୁମ୍ଭ ଚରଣେ ଲୁଚିଯିବି ॥
ପ୍ରଭୁ ବୋଇଲେ ଯାହା ମନ । ମାଗ ହେ ଭକତ ରତନ ॥
ଦାସ ବୋଇଲେ ଯେବେ ବର । ଦେବାକୁ କୃପା ହେବ ତୋର ॥
ଏ ମୋର ଧୀବର ସ୍ୱଭାବ । ଏହା କେମନ୍ତେ ଛାଡ଼ି ଯିବ ॥
ଆବର ଅନ୍ନ ମିଳୁଥିବ । ତୋ ନାମ ଧରି ଜୀବ ଯିବ ॥
ଯେବେ ଦୁଃଖରେ ଝୁରୁଥିବ । ତୁମ୍ଭ ଦର୍ଶନ ପାଉଥିବ ॥
ଅସ୍ତୁ ବୋଲିଣ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ବୈକୁଣ୍ଠ ପୁରେ ଗଲେ ଚଳି । ଭକତ ହରି ହରି ବୋଲି ॥
ବନରୁ ହୋଇଲା ବାହାର । ଘରେ ଗମଇ ଧୀର ଧୀର ॥
କରେ ବଜାଇ କରତାଳ । ବେନି ନୟନୁ ଧାରା ଗଳ ॥
ଶ୍ରୀହରି ନାମ ଗାନ କରି । ପ୍ରବେଶ ହେଲା ନିଜପୁରୀ ॥
ଏଣେ ଯେ ନିଜ ପୁରଜନେ । ରଘୁକୁ ନ ଦେଖି ନୟନେ ॥
କାନ୍ଦି ବୋବାଇ ପଡ଼ି ପଡ଼ି । ମଲା ବୋଲିଣ ଆଶା ଛାଡ଼ି ॥
ଅତ୍ୟନ୍ତ ଚିନ୍ତାଭରେ ଥିଲେ । ଏଡ଼େ ସମୟେ ଦାସେ ଗଲେ ॥

ତା ସଙ୍ଗେ ପୁରଜନ ଯେତେ । ଗୋଡ଼ାଇ ଅଛନ୍ତି ସମସ୍ତେ ॥
ବୋଇଲେ ଦେଖ ଏହୁ ବାଇ । ଛଦ୍ମେ ପ୍ରଭୁ ନାମ ଗାଇ ॥
କଷ୍ଟକୁ ଭୟ କରି ଚଞ୍ଚେ । ଲୁଚ ଯେ ଥିଲ ଦନାକେତେ ॥
ପୁଣି ଅଇଲା ଧାଇଁ ଧାଇଁ । ପହ୍ଲୀକ ଉଗ୍ରଇବା ପାଇଁ ॥
ଠକ ଠାପୁଆ ଜନମରୁ । ଠାପୁଆମାନଙ୍କର ଗୁରୁ ॥
ଏମନ୍ତ ଉପହାସ କଲେ । ଯେଝାପୁରକୁ ଚଳଗଲେ ॥
ଏଥି ଉତ୍ତାରୁ ଗୃହଜନେ । ଦାସଙ୍କୁ ନେଇଣ ସଦନେ ॥
ଅନ୍ନ ବ୍ୟଞ୍ଜନ ପରଶିଲେ । ଭକ୍ତର ମନକୁ ତୋଷିଲେ ॥
ଭୋଜନ ସାରି ଦାସେ ଉଠି । ଲଭି ଶ୍ରୀହରି ନାମ ଗୋଟି ॥
କଥାପଦକେ ନାରାୟଣ । ନାମ ଉଚ୍ଚରି ପୁଣ ପୁଣ ॥
ମାଳା ତିଳକ ଭେକ କରି । ବୈଷ୍ଣବ ପଥକୁ ଆଦରି ॥
ଦାଣ୍ଡେ ବୁଲଇ ଭିକ୍ଷା ଅର୍ଥେ । ମାଗଇ ନାହିଁ କଦାଚତେ ॥
ଶ୍ରୀ ନାରାୟଣ ନାମ ଧରି । ଦାଣ୍ଡେ ବୁଲଇ ଭିକ୍ଷାକରି ॥
ପ୍ରଭୁଙ୍କ ଆଜ୍ଞା ପ୍ରମାଣରେ । ଯେତେ ଲଗଇ ତାର ଘରେ ॥
ଲୋକେ ଦିଅନ୍ତି ଯାଚକରି । ଦାସେ ଆଣନ୍ତି ତାହା ଧରି ॥
ଦିଅନ୍ତି ମାତା ସନ୍ନିଧାନେ । ଦେଖି ଆନନ୍ଦ ମାତାମନେ ॥
କରିଣ ରନ୍ଧନ ଭୋଜନ । ସୁଖେଣ କଷ୍ଟଥାନ୍ତି ଦିନ ॥
ଏମନ୍ତେ କେତେଦିନ ପରେ । ଅନେକ ଗ୍ରାମ ମଣ୍ଡପରେ ॥
ବସି ଅଛନ୍ତି ରଘୁଦାସେ । ବାଳକେ ବେଢ଼ି ଚଉପାଶେ ।
ବୋଲନ୍ତି ଛଦ୍ମ ତପସ୍ୱୀ । ଦେଖ ସାଧକ ପ୍ରାୟେ ଦିଶି ॥
କୁଟୁମ୍ବ ପୋଷିଣ ନ ପାରି । ଖାଅଇ ଭିକ୍ଷା ମାଗିକରି ॥
ଧୂଳି ଉଡ଼ାଇ ଝାନ୍ତ କଲେ । ବଳଶଷ୍ଟ ରୂପେ ଗାଳିଦେଲେ ॥
ନାନା ପ୍ରକାରେ ଗାଳିଦେଇ । କେ ମାଳ ଉତ୍ପୁଡ଼ି ନିଅଇ ॥
ତା ଦେଖି ଶ୍ରୀହରିର ଦାସ । ଉଠି ଗମନ୍ତି ନିଜବାସ ॥
ଏକ ବାଳକ ତହିଁ ଥିଲା । ପଛରେ ଗୋଡ଼ାଇଣ ଗଲା ॥
ଲୌହକଣ୍ଟକ ଲଗା ବାଡ଼ି । ଧରି ନିତମ୍ବେ ଦେଲା ମାଡ଼ି ॥

ରୁଧିର ହୋଇଲା ବାହାର । ତା ଦେଖି ବୋଇଲା ଧୀବର ॥
କି ଅପରାଧ କଲି ତୋତେ । ଏଡ଼େକ ଦଣ୍ଡ ଦେଲୁ ମୋତେ ॥
ତୋତେ ଦଣ୍ଡନ୍ତୁ ପାପବନ୍ଧୁ । ତୋ ମାତା ପୁତ୍ର ବୋଲି କାନ୍ଦୁ ॥
ଏମନ୍ତ ବୋଲି ଶାପ ଦେଇ । ଦାସେ ସଦଣ୍ଡ କେତେ ଯାଇ ॥
ତକ୍ଷଣେ ସେ ବାଳକ ଗୋଟି । ଜୀବନ ହାରି ଭୂମି ଲୋଟି ॥
ତା ଦେଖି ସକଳ ବାଳକେ । ଯାଇଁ ମିଳିଲେ ତାର ପାଖେ ॥
ଦେଖିଲେ ପିଣ୍ଡେ ପ୍ରାଣ ନାହିଁ । ସମସ୍ତେ ଗଲେ ତହୁଁ ଧାଇଁ ॥
ତା ମାତା ପିତାଙ୍କ ଆଗରେ । ସକଳ ବୁଝାଇ କହିଲେ ॥
ତୁମ୍ଭର ପୁତ୍ର ପ୍ରାଣ ଛାଡ଼ି । ମଛି କାଣ୍ଡରେ ଅଛି ପଡ଼ି ॥
ତା ଶୁଣି ଜନନୀ ପିତର । ରୋଦନ କରି ଉଚ୍ଚସ୍ୱର ॥
ମିଳିଲେ ପୁତ୍ରପାଶେ ଯାଇ । ଧରଣି ସଳଖି ବସାଇ ॥
ନାସିକା ଚିପି କର୍ଣ୍ଣ ଫୁଙ୍କି । କର ଚରଣ ନାଡ଼ି ଦେଖି ॥
ଜାଣିଲେ ପିଣ୍ଡେ ପ୍ରାଣ ନାହିଁ । ପୁତ୍ରକୁ ଘେନି ଗଲେ ବହି ॥
ଦାସଙ୍କ ପାଦେ ପକାଇଲେ । ଅନେକ ବିନସ୍ତ ହୋଇଲେ ॥
ବୋଇଲେ ଶୁଣ ଆହେ ସାଧୁ । ତୁମ୍ଭେତ ସର୍ବଲୋକ ବନ୍ଧୁ
ଶତ୍ରୁ ମିତ୍ରାଦି ତୋର ନାହିଁ । ଏ ଦଣ୍ଡ ବହିଲେ କମ୍ପଇଁ ॥
ଏବେ ମୋ ପୁତ୍ର ଦୋଷ ଯେତେ । ସକଳ ଦିଅ ମୋର ମାଥେ ॥
ସଂସାର ମଧ୍ୟେ ମୋତେ ରଖ । ଦିଅ ମୋ ଏକଇ ବାଳକ ॥
ନୋହିଲେ ହତ୍ୟା ହେବ ତୋତେ । ବୋଲି ପଡ଼ିଲେ ପାଦଗତେ ॥
ତା ଦେଖି ଶ୍ରୀହରିର ଦାସ । ଚିନ୍ତିଣ କମଳ ବିଳାସ ॥
ବୋଇଲେ ଶୁଣ ସାଧୁଜନ । ଶୁଣ ହେ ସକଳ ନନ୍ଦନ ॥
ମୋହର ଦୋଷ ଥିଲେ ଏଥେ । ସମସ୍ତେ ଦଣ୍ଡ କଲା ମୋତେ ॥
ତାହାର ଅପରାଧ ସହିଁ । ଦଣ୍ଡ ବହିଲେ ସ୍ୱାଂଗ୍ରାହୀ ॥
ଏବେ ମୋ ପ୍ରଭୁଙ୍କ ଆଜ୍ଞାରେ । ମୁରତି ଥାଉ ଏ ସଂସାରେ ॥
ଜୀବନ ପାଉ ଏ ବାଳକ । ସମସ୍ତେ ଉଠ ବୋଲି ଡାକ ॥
ତା ଶୁଣି ତାତ ମାତ ତାର । ଆବର ଯେତେ ଥିବେ ନର ॥

ସମସ୍ତେ ବୋଲି ହରି ହରି । ଚୋଳକଲେ ପୁଣ ଭୂଜଧରି ।
ବୋଇଲେ ଉଠରେ ବାଳୁତ । ଦେଖ ତୋହର ତାତ ମାତ ।
ତା ଶୁଣି ଉଠିଲା କୁମର । ପାଇଣ ନିଜ ପ୍ରାଣ ତାର ।
ନିଦ୍ରୁ ଉଠିଲା ପ୍ରାୟେ ହୋଇ । ଚକ୍ଷୁ ମଳଣ ଦେଲା ସ୍ୱୟିଁ ।
ଦେଖିଲା ଗ୍ରାମଜନ ଯେତେ । ଦାସଙ୍କୁ ବେଢ଼ିଣ ସମସ୍ତେ ।
ତାତ ଜନମୀ ଭକ୍ତପାଦେ । ସେବା କରନ୍ତି ଅପ୍ରମାଦେ ।
ତା ଦେଖି ସେ ବାଳକ ଗୋଟି । ଦାସଙ୍କ ପାଦତଳେ ଲୋଟି ।
ଉଠି କପାଳେ ଦେଲା କର । ବୋଲେ ମୋ ଦୋଷ କ୍ଷମାକର ।
ତାହା ଦେଖିଣ ସର୍ବଜନେ । ଅତି ଚକିତ ହେଲେ ମନେ ।
ଦାସଙ୍କ ପାଦପୂଜା କଲେ । ଯେ ଯାହା ମତେ ଚଳିଗଲେ ।
ଦାସ ଚଳିଲେ ନିଜପୁର । ଭଜଣ ଗୋବିନ୍ଦ ଗୋପାଳ ।
ଏମନ୍ତ କେତେଦିନ ଗଲା । ତା ଯଶ ଜଗତେ ପୂରିଲା ।
ଦେଶକୁ ଦେଶ କାହିଁ ତାର । ବଢ଼ିଲା ଅପାରୁ ଅପାର ।
ସେ ରାଜ୍ୟ ପ୍ରଜାଜନ ଯେତେ । ଆନନ୍ଦେ ଆସନ୍ତି ସମସ୍ତେ ।
ଦେଖିଣ ଧନ ବସ୍ତ୍ର ଦ୍ରବ୍ୟ । ବର୍ଣ୍ଣନ କରି ଲେଉଟନ୍ତି ।
ଯାହାକୁ ଯାହା ସେ କହଇ । ସେ କଥା ଅନ୍ୟଥା ନୁହଇ ।
ଏମନ୍ତ ଗଲା କେତେଦିନ । ଏଥିଉତ୍ତରୁ କଥା ଶୁଣ ।
ଦିନେ ହୋ ମନର ହରଷେ । ଏକାନ୍ତେ ବସି ରଘୁଦାସେ ।
କିଛି ଭୋଜନ ଦ୍ରବ୍ୟ ଥୋଇ । ଧ୍ୟାନେ ଚିନ୍ତିଲେ ଜଗନ୍ନାଥ ।
ତତ୍କ୍ଷଣେ ନୀଳାଚଳବାସୀ । ଭକତ ପାଶେ ହେଲେ ଆସି ।
ଦାସେ ଦେଖିଣ ଶ୍ରଦ୍ଧାମନେ । ପ୍ରଭୁ ବସାଇ ଦିବ୍ୟାସନେ ।
ଭୋଜନ ଦ୍ରବ୍ୟ ଧରି କରେ । ଭୁଞ୍ଜାନ୍ତି ପ୍ରଭୁଙ୍କ ମୁଖରେ ।
ଏମନ୍ତ ସମୟରେ ତହିଁ । ସେ ମହାରଜା ନୃପସାଇଁ ।
ପ୍ରଭୁଙ୍କ ମଣୋହି ନିମନ୍ତେ । ନାନାପ୍ରକାରେ ଭୋଗ ଯେତେ ।
ସେବକ ହସ୍ତେ ଘର କରି । ଭୋଗ ମଣ୍ଡପେ ଦେଇ ଭରି ।
ପଣ୍ଡାଏ ପୂଜାରେ ବସିଲେ । ପ୍ରଭୁ ଚକ୍ଷୁରେ ନ ଦିଶିଲେ ।

କେତେହେଁ ବେଳେ ଧ୍ୟାନ ଗତେ । ଦେଖିଲେ ନାହିଁ କଦାଚିତେ ।
ନୃପତି ପାଶେ ଜଣାଇଲେ । ପ୍ରଭୁ ଯେ ମଣୋହି ନ କଲେ ।
କି ଅବା ହୋଇଲା ଅଭାବ । ସକଳ ଭୋଗ ପୋଡ଼ା ହେବ ।
ଶୁଣି ନୃପତି ତାପ ମନେ । ଗରୁଡ଼ ପଛେ କୁଶାସନେ ॥
ଶୋଇଲେ ପ୍ରଭୁ ଚିନ୍ତାକରି । ତାହା ଜାଣିଲେ ଦେବ ହରି ।
ସ୍ୱପନ ମଧ୍ୟେ ଭାବଗ୍ରାହୀ । ନୃପତି ଆଗେ ଉଭା ହୋଇ ।
ବୋଇଲେ ଶୁଣ ହେ ରାଜନ । କିମ୍ପା ତୁ କରୁ ଦୁଃଖ ମନ ।
ଆମ୍ଭେ ଯେ ପିପିଲି ଗ୍ରାମରେ । ଧୀବର ରଘୁ ଦାସ ଘରେ ।
ଭୋଜନ କରୁଅଛୁ ବସି । ତେଣୁଟି ଚକ୍ଷୁରେ ନ ଦିଶି ।
ଭକତ ତୁଣ୍ଡବେକ ଯେବେ । ଏଥି ମଣୋହି ହେବ ତେବେ ।
ମୂଳ ମୋ ଭକତର ଭାବ । ଏ ଦ୍ରବ୍ୟ ମୋର କସ ହେବ ।
ଭକତ ରେଣୁ ମାତ୍ର ଦେଲେ । ତାହା ମୁଁ ମଣେ ମେରୁ ତୁଲେ ।
ଭାବରୁ ଥାଇ ଯେ ଭୋଜନ । ସେ ମେରୁ ତୁଲେ ଦେବା ଧନ ।
ସେ ମୋତେ ଅଟଇ କିଞ୍ଚିତ । ଶ୍ରଦ୍ଧା ନ ଥାଇ ଯାର ଚିତ୍ତ ।
ତେଣୁଟି କହୁଅଛୁ ତୋତେ । ଯାଇ ପିପିଲି ପରସନ୍ତେ ।
ମୋର ଦାସକୁ ଘେନ ଆସ । ଦେଖ ତୁ ସ୍ନେହବରେ ବାସ ।
ତେବେ ମୁଁ କରିବି ଭୋଜନ । ଏମନ୍ତ କହି ଅନ୍ତର୍ଦ୍ଧାନ ।
ପ୍ରଭୁ ଶ୍ରୀମୁଖଁ ଏହା ଶୁଣି । ନିଦ୍ରାରୁ ଉଠି ନୃପମଣି ।
ଅଶ୍ୱ ଆରୋହୀ ଚଳିଗଲେ । ସକଳ ସମ୍ଭ୍ରମର ତୁଲେ ।
ମିଳିଲେ ପିପିଲି ଗ୍ରାମରେ । ଧୀବର ରଘୁଦାସ ଦ୍ୱାରେ ।
ଆଦେଶ ନୃପତି ଗରୁ ହଂସ । ଡାକିଲେ ଦାସେ ବେଗେ ଆସ ॥
ତାହା ନ ଜାଣେ ରଘୁଦାସ । ପ୍ରଭୁ ସେବାରେ ଅଭିଳାଷ ।
କୋଟିଏ ନିଧି ପାଇଅଛୁ । ତେଣୁ ସେ ନ ଜାଣଇ କିଛୁ ।
ନୃପତି କେତେହେ ଡାକିଲେ । ଦାସେ ଶ୍ରବଣେ ନ ଶୁଣିଲେ ॥
ତାହା ଜାଣିଲେ ନରନାଥ । ଅଶ୍ୱରୁ ଉତୁରି ତ୍ୱରିତ ।
ମନ୍ଦିରେ ପ୍ରବେଶ ହୋଇଲେ । ଦାସଙ୍କ ପାରୁଶେ ମିଳିଲେ ।

ତାହା ଜାଣିଲେ ଭଗବାନ । ତତ୍କ୍ଷଣେ ହେଲେ ଅନ୍ତର୍ଦ୍ଧାନ ।
ପ୍ରଭୁ ନ ଦେଖି ଦାସେ ଶୋକେ । ନେତ୍ରୁ ଲୋତକ ଧାର ଗଳେ ।
ଆହା ମୋ ପ୍ରଭୁ ଗଲେ କାହିଁ । ବୋଲି ଭୂମିରେ ଗଡ଼ୁଯାଇ ।
ତାହା ଦେଖିଣ ନୃପବର । ତୋଳିଣ ଧଇଲେ ଶ୍ରୀକର ।
ହୃଦରେ କଲେ ଆଲିଙ୍ଗନ । ବୋଇଲେ ଧନ୍ୟ ତୋ ଜୀବନ ।
ହରିଙ୍କି କଲୁ ବଶବର୍ତ୍ତୀ । ତୋର ଦର୍ଶନେ ମୁଁ ମୁକତି ।
ଏମନ୍ତ ବୋଲି ଦଣ୍ଡଧାରୀ । ନେଲେ ଦାସଙ୍କ ହସ୍ତ ଧରି ।
କରିଣ ନାନା ମତେ ସଜ । ମଣ୍ଡାଇ ନାନା ବେଶେ ଗଜ ।
ଦାସଙ୍କୁ ତହିଁ ବସାଇଲେ । କୁଟୁମ୍ବ ସଙ୍ଗେ ଚଳାଇଲେ ।
ନାନା ଉତ୍ସବେ ଚଳିଗଲେ । ଶ୍ରୀ ପୁରୁଷୋତ୍ତମେ ମିଳିଲେ ।
ପ୍ରଭୁଙ୍କୁ କଲେ ଦରଶନ । ବଢ଼ିଲା ସେବା ପୂଜାମାନ ।
ଦକ୍ଷିଣ ପାରୁଶରେ ଭଲେ । ତହିଁର ଘର ନିର୍ମାଣିଲେ ।
ତହିଁ ଦାସଙ୍କୁ ଦେଲେ ସ୍ଥାନ । ଖଞ୍ଜିଲେ ଖଞ୍ଜା ବରତନ ।
ଅନେକ ଗଉରବ କରି । ଚଳିଣ ଗଲେ ଦଣ୍ଡଧାରୀ ।
ଦାସେ ରହିଲେ ପ୍ରଭୁପାଶେ । ଅତ୍ୟନ୍ତ ମନର ହରଷେ ।
କରନ୍ତେ କରି ହରି ସେବା । ନ ଜାଣେ ଅନ୍ୟ ଦେବୀ ଦେବା ।
କରନ୍ତେ ଦାନ ପୁଣ୍ୟ ବ୍ରତ । ନାମ ଭଜନ ଅବିରତ ।
ଏମନ୍ତେ ବଞ୍ଚୁଥାଇ ଦିନ । ଆନନ୍ଦେ ଶୁଣ ହୋ ସୁମନ ।
ତାହାର ନାମ ରଘୁଦାସ । ଜଗତେ ହୋଇଛି ପ୍ରକାଶ ।
ଆଜି ତା ଯେତେ ଯେତେ କଥା । କହି ବସିଲେ ହେବ ପୋଥା ।
ଶୁଣ ସୁମନ ହୋଇ ତୋଷ । ଏ ଦାର୍ଢ୍ୟଭକ୍ତି ସୁଧାରସ ।
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ।
ଅଶେଷ ଜନ୍ମ ପାପ ଥିଲେ । ଖଣ୍ଡିବ ବଚନେ ଶୁଣିଲେ ।
କେବଳ ଥିଲେଟି ଶରଧା । ଲାଗିବ ନାହିଁ ପାପବାଧା ।
କହଇ ବିପ୍ର ଜଗନ୍ନାଥ । ସାଧୁଙ୍କ ମହିମା ଅଶେଷ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ରଘୁ ଦେହେର ଦାର୍ଢ୍ୟସବ ବର୍ଣ୍ଣନେ ନାମ ଏକାଦଶୋଽଧ୍ୟାୟଃ

# ଦ୍ୱାଦଶ ଅଧ୍ୟାୟ

## ଗଙ୍ଗାଧର ଦାସ ସମ୍ବାଦ

### ଚୈତନ୍ୟ ଉବାଚ

କହେ ଚୈତନ୍ୟ ଶୁଦ୍ଧଚେତା । ଶୁଣ ସୁମନ ସାଧୁ କଥା ॥
ପୁରୁଷୋତ୍ତମ କ୍ଷେତ୍ରବରେ । ପ୍ରତାପରୁଦ୍ର ସମୟରେ ॥
ଗୋବିନ୍ଦପୁର ବୋଲି ନାମ । ଗ୍ରାମମାନଙ୍କ ମୋକ୍ଷ ସ୍ଥାନ ॥
ବଣିଆ ନାମେ ଗଙ୍ଗାଧର । ସେହି ଗ୍ରାମରେ ତାର ଘର ॥
ଲଉଯା ନାମ ତାର ସ୍ତ୍ରୀୟା । ସତୀ ସାଧ୍ୱୀ ସ୍ୱାମୀ ପ୍ରିୟା ॥
ପୁତ୍ର ଦୁହିତା ତାର ନାହିଁ । ତହିଁକି ଶୋଚନା ନ ଥାଇ ॥
ସେ ପତି ପତ୍ନୀ ଥାନ୍ତି ଏକା । କରଣ ଆପଣା ଜୀବିକା ॥
ପଶରା କରି ଧନ ଜଣି । ସୁଖେ ଜୀଅନ୍ତି ବେନି ପ୍ରାଣୀ ॥
ନାନାଦି କଟୁଦ୍ରବ୍ୟ ଯେତେ । ସେ ଶୁଣ୍ଠି ପିପ୍ପଳି ସହିତେ ॥
କରଣ ଶ୍ରୀହରି ଭକତି । ଦେବା ଦୟାରେ ଶୁଦ୍ଧମତି ॥
ପର ଦୁଃଖରେ ହୋଇ ଦୁଃଖୀ । ସେବନ୍ତି ସାଧୁଜନ ଦେଖି ॥
ଏମନ୍ତେ କେତେଦିନ ଗଲା । ବୃଦ୍ଧି ବୟସ ଆସି ହେଲା ॥
ଦିନେକ ଶୟନ ସମୟେ । ପତ୍ନୀ ତା ପତି ଆଗେ କହେ ॥
ହେ ସ୍ୱାମୀ ଶୁଣ ମୋ ବଚନ । ଲୋକେ ମୁଁ ହେଲି ହୀନମାନ ॥
ଘର ବାହାର ବନ୍ଧୁ ଘାଟେ । ଥୋକେ ବୋଲନ୍ତି ହାଟେବାଟେ ॥
ପୋଡ଼ୁ ଏ ଅଣ୍ଟୁକୁଡ଼ୀ ମୁଖ । ମୁଖଟି ପ୍ରଭାତେ ନ ଦେଖ ॥
ଏମନ୍ତ ବୋଲି ଥୋକେ ଲୋକ । ଠିଆ ନ ହୋନ୍ତି ମୋର ପାଖ ॥
ଥୋକାଏ କଥା ନ କହନ୍ତି । ଦେଖିଲେ ମଥା ପୋତି ଯାନ୍ତି ॥
ଏଣୁ ମୋ ହୃଦୟ ଆକୁଳ । ଖଣ୍ଡିଲେ ନାହିଁ ଆଦମ୍ଭକ ॥
ଆମ୍ଭ ଭାଗ୍ୟରେ ପୁତ୍ର ନାହିଁ । ଲୋଡ଼ିଲେ ପାଇବା ତା କାହିଁ ॥
ଏଥିକୁ ବ୍ରାହ୍ମଣ କୁମର । ଗୋଟିଏ ଦତ୍ତ କ୍ରୀତ କର ॥
ନୋହିଲେ ଆପଣା କୁଳରୁ । ଅତ୍ୟନ୍ତ ଦରିଦ୍ରର ଘରୁ ॥
କିଛି ଦେଇଣ ତାକୁ ଧରି । କିଣି ସେ ଆଣ ଏକ ସୁତ ॥

ପାଳିବା ପୁତ୍ର ସମ କରି । ଏ ଭାବ ଜନ୍ମ ହେବା ପାଇଁ ॥
ଛାଡ଼ିବା ପର ଅପବାଦୁ । ସର୍ବେ ବୋଲିବେ ସାଧୁ ସାଧୁ ॥
ମୋ ମନେ ଯୋଗାଇ ଏ କଥା । ତା ଶୁଣି ବୋଲେ ନିଜ ଭର୍ତ୍ତା ॥
ନିଶ୍ଚେ ଆଣିବା ଏକ ବାଳ । ପୁତ୍ର ସେମାନେ ପ୍ରତିପାଳ ॥
ଏମନ୍ତ ବୋଲି ଚଳିଗଲା । ଶ୍ରୀ ପୁରୁଷୋତ୍ତମେ ମିଳିଲା ॥
ପ୍ରବେଶ ରୂପକାର ଘରେ । କହୁଁନ୍ତି ଧନ ଦେଇ ତାହରେ ॥
ସର୍ବ ଲକ୍ଷଣ ପୂର୍ଣ୍ଣ ଜାଣି । କୃଷ୍ଣ ପ୍ରତିମା ଗୋଟି ଆଣି ॥
ଆଣି ତା ପତ୍ନୀ ଆଗେ ଦେଲା । ହେ ସଖି ସନ୍ତାନ ହୋଇଲା ॥
ଏହ୍ନଟି ଗର୍ଭ ମୁକ୍ତ ଜାତା । ଏହ୍ନଟି ପାଳନ କରତା ॥
ଏହାକୁ ପୁତ୍ର ବୁଦ୍ଧି କରି । ଯଶୋଦା ଦେଖି ଗଲେ ତରି ॥
ବ୍ରହ୍ମାଦି ସର୍ବ ଦେବଗଣେ । ଏହାକୁ ଭାବୁଥାନ୍ତି ମନେ ॥
ଏ ବିଭୁ ବିନା ଅନ୍ୟ ଜଣେ । ନାହିଁ ପାଳକ ଉଦ୍ଧାରଣେ ॥
ଏଣୁ କେବଳ ଭକ୍ତିଗତେ । ବିଶ୍ୱାସେ ସେବ ଏକ ଚିତ୍ତେ ॥
ଯାହା ବାଞ୍ଛିବୁ ତୋର ମନ । ତାହା କରିବେ ଏହା ପୂର୍ଣ୍ଣ ॥
ତା ଶୁଣି ଆନନ୍ଦ ସୁନ୍ଦରୀ । କୃଷ୍ଣ ପ୍ରତିମା ଗୋଟି ଧରି ॥
ସ୍ନାନ ମାର୍ଜ୍ଜନା କରାଇଲେ । ଦିବ୍ୟ ଆସନେ ବସାଇଲେ ॥
ଉତ୍ତମ ସରକ୍ଷୀର ପାନ । କୃଷ୍ଣଙ୍କୁ କଲେ ନିବେଦନ ॥
ବିଚାର କଲା ତାର ମନେ । ପୁତ୍ର ପାଇଲି ଏତେଦିନେ ॥
ଏହାଙ୍କୁ ପୁତ୍ର ଭାବେ ମଣି । ସୁଖେ ତରିବୁ ବେନପ୍ରାଣୀ ॥
ଏମନ୍ତ ବୋଲି ଆହ୍ଲାଦ । ସେବଣ ହୋଇଲେ ଆନନ୍ଦ ॥
ପୁତ୍ର ପରାୟେ ନିରନ୍ତରେ । ତଇଲ କୁଙ୍କୁମ ଅଙ୍ଗରେ ॥
ମର୍ଦ୍ଦନ କରି ନିତ ନିତ । ସ୍ନାହାନ ମାର୍ଜ୍ଜନା କରନ୍ତ ॥
କର୍ପୂର ଚନ୍ଦନ ସହିତେ । ସର୍ବାଙ୍ଗେ ଲେପୁଥାନ୍ତି ନିତ୍ୟେ ॥
ନାନା କୁସୁମେ ବେଶ କରି । ନାନାଦି ଅଳଙ୍କାର ଭରି ॥
ବାଳକଠାରେ ସ୍ନେହ ଯେତେ । ସେହି ପ୍ରକାରେ ସ୍ନେହ ଚିତ୍ତେ ॥
ଯେତେ ଅପୂର୍ବ ଦ୍ରବ୍ୟମାନ । କୃଷ୍ଣଙ୍କୁ କରି ନିବେଦନ ॥

ଯତ୍ନେ ଭୁଞ୍ଜନ୍ତି ବେନପ୍ରାଣୀ । ନୋହିଲେ ନ ଛୁଅନ୍ତି ପାଣି ॥
କେନ୍ଦୁ କଇଁଥ ବରକୋଳି । ପଣସ ଶ୍ରୀଫଳ କଦଳୀ ॥
ଗ୍ରାମକୁ ଯେତେ ବଣା ଆସେ । କିଣି ଦିଅନ୍ତି ପୁତ୍ରପାଶେ ॥
ଆବର ଯେତେ ବଣିଜାର । ପିଅର ଗଲେ ଦେଶ ପୁର ॥
ଯେବା ଅପୂର୍ବ ଦ୍ରବ୍ୟମାନ । ବହି ସେ ଆଣେ ଶ୍ରଦ୍ଧାମନ ॥
ଆଣଇ ଅତି ଶ୍ରଦ୍ଧା ଚିତ୍ତେ । ପୁତ୍ରକୁ ଦେବାର ନିମନ୍ତେ ॥
ପ୍ରବେଶ ହେଲକ୍ଷଣି ଘରେ । ଡିଅଇ ଦେଇ ପୁତ୍ର କରେ ॥
ମାତାନ୍ତି ଅତି ସ୍ନେହ ଭରେ । ପୁତ୍ରକୁ ଧରି କୋଳକରେ ॥
ଦଣ୍ଡେ ନ ଛାଡ଼େ ପୁତ୍ରପାଶ । ଗୃହକାରତ ତାକୁ ବଷ ॥
ଦଇବଯୋଗେ ସେ ଯୁବତୀ । ଯେବେ ଭରଇ ଗୃହକାର୍ତ୍ତି ॥
ନଇତେ ହୋଇ ଛନ ଛନ । ପୁତ୍ରେ ନିବେଶି ଥାଇ ମନ ॥
ବଣ୍ଡିକେ ଆସୁଥାଇ ଦେଖି । ଦେଖିଲେ ହେଉଥାଇ ସୁଖୀ ॥
କେତେବେଳରେ କୋଳେଉଠ । ବୋଲଇ ଯାଇଥିଲି ଛାଡ଼ି ॥
ମୁଁ ହିନ ନିଲକ୍ଷଣୀ ମଲି । ତୋତେ ଏକାକି ଛାଡ଼ିଗଲି ॥
ଏମନ୍ତ ବୋଲି ଚନ୍ଦ୍ରମୁଖେ । ଚୁମ୍ବନ ଦେଇ ଅତି ସୁଖେ ॥
ଏହି ପ୍ରକାରେ ସେ ଯୁବତୀ । ଭାବନା କରୁଥାଇ ନିତି ॥
କୃଷ୍ଣଙ୍କୁ ପୁତ୍ର ପ୍ରାପ୍ତେ ମଣି । ଅନ୍ୟ ନ ଜାଣେ ସେ ତରୁଣୀ ॥
ତା ତହୁଁ ତା ଶତ ଗୁଣେ । କୃଷ୍ଣଙ୍କୁ ପୁତ୍ର ପ୍ରାପ୍ତେ ମଣେ ॥
ଏମନ୍ତ ଗଲା କେତେଦିନ । ଏଥିଉତ୍ତାରୁ ଶୁଣ ମନ ॥
ଭଣେଇ ଗଙ୍ଗାଧର ଦାସ । କହିଲା ନିଜ ପତ୍ନୀ ପାଶ ॥
ଯାଉଛି ବଣିଜ ନିମନ୍ତେ । ପୁତ୍ର ଲାଗିଲା ଏକା ତୋତେ ॥
କ୍ଷଣେ ତୁ କେଣିକି ନ ଯିବୁ । ନିରତେ ପୁତ୍ର ପାଶେ ଥିବୁ ॥
ଏମନ୍ତ ବୋଲି ନବଗଜରି । ନାନାଦି କଠଦ୍ରବ୍ୟ ଭରି ॥
ଜଣାଇ ପତ୍ରର ଅଗ୍ରତେ । ଚଳିଲେ ବଣିଜ ନିମନ୍ତେ ॥
ଚିତ୍ତ ନିବେଶି ପୁତ୍ର ପାଶେ । ବୁଲି ବିକଇ ଦେଶେ ଦେଶେ ॥
ଏମନ୍ତ ତିନଦିନ ଗଲା । ତାହାଙ୍କୁ ତିନଯୁଗ ହେଲା ॥

ସୁତ ନ ଦେଖି ଛନ ଛନ । ବସି ସେ ଠୁଳ କଲା ଧନ ।
ପୁତ୍ର ନିମନ୍ତେ ଯେ ଅପୂର୍ବ । କିଣି ଆଣିଲା ଭକ୍ଷ ଦ୍ରବ୍ୟ ।
ବେନି ଆନନ୍ଦେ ଚଳିଗଲେ । ଗ୍ରାମ ନିକଟେ ଯାଇଁ ହେଲେ ।
ବଇବେ ବୃଦ୍ଧ ଗଙ୍ଗାଧର । ଚାଲନ୍ତେ ଅତି ଖରତର ।
ପାଦ ଖସନ୍ତେ ସେ ପଡ଼ିଲା । ପଡ଼ିବାଠାରେ ପ୍ରାଣଗଲା ।
ଜୀବ ଯିବାର ବେଳେ ତାର । ଡାକିଲା ଆରେ କୃଷ୍ଣ ମୋର ।
ଦେଖିଲି ନାହିଁ ତୋ ଶ୍ରୀମୁଖ । ମୁଁ ପାପୀ ବଡ଼ଇ ମୂରୁଖ ।
ଏମନ୍ତ ବୋଲି ପୁଣ ପୁଣ । କୃଷ୍ଣ ସୁମରି ଗଲା ପ୍ରାଣ ।
ତାହା ଦେଖିଣ ଗ୍ରାମଲୋକେ । କହିଲେ ତା ପତ୍ନୀ ସମୀପେ ।
ବୋଇଲେ ଶୁଣ ଆଗୋ ସଖି । ଅଇଲୁଁ ତୋ ପତିକି ଦେଖି ।
ଗ୍ରାମବାହାରରେ ଅଛି ଶୋଇ । ଦେଖିଲୁଁ ପିଣ୍ଡେ ପ୍ରାଣ ନାହିଁ ।
ତାହା ଶୁଣିଣ ମହାସତୀ । ହୃଦପଦ୍ମରେ କଲା ଘାତ ।
ଅତ୍ୟନ୍ତ ଶୋକାତୁର ହୋଇ । ମିଳିଲା ପୁତ୍ର ପାଶେ ଯାଇଁ ।
ଡାକିଲା ଆରେ କୃଷ୍ଣ ମୋର । ଅରକ୍ଷଲୋକଙ୍କ ସୋଦର ।
ଦୀନବାନ୍ଧବ ଚିନ୍ତାମଣି । ଜଗନ୍ମୋହନ ବଂଶୀପାଣି ।
କି ବୁଦ୍ଧି କରିବି ମୁଁ ଏବେ । ବାଟେ ତୋ ପିତା ମଲା ଯେବେ ।
ଏଥିକୁ କହ ବୁଦ୍ଧି ମୋତେ । ହେ ପୁତ୍ର ପଚାରୁଛି ତୋତେ ।
ତା ଶୁଣି ପ୍ରଭୁ ଚକ୍ରଧର । ଜଗତନାଥ ବିଶ୍ୱମ୍ଭର ।
ବୈକୁଣ୍ଠବାସୀ ଅନ୍ତର୍ଯ୍ୟାମୀ । ଭକତ [illegible] ଦେବସ୍ୱାମୀ ।
ତକ୍ଷଣେ ହୋଇଲେ ବସ୍ୱସ୍ୱେ । ବୋଇଲେ ଶୁଣସି ଗୋ ମାସ୍ୱେ ।
ତୁମ୍ଭେ କିମ୍ପାଇ ଚିନ୍ତା କର । ପଥଶ୍ରମରେ ପିତା ମୋର ।
ନିଦ୍ରା ସେ ଯାଇଛନ୍ତି ସିନା । ତୁ ଯାଇ ତୋଳିଆଣୁ କିନା ।
କୋଳିବୁ ଏକା ପୁତ୍ର ଗୁଡ଼ । କିମ୍ପା ଏଠାରେ ଅଛୁ ପଡ଼ ।
ବହନ ଉଠ ଘର ଯିବ । ପୁତ୍ର ଯେ ତେଣେ କାନ୍ଦୁଥିବ ।
ଉଠାଇ ଘେନଆସ ତାତ । ବହନ ଚଳିଯାଅ ମାତ ।
ପୁତ୍ର ଶ୍ରୀମୁଖୁଁ ଏହା ଶୁଣି । ଅତି ଆନନ୍ଦେ ସେ ତରୁଣୀ ।

ଚଳିଣ ଗଲା ଅତି ବେଗେ । ମିଳିଲା ନିଜ ସ୍ୱାମୀ ଆଗେ ॥
ଦେଖିଲା ପିଣ୍ଡେ ପ୍ରାଣ ନାହିଁ । ଅଙ୍ଗନେ ପଡ଼ିଣ ଅଛଇ ॥
ହସ୍ତ ଦେଇଣ ତାର ମାଥ । ବୋଇଲା ଉଠ ପ୍ରାଣ ନାଥ ॥
ଏକା ପୁତ୍ରକୁ ଘୁଡ଼ ମୁହିଁ । ଆସିଛୁ କେହ୍ନେ ସଙ୍ଗେ ନାହିଁ ॥
ଏବେ ବହନ ଯିବା ସ୍ଥଳ । ସେ ପୁତ୍ର ସେବା ଆମ୍ଭ ମୂଳ ॥
ଏମନ୍ତ ବୋଲୁଁ ସେ ଯୁବତୀ । ପ୍ରାଣ ପାଇଲା ନିଜ ପତି ॥
ନିଦ୍ରୁଁ ଉଠିଲା ପ୍ରାୟେ ହୋଇ । ଚକ୍ଷୁ ମିଳିଣ ଦେଲା ଚାହିଁ ॥
ପାରୁଶେ ନିଜ ନାରୀ ଦେଖି । ବୋଇଲା ଶୁଣ ଆଗେ ସଖି ॥
ତୁ କିମ୍ପା ଏଥିକୁ ଆଇଲୁ । କହ ମୋ ପୁତ୍ରକୁ କି କଲୁ ॥
ଏହା କହନ୍ତେ ନିଜ ଭର୍ତ୍ତା । ନାରୀ କହିଲା ସବୁ କଥା ॥
ତହୁଁ ଉଭୟେ ଦେନି ପ୍ରାଣୀ । ଚଳିଲେ କୃଷ୍ଣ ଗୁଣ ଗୁଣି ॥
ପ୍ରବେଶ ହେଲେ ନିଜପୁର । ଯାଇଣ ଶ୍ରୀକୃଷ୍ଣ ଛାମୁର ॥
ଯେବା ଅପୂର୍ବ ଦ୍ରବ୍ୟମାନ । ପୁତ୍ରରେ କରି ନିବେଦନ ॥
ଅତି ଆନନ୍ଦ ଭାବ ଭୋଳେ । ଚୁମ୍ବନ ଦେଲେ ଧରି କୋଳେ ॥
ଏକକୁ ଆରେକ ଛଡ଼ାଇ । ହୃଦରେ ଭିଡ଼ି ଚୁମ୍ବ ଦେଇ ॥
ଅତି ଆନନ୍ଦେ ପୁତ୍ର ନେଇ । ସେ ନିଜ ଆସନେ ବସାଇ ॥
ପତି ପତ୍ନୀ ଯେ କୋଟିଗୁଣେ । ସେବିଲେ ଶ୍ରୀକୃଷ୍ଣ ଚରଣେ ॥
ଏମନ୍ତେ ଦିବସ ଶେଷରେ । ରାତ୍ରେ ଶୟନ ସମୟରେ ॥
ବୋଇଲା ଗଙ୍ଗାଧର ଦାସ । ହେ କୃଷ୍ଣ କମଳା ବିଳାସ ॥
ଅଶେଷ ଜୀବର କରତା । ଚତୁର୍ବର୍ଗ ଫଳ ଦାତା ॥
ତୁମ୍ଭଙ୍କୁ ପୁତ୍ର କରି ପାଇ । ମୋ କଷ୍ଟ ନ ଗଲା ଜମାଇଁ ॥
ଏ ବୃଦ୍ଧକାଳେ ଗ୍ରାମ ଦେଶ । ବୁଲି ମୁଁ ନ ଗଲେ ଅବଶ୍ୟ ॥
ଭୋଜନ ନ ମିଳେ ଆମ୍ଭଙ୍କୁ । କେ ଅଛି ଆହା ବୋଲିବାକୁ ॥
ଏମନ୍ତ ବୋଲନ୍ତେ ପିତର । ତାହା ଜାଣିଲେ ଚକ୍ରଧର ॥
ଶ୍ରୀକୃଷ୍ଣ ହୃଦଗତେ ବିଜେ । ହସି ବୋଲନ୍ତି ଦେବରାଜେ ॥
ହେ ତାତ ମାତ ଏବେ ଶୁଣ । ଚିନ୍ତା କରିବା ଅକାରଣ ॥

ମୋ ପର ପୁତ୍ର ଥାଉଁ ଥାଉଁ । ଛଡ଼େ କାହାକୁ ଭସ୍ମ ଆଜ ।
ଯାହା ବାଞ୍ଛିତ ତୁମ୍ଭ ମନେ । ତାହା ମିଳିବ ସନ୍ନିଧାନେ ।
ଏକଥା ଅଟଇ ପ୍ରମାଣ । ସଂଶୟ ନାହିଁ ଏଥେ ଜାଣ ।
ଏବେ ଗୋ ବାଞ୍ଛା ସିଦ୍ଧ ହେଉ । ତୋ ଘରେ ଧନ ପୂରିଯାଉ ।
ଏମନ୍ତ ଆଜ୍ଞା ତାକୁ ଦେଇ । ମନୁଷ୍ୟ ମତେ ଭାବଗ୍ରାହୀ ।
ତତ୍କ୍ଷଣେ ହେଲେ ଅନ୍ତର୍ଦ୍ଧାନ । ପିଅରି ଶୁଣି ଏ ବଚନ ।
ଉଠି ଧାଇଁଲା ବେଗ ହୋଇ । ଦେଖିଲା ପୁନ ଘରେ ନାହିଁ ।
ତତ୍କ୍ଷଣେ ଦେଖିଲା ଭୁବନ । ପୂରି ଅଛଇ ବସ୍ତୁ ଧନ ।
ପୁତ୍ରକୁ ନ ଦେଖି ନୟନେ । ଝୁରଇ କଲ୍ପ ତାର ମନେ ।
ଯେ ହରି ବାଞ୍ଛା କଳ୍ପତରୁ । ଯାହା ମହିମା ମହାମେରୁ ।
ଭକତଜନେ ଦୟା ତାର । ଜସ ହୋଇବ ଧନ ଛାର ।
ବାଞ୍ଛିଲେ ବାଞ୍ଛାଫଳ ପାଇ । ଅଧିକେ ପ୍ରୟୋଜନ ନାହିଁ ॥
ମୁଁ ମୂଢ଼ ମନ୍ଦଭାଗ୍ୟା ଜନ । ଧନର ଲୋଭେ ନାଶ ଗଲି ।
କୃଷ୍ଣଙ୍କୁ ହରାଇଲି ମୋର । ଜସ କରିବ ଧନ ଛାର ॥
ଏମନ୍ତେ ପ୍ରଭୁ ଗୁଣ ଗୁଣି । ରୋଦନ କଲେ ବେନି ପ୍ରାଣୀ ।
ଆହା ଶ୍ରୀକୃଷ୍ଣ କାହିଁଗଲ । ଆମ୍ଭଙ୍କୁ ସଙ୍ଗତେ ନ ନେଲ ॥
ଆମ୍ଭଙ୍କୁ ପଟଳେ ପକାଇ । ଛାଡ଼ି ଯିବାର ନ ଯୋଗାଇ ।
ତୁମ୍ଭର ବିନା ପାପ ଯିବ । ଥାଇଣ କି ଭୋଗ କରିବ ।
ଥାଇ ନ ଥାଇ ଏ ଜୀବନ । ଯେବେ ଛାଡ଼ିଲ ମୋ ନନ୍ଦନ ।
ଏମନ୍ତ ବୋଲି ଗଙ୍ଗାଧର । କୃଷ୍ଣ ସୁମରି ଶତେବାର ।
ପ୍ରାଣ ଛାଡ଼ିଲା ଭାବ ଶୋକେ । ତା ଦେଖି ପତ୍ନୀ ଧଇ ଶୋକେ ।
ବୋଇଲା ଧିକ ଏ ଜୀବନ । ଯେବେ ଛାଡ଼ିଲ ମୋ ନନ୍ଦନ ॥
ଆବର ଗଲେ ପତି ମୋର । କୃଷ୍ଣ ସୁମରି ଶତେବାର ।
ପତି ପୁତ୍ର ହେଲେ ଅନ୍ତର । ଆଉ କି ପ୍ରୟୋଜନ ମୋର ।
ଏ ଜୀବ ଥିବା କି କାରଣ । ଯିବଇଁ ସ୍ୱାମୀର ସଙ୍ଗେଣ, ।
ଯୁବତୀମାନଙ୍କର ଧର୍ମ । କରିବ ଉଚିତ ସେ କର୍ମ ।

ଅନଳ ଜାଳ ପତି ସଙ୍ଗେ । ପଶିବ ତହିଁ ମଧ୍ୟେ ବେଗେ ॥
ଏମନ୍ତ ବଚନରୁଁ ସୁନ୍ଦରୀ । ତକ୍ଷଣେ ପାହିଲା ଶର୍ବରୀ ॥
ଦିବସ ଦେଖି ସେ ଯୁବତୀ । ଯେତେକ ଧନ ତା ସମ୍ପତ୍ତି ॥
ହରି କୃପାରୁ ହୋଇଥିଲା । ଅନେକ ବସ୍ତ୍ର ହସ୍ତେ ଦେଲା ॥
ଦୁଃଖୀ ଦରିଦ୍ର ସାଧୁଜନେ । ଧନ ଯେ ଦେଲା ଶୁଦ୍ଧମନେ ॥
ଯେତେକ ବସ୍ତୁ ତାର ଥିଲା । ରେଣୁ ପ୍ରମାଣେ ନ ରଖିଲା ॥
ସକଳ ଧନ ଦେଲା ସାରି । ସ୍ୱାମୀଙ୍କ ସଙ୍ଗତରେ ଧରି ॥
ନାନା ଉତ୍ସବ କରାଇଲା । ଗ୍ରାମ ବାହାରେ ଚଳିଗଲା ॥
ଚନ୍ଦନ କାଷ୍ଠେ ଅଗ୍ନି ଜାଳି । ଅନେକ ଘୃତ ତହିଁ ଢାଳି ॥
ଘୃତ ତୃଣାଦି ଇନ୍ଧନ । ପାଇ ଜଳିଲା ଅଗ୍ନି ହୋମ ॥
ଅତି ପ୍ରଖର ଶିଖାନଳ । ଘୋଟିଲା ଗଗନ ମଣ୍ଡଳ ॥
ସେ ମହାଅଗ୍ନି ତେଜ ପାଇ । ପାରୁଶେ ରହି ନ ହୁଅଇ ॥
ଏମନ୍ତ ସମୟରେ ନାରୀ । ଯେ ବିଧିମତେ ସ୍ନାନ କରି ॥
ଅନେକ ମତେ ସଜ ହୋଇ । ମୁଖେ ଶ୍ରୀହରି ନାମ ଗାଇ ॥
ପତିଙ୍କ ଘେନି ଅତି ତୋଷେ । ମିଳିଲା ଅଗ୍ନିକୁଣ୍ଡ ପାଶେ ॥
ବୋଇଲା ନମୋ ବୈଶ୍ୱାନର । ନମସ୍ତେ ଚନ୍ଦ୍ର ଦିବାକର ॥
ନମସ୍ତେ ଦଶଦିଗପାଳ । ନମୋ ବସୁଧା ଆଖଣ୍ଡଳ ॥
ନମୋ ବିଧାତା ହରିହର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ଶରଣ ଗଲି ରଖ ମୋତେ । ମୁଁ ଯିବି ସ୍ୱାମୀର ସଙ୍ଗତେ ॥
ଅନଳ ମଧ୍ୟେ ଦେବି ଝାସ । ନ ଲାଗୁ ଆତ୍ମହତ୍ୟା ଦୋଷ ॥
ଏମନ୍ତ ବୋଲି ଧାନ୍ତିକାରେ । ପତିଙ୍କ ଘେନି ସଙ୍ଗତରେ ॥
ବୈକୁଣ୍ଠପୁର ଅନୁସରି । କୁଣ୍ଡେ ଶ୍ରୀକୃଷ୍ଣ ନାମ ଧରି ॥
ସମସ୍ତେ ଦେଖୁଁ ଦେଖୁଁ ତହିଁ । ଅନଳେ ପଡ଼ିଲେକ ଡେଇଁ ॥
ଏମନ୍ତ ସମୟରେ ଶୁଣ । ଲକ୍ଷ୍ମୀ ସହିତେ ନାରାୟଣ ॥
ତାରେ କରୁଣା କଲେ ଆସି । ଅନଳକୁଣ୍ଡ ମଧ୍ୟେ ପଶି ॥
ସେ ପତି ପତ୍ନୀ ପ୍ରାଣହରି । ରଥେ ବସାଇ ଦେବଙ୍କର ॥

ଅନନ୍ତ ହୋଇଲେ ବାହାର । ଶୁଭିଲା ଜୟ ଜୟକାର ॥
ଝଟକ ବିଦ୍ୟୁ ପ୍ରାୟେ ଦିଶି । ଗଗନ ମଧ୍ୟେ ଯାଇ ମିଶି ॥
ତାହା ଦେଖିଣ ସର୍ବ ନର । ଡାକିଲେ ଧନ୍ୟ ଗଙ୍ଗାଧର ॥
ଧନ୍ୟ ତୋ ପତ୍ନୀ ତୋର ଭାବ । ବ୍ରହ୍ମାଣ୍ଡ ମଧ୍ୟରେ ନ ଥିବ ॥
ଏମନ୍ତ ବୋଲି ଯେତ୍ତାମତେ । ପ୍ରଶଂସା କରି ଅପ୍ରମିତେ ॥
ଚଳିଣ ଗଲେ ଯେଝାପୁର । ଚିତ୍ତେ ଚମତ୍କାର ଭାବ ତାର ॥
ଶୁଣ ସୁଜନେ ହେଜୁ ଦେଇ । ଏ ଦାର୍ଢ୍ୟଭକ୍ତି ଅଟଇ ॥
ସୁଦୃଢ଼ଚିତ୍ତେ ଯେଉଁ ଜନ । କରନ୍ତି ଶ୍ରବଣ ପଠନ ॥
ଜନ୍ମ ମରଣ ବାଧା ନାହିଁ । ବସିବେ ବିଷ୍ଣୁ ଲୋକେ ଯାଇଁ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ବୋଲଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ବିଶ୍ୱାସ ବିନା କର୍ମ ଯେତେ । ଫଳ ନ ଫଳେ କଦାଚିତେ ॥
ଏଣୁ ଶ୍ରୀହରି ପଦ୍ମପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥
ସାଧୁଜନଙ୍କ ପାଦଧୂଳି । ନିରତେ ପଡ଼ୁ ମୋ ମଉଳି ॥
ଏ ଜୀବ ଯିବାକାଳେ ଏକା । ସାଧୁ ଶ୍ରୀକୃଷ୍ଣ ଦୁହେଁ ସଖା ॥
ସୁଜନେ ଏଥି ରସେ ରସ । ଏ ଭବଜଳରେ ନ ଭାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ଗଙ୍ଗାଧର ଦାସ ପତି ପତ୍ନୀ ମୋକ୍ଷଣେ ନାମ ଏକାଦଶୋଽଧ୍ୟାୟଃ ।

—*—

## ତ୍ରୟୋଦଶ ଅଧ୍ୟାୟ

### ବନ୍ଧୁ ମହାନ୍ତି ସମ୍ବାଦ

### ଚୈତନ୍ୟ ଉବାଚ

ହେ ମନ ଶୁଣ ଦିବ୍ୟ ରସ । ପ୍ରଭୁଙ୍କ ମହିମା ଅଶେଷ ॥
ସେ ସାଧୁଜନଙ୍କ ମହିମା । କେ କହିପାରେ ତାର ସୀମା ॥
ଯାଜପୁରରେ ତାର ଘର । ବନ୍ଧୁ ମହାନ୍ତି ନାମ ତାର ॥
ଜାତିରେ ଅଟଇ କରଣ । ତାର କୁଟୁମ୍ବ ତିନିଜଣ ॥

ବେନି ଦୁହିତା ଏକ ସୁତ । ପତ୍ନୀ ତା ସ୍ୱାମୀର ଭକତ ॥
ଏମନ୍ତେ ପାଞ୍ଚଜଣ ଅନ୍ତି । ଭଣ୍ଡ ଯାଚକ ପଣ ନିତ ॥
ଦେଶ ବିଦେଶ ବୁଲିଯାନ୍ତି । ପ୍ରକାଶି କୁଟୁମ୍ବ ପୋଷନ୍ତି ॥
ଏକ ଦିନକୁ ଆର ଦିନ । ଘରେ ତା ନ ଥାଇ ଭୋଜନ ॥
ସର୍ବଦା ସଦାନନ୍ଦମୟେ । ଦୁଃଖକୁ ଶୋଚନା ନ ଥାଏ ॥
ଏଣୁ ଶ୍ରୀହରି ପାଦେ ମତି । ନିରତେ ସାଧୁଜନେ ପ୍ରୀତି ॥
ପ୍ରଭୁ ମହିମା ଗୁଣମାନ । ନିରତେ ରଟଇ ବଦନ ॥
କର୍ଣ୍ଣରେ ଶୁଣି ହୃଦେ ଚିନ୍ତି । ଏଣୁ ଆନନ୍ଦ ତାର ମତି ॥
ସକଳ ଜୀବେ ତାର ଦୟା । ବାନ୍ଧବ ଜନେ ସେ ନିର୍ମାୟା ॥
ହରି ଭକତେ ମହାଲସ୍ତ । ସତ୍ୟ ଧାର୍ମିକ ନିସ୍ପୃହ ॥
ସଂସାରକର୍ମେ ସେ ଉଦାର । ଜାଣଇ ନାମ ଏକ ସାର ॥
ସତ୍ୟରେ ଭଜୁଥାଇ ନିତ୍ୟେ । ଧନ ବଞ୍ଚଇ ଦୁଃଖ ସୁଖେ ॥
ଏମନ୍ତେ କେତେଦିନ ଗଲା । ଦଇବେ କାଳାର ପଡ଼ିଲା ॥
ପ୍ରାଣୀଙ୍କି ନ ମିଳେ ଭୋଜନ । ଦୁର୍ଭିକ୍ଷେ ମଲେ ବହୁଜନ ॥
ଯହୁଁ ଦେଖିଲେ କୁଢ଼ କୁଢ଼ । ହୋଇଣ ପଡ଼ିଲେକ ମଢ଼ ॥
ସକଳ ଦେଶେ ଡକା ବୋବା । ଆଉ କେ ଅନ୍ନ ଦେବ ଅବା ॥
ବନ୍ଧୁ ମହାନ୍ତି ନାନାମତେ । ବୁଲିଣ ଗ୍ରାମ ପାଞ୍ଚ ସାତେ ॥
କାହିଁ ସେ କିଛି ନ ପାଇଲା । ନିସ୍ତେଜେ ଲେଉଟି ଅଇଲା ॥
ବସିଲା ନିଜଗୃହେ ଯାଇ । ଚିନ୍ତିଣ ପ୍ରଭୁ ଭବଗ୍ରାହୀ ॥
ଏହି ସମୟେ ପତ୍ନୀ ତାର । କହିଲା ପତିର ସୁମୁର ॥
ବୋଇଲା ଶୁଣ ପ୍ରାଣନାଥ । ବାଳକେ ହୋଇଲେ ଅନାଥ ॥
ପୁଅ ଦୁହିତା ଅସମ୍ଭାଳ । ଭୋଜନ ନ ପାଇ ଆକୁଳ ॥
ଯେତେ ଉଞ୍ଛାଳ ମୋତେ କରି । କେ ସହୁ ମାତା ଦେହ ଧରି ॥
ଏଥିକୁ କହ କି ଉତ୍ତର । କି ବୁଦ୍ଧି କରିବା ଏଥର ॥
ମୋହର ସଖା ସାହା ନାହିଁ । ଭାଇ ମଇଜା ବାପ ଭାଇ ॥
ତୁମ୍ଭର ବନ୍ଧୁ ଇଷ୍ଟଧର । ପ୍ରୀତି ମଇତ୍ର ସହୋଦର ॥

ଥିଲେ ନିକଟେ ଦୂରଦେଶେ । ଚାଲ ହେ ଯିବା ତାଙ୍କ ପାଶେ ॥
କରିଣ ନାନାମତେ ସେବା । ଏ କାଳ କାନ୍ତାରୁ ବଞ୍ଚିବା ॥
ତା ଶୁଣି ବୋଇଲେ ନିଜ ପତି । ମୋ ବାଣୀ ଶୁଣରେ ସୁଦତି ॥
ତୁ ଯାହା ପଚାରିଲୁ ମୋତେ । ମୁଁ ଏବେ କହୁଅଛି ତୋତେ ॥
ବନ୍ଧୁ ସୋଦର ମୋର ନାହିଁ । ମୁଁ ବଡ଼ ଅନାଥ ଅଟଇ ॥
ଏକା ମୋ ବନ୍ଧୁ ଜଣେ ଅଛି । ବହୁତ ଦୂରରେ ରହିଛି ॥
ଏଠାକୁ ଦଶ ଯୂଣ ଠାରେ । ଘର କରିଛି ଦ୍ୱାରକାରେ ॥
ପୁରୁଷ ମାନଙ୍କ ଉତ୍ତମ । କେହି ନୁହନ୍ତି ତାଙ୍କୁ ସମ ॥
ଆବର ଭାଗ୍ୟବନ୍ତ ପଣେ । ବ୍ରହ୍ମାଣ୍ଡେ ନାହିଁ ଅନ୍ୟଜଣେ ॥
ଯାଇ ପଶିଲେ ତାଙ୍କଠାଏ । ଦୁଃଖ କା ଛାଡ଼ିବ ଥୋକାଏ ॥
ତା ଶୁଣି ଆନନ୍ଦ ସୁନ୍ଦରୀ । କହଇ ସ୍ୱାମୀ କର ଧରି ॥
ହେ ନାଥ ମୋର ବୋଲକର । ପୃଥୁ ଗୋଟିକ କୁମ୍ଭେ ଧର ॥
ଏକ ଦୁହିତା ମୋର ଭାଗେ । ଆରେକ ଚଳାଇବା ଆଗେ ॥
ଘରେ ପଦାର୍ଥ ଅଛି ଯେତେ । ପଣତେ ବାନ୍ଧି ଦିଅ ମୋତେ ॥
ବହନ ହୋଇ ଚାଲ ଯିବା । ନୋହିଲେ ସମସ୍ତେ ମରିବା ॥
ପତ୍ନୀ ମୁଖରୁ ଏହା ଶୁଣି । ବନ୍ଧୁ ମହାନ୍ତି ମନେ ଗୁଣି ॥
ନେତ୍ର ସଫଳ ହେବ ମୋର । ଦେଖିବି ବ୍ରହ୍ମାଣ୍ଡ ଠାକୁର ॥
ଶ୍ରୀ ବଳଭଦ୍ରଦେବ ଦେଖି । ସୁଫଳ କରିବି ମୁଁ ଆଖି ॥
ଏମନ୍ତ ବିଚାରିଣ ଚିତ୍ତେ । ପୃଥୁକୁ ଧରିଲା ତ୍ୱରିତେ ॥
ପତ୍ନୀ କହିଲ ଯେଉଁରୂପେ । ତାହାକୁ ଦେଲା ସେହି ରୂପେ ॥
ପୃଥୁକୁ ବସାଇଣ କାନ୍ଧେ । ଚଳିଲେ ପରମ ଆନନ୍ଦେ ॥
ପଥରେ ଚାରିଦିନ ରହି । ମିଳିଲେ ଦ୍ୱାରକାରେ ଯାଇଁ ॥
ପ୍ରବେଶ ସିଂହ ଦ୍ୱାରଠାର । ଦେଖିଲେ ବେତ୍ରୁଆ ଅପାର ॥
ବହୁତ ହୋଇଛି ଆକଟ । ମାଛି ପଶିବା ନାହିଁ ବାଟ ॥
ସେ ଦ୍ୱାରେ ପଶି ନ ପାରିଲେ । ଦୂରରୁ ରହି ଅନାଇଁଲେ ॥
ଉନ୍ନତ ପ୍ରାସାଦକୁ ଦେଖି । ସୁଫଳ କଲେ ଚର୍ମ ଆଖି ॥

ତହୁଁ ଚଳଲେ ଅତି ସୁଖେ । ମିଳଲେ ବଣିକର ପାଶେ ॥
ବସିଲେ ପେଜ ନଳାଠାରେ । ଯେ ଗୋରୁ ଚାଣ୍ଡଙ୍କ ସଙ୍ଗରେ ॥
ଦେଖି ତା ପତ୍ନୀ ବୋଲେ ତହିଁ । ଏଠାରେ ବସିଲେ କମାଇ ॥
ଦେଖ ହେଉଛି ସନ୍ଧ୍ୟା କାଳ । ଅତି ଅନ୍ଧାର ବେଳୁଁ ବେଳ ॥
ବେଗେ ଚୋ ବନ୍ଧୁ ଘର ଯିବା । ଭୁଞ୍ଜିଣ ଶରୀର ତୋଷିବା ॥
ଅନ୍ନ ନ ଦେଲେ ସେହୁ ପୁଣି । ମାଗିବା ତାହୁଁ ପେଜ ପାଣି ॥
ଏମନ୍ତ ବୋଲନ୍ତେ ସୁନ୍ଦରୀ । ବାଳକ ମାତା ହାତ ଧରି ॥
ଭୋକ ମାତ ଲାଗୁଅଛି ଭୋକ । ଗଲଟି ପ୍ରାଣ ବେଗେ ରଖ ॥
ତା ଶୁଣି ବନ୍ଧୁ କହେ ଧୀରେ । ପୁତ୍ର ଦୁହିତାଙ୍କୁ ଆଗରେ ॥
ଆଜ ଶୁଣିଲି ବନ୍ଧୁ ଘର । ଉଚ୍ଛବ ହେଉଛି ଅପାର ॥
ବହୁତ ଦେଶୁଁ ବନ୍ଧୁମାନେ । ଆସି ଅଛନ୍ତି ତା ଭୁବନେ ॥
ଦ୍ୱାରେ ବେଡୁଆ ଜଗିଛନ୍ତି । ବୁଝି ସଙ୍କୋଳ ଛାଡନ୍ତ୍ୟନ୍ତି ॥
ଯେ ପେଲାପଣ କରିଯାଇ । ମାଡ଼େ ତା ଜୀବନ ଉଡ଼ଇ ॥
ଏଥିକୁ ବିଚାର ତୋ ମନେ । ସୁସ୍ଥ ବଞ୍ଚିବା ଏହି ସ୍ଥାନେ ॥
ପେଜ କୁଣ୍ଡରୁ ପେଜ ଆଣି । ଖାଇ ବଞ୍ଚିବା ପାଞ୍ଚ ପ୍ରାଣୀ ॥
ରଜନୀ ପ୍ରଭାତରୁ ଯିବା । ଏକାନ୍ତେ ବନ୍ଧୁଙ୍କୁ ଭେଟିବା ॥
ସମ୍ମୁରେ ଜଣାଇବା ଦୁଃଖ । ବୋଲିବା ଆମ୍ଭ ପ୍ରାଣ ରଖ ॥
କେବଳ ଅନ୍ନ ବସ୍ତ୍ର ଦେଇ । ଏକଥା ମନକୁ ଯୋଗାଇ ॥
ଶୁଣି ଯୁବତୀ ବୋଲେ ହେଉ । ଆଣ ହୋ ପେଜ ପ୍ରାଣ ରହୁ ॥
ବନ୍ଧୁ ଚଳିଲ ଏହା ଶୁଣି । ଛଡ଼ା କୁଡ଼ୁଆ ଗୋଟି ଆଣି ॥
ସେ ପେଜ କୁଣ୍ଡରେ ବୁଡାଇ । ପତ୍ନୀକି ଦିଅଇ ବଢ଼ାଇ ॥
ପୁତ୍ର ଦୁହିତା ପତ୍ନୀ ଆଗେ । ପେଜ ପିଇଲେ କ୍ଷୁଧାସ୍ତବେ ॥
ଉଦର ଭରି ସୁସ୍ଥ ହୋଇ । ପଡ଼ିଲେ ସେହିଠାରେ ଶୋଇ ॥
ବନ୍ଧୁ ମହାନ୍ତି ଅତି ତୋଷେ । ଲୟୁ ଲଗାଇ ପ୍ରଭୁ ପାଶେ ॥
ବୋଇଲ ନମୋ ଦାରୁ ହରି । ଚର ଅଚରେ ଅଛ ପୂରି ॥
ସକଳ ଜୀବେ ପଡ଼ ଦାତା । ତୁମ୍ଭହୁଁ ନାହିଁ ନା କରତା ॥

ମୁଁ ଏଥିଁ ନୁହଇ ବାହାର । ତୁ ନାଥ ଯାହା ଇଚ୍ଛା କର ।
ପ୍ରଭୁ ଏତାରେ କଲେ ହେଳା । ବୁଢ଼ୀଙ୍କ ଚନ୍ଦ୍ରାନନେ ଭେଳା ।
କ୍ଷୁଧା ଅନଳେ ଗାଅଁଜଣ । ଘୋଡ଼ ମରନ୍ତୁ ଅକାରଣ ।
ତୋର କରୁଣା ବାରି ଦେଇ । ଶୀତଳ କର ସବସ୍ଥାଇ ।
ଏମନ୍ତ ବେଳେ ସୁପ୍ତ କଲ । ପଥ ଶ୍ରମରେ ନିଦ୍ରାଗଲ ।
ଏଥି ଉତ୍ତରୁ ଶୁଣ ମନ । ବଢ଼ିଲ ହେବା ପୂଜା ମାନ ।
ସନ୍ଧି ଧୂପ ଦୀପ ଅବକାଶ । ଭଣ୍ଡାର ଲାଗି ଆଦ ବେଶ ।
ବଡ଼ ସିଂହାର ପୁଷ୍ପାଞ୍ଜଳି । ଶେଯାର ଖଟ ଶେଯ ତୁଳି ।
ସକଳ ସେବା ବଢ଼ାଇଲେ । ଭଣ୍ଡାର ଘର ମୁଦ ଦେଲେ ।
ଘାଟ ଦ୍ୱାରୁ ଧରି ଯୋଗେ । ଦେଉଳ ଶୋଧିଲେ ସେବକେ ।
ସକଳ କବାଟ ପକାଇ । ଦଶମ ଶାଙ୍କୋଳି ଲଗାଇ ।
କଞ୍ଚି ପକାଇ କାଠି ଧରି । ଗଲେ ଭଣ୍ଡାର ଅଧିକାରୀ ।
ଆଉ ସେବକ ଯେତେ ଥିଲେ । ଯେ ଯାହା ପୁରେ ଚାଲିଗଲେ ।
ଏଥି ଉତ୍ତରୁ ଶୁଣ ସର୍ବ । ଯେ ପ୍ରଭୁ କମଳା ବଲ୍ଲଭ ।
ସକଳ ଜୀବ ଚିନ୍ତାମଣି । ଦୀନ ବାନ୍ଧବ ଚକ୍ରପାଣି ।
ଅନନ୍ତ ବ୍ରହ୍ମାଣ୍ଡ କରତା । ଲାଗିଲା ମନେ ଭକ୍ତ ଚିନ୍ତା ।
ହୋଇ ଅତ୍ୟନ୍ତ ଛନ୍ନ ଛନ୍ନ । ଦେଉଳେ ବସେ ଭଗବାନ ।
ଭଣ୍ଡାର ଘରୁ ରତ୍ନ ଥାଳି । ବେଗେ ଧଇଲେ ବନମାଳୀ ।
ତହିଁ ପୂରଇ ଥଳି ଅନ୍ନ । ନାନାଦି ପ୍ରକାରେ ବ୍ୟଞ୍ଜନ ।
ଆବର ଅପମ୍ୟାଲୁ ଗଜା । ନାନା ପ୍ରପୂର୍ଣ୍ଣ ଭୋଗ ଖଜା ।
ଯେ କାନ୍ତି କାକରା ଆଇସା । ଘୃତରେ ହୋଇଅଛି ମିଶା ।
କ୍ଷୀରି ଖେଚଡ଼ି ସର ପଣା । ଧରି ଚଳିଲେ ଜଗଜ୍ଜିଣା ।
ସ୍ୱର୍ଣ୍ଣ ହୋଇଛି ଘଡ଼ି ସାତ । ଦକ୍ଷିଣ ଦ୍ୱାରେ ଉପଗତ ।
ଡାକଲେ ବନ୍ଧୁ ନାମ ଧରି । ତା ଶୁଣି ବନ୍ଧୁ ହେଲ୍ଲୁ କର ।
ବୋଇଲା ଶୁଣ ଆଗୋ ସନ୍ତ । ଏ ସମୟେ କେତେ ବନ୍ଧୁ ନାହିଁ ।
କେ ଅବା କାହାକୁ ଡାକୁଛି । ମୁଁ କମ୍ପା ଯିବ ଗୋ ମୃଗାକ୍ଷ ।

ଏମନ୍ତ ବୋଲନ୍ତ ଭକ୍ତ ହୋନ୍ତେ । ଶୁଣି ଡାକଲେ ଜଗନ୍ନାଥେ ॥
ଆଜ୍ଞେ ଡାକଲେ ନାରାୟଣ । ଯାଜପୁରିଆ ବନ୍ଧୁ ଶୁଣ ॥
କୁଟୁମ୍ବ ଯେତେ ସଙ୍ଗତରେ । ରହିଛନ୍ତି ପେଜନଳା ଠାରେ ॥
ବହନ ହୋଇ ଆସ ପାଶ । ଡାକୁଅଛୁ ମୁଁ ଧରି ଗ୍ରାସ ॥
ତା ଶୁଣି ବନ୍ଧୁ ଅତି ତୋଷେ । ଯାଇ ମିଳିଲା ପ୍ରଭୁ ପାଶେ ॥
ବିପ୍ରସ୍ୱରୂପ ଗୋଟି ଧରି । ବଢ଼ାଇ ଦେଲେ ଅନ୍ନଥାଳୀ ॥
ବୋଇଲେ ଭୁଞ୍ଜ ସୁସ୍ଥ ହୋଇ । ଜାଣ ସକାଳୁ ତୋତେ ମୁହିଁ ॥
ଖଞ୍ଜିବ ଅନ୍ନ ବସ୍ତ୍ର ଯେତେ । ଚିନ୍ତା ନ କର ତୁମ୍ଭେ ଚିତ୍ତେ ॥
ଏମନ୍ତ କହି ଭଗବାନ । ତତ୍କ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ବନ୍ଧୁ ସେ ଅନ୍ନ ଦେଖନ୍ତଲେ । କୁଟୁମ୍ବ ଯାକ ଉଠାଇଲେ ॥
ଅନ୍ନ ସେ ଥୋଇ ମଧ୍ୟଗତେ । ବେଢ଼ିଣ ବସିଲେ ସମସ୍ତେ ॥
ପତ୍ନୀ ଦୁହିତା ସେ ନନ୍ଦନ । ସମସ୍ତେ କଲେକ ଭୋଜନ ॥
ଉଦର ଭରି ସୁସ୍ଥ ହୋଇ । ଥାଳୀ ଧଇଲେ ବେଗ ହୋଇ ॥
କବାଟ ଧରି ଧୀରେ ଦେଲ । ଡାକିଲେ ଥାଳୀ ନିଅ ବୋଲି ॥
କେତେହେଁ ବେଳ ଡାକ ହେଲେ । କେ କେଣେ କେହୁ ନ ଶୁଣିଲେ ॥
ନିରସ ହୋଇ ଧରି ଥାଳୀ । ବନ୍ଧୁ ଲେଉଟି ଗଲେ ଚଳି ॥
ଛିଣ୍ଡାକନାରେ ଗୁଡ଼ାଇ । ନେଥାଇଲେ ଶିମସ୍ଥାନେ ନେଇ ॥
ଏଥିଉତ୍ତାରୁ ନିଶି ଶେଷ । ଉଦୟ ହୋଇଲ ପ୍ରବେଶ ॥
ଜାଗ କୁଳୁଠ ହେଲେ ସବ । ଫସାର ଢଶିଲ ସୁଲଭ ॥
ସେବକ ଶୁଚିମନ୍ତ ହୋଇ । ଗଲେ ଶ୍ରୀହରି ସେବା ପାଇଁ ॥
କବାଟ ଫିଟାଇ ପଶିଲେ । ଯେ ଯାହା ସେବାରେ ଲାଗିଲେ ॥
ଭଣ୍ଡାର ପଠାଇଲେ ଯାଇଁ । ଦେଖିଲେ ରତ୍ନଥାଳୀ ନାହିଁ ॥
ସମସ୍ତେ ହୋଇଲେ ଚାଟକା । ବେଢ଼ଲେ ପଢ଼ିଲକ ଡାକା ॥
ଭଣ୍ଡାର ସୂପକାର ଧରି । ବାନ୍ଧିଲେ ଯୋଡ଼ି ଯୋଡ଼ି କରି ॥
ବାଜିଲ ବେତ ଯେ ଅନେକ । ଧାଇଁଲେ ବୃନ୍ଦବତେ ଲୋକ ॥
ପ୍ରଭୁଙ୍କ ଘଟସୂତ୍ର ମାନ । କେ ତାହା କରିପାରେ ଆନ ॥

ଦଇବଯୋଗେ ବନ୍ଧୁ ତାର । କୁଟୁମ୍ବ ଘେନ ସଙ୍ଗତର ॥
ଶୋଇଛନ୍ତି ଶିମସ୍ଥାନେ ଦେଇ । ଲୋକେ ଦେଖିଲେ ତାହା ଯାଇ ॥
ଛିଣ୍ଡା କନାରେ ରତ୍ନଥାଳୀ । ଫଟିଣ ଦିଶୁଅଛି ଝଳି ॥
ଯୋଗେ ଅରୁଣ ତେଜ ପାଇ । ଅଧିକେ ତେଜ ବରଜଇ ॥
ବନ୍ଧୁ ମଦ ନ୍ତ ଶିମସ୍ଥାନେ । ଥାଳୀ ଦେଖିଲେ ଲୋକମାନେ ॥
ବୋଇଲେ କାହିଁର ଏ ଚୋର । ପଳାଇ ଯିବ ବେଗେ ଧର ॥
ଏମନ୍ତ ବୋଲି ଜଣେ ଯାତେ । ବନ୍ଧ କୁ ଧଇଲେ ତୁରତେ ॥
କର୍କଶ ବାନ୍ଧେଣୀ ବାନ୍ଧିଲେ । ଥାଳୀ ଛଡ଼ାଇ ଘେନଗଲେ ॥
ଅନେକ ମାଡ଼ହିଁ ମାଇଲେ । ପାଦେ ସାଙ୍କୋଳି ଲଗାଇଲେ ॥
ତା ଶୁଣି ବନ୍ଧୁ ଯେ ବୋଲଇ । ମୋହର କଛି ଦୋଷ ନାହିଁ ॥
ଭକ୍ତ ଯେ ଦଶଘଡ଼ିଠାରେ । ଦେଇଛନ୍ତି ଏକ ବସ୍ତ୍ରବରେ ॥
ରତ୍ନଥାଳୀରେ ଅନ୍ନଭର । ମୋତେ ଯେ ଦେଲେ ଡ଼ାକକରି ॥
ତା ତହୁଁ ଆଣିଲଇଁ ମୁହିଁ । କୁଟୁମ୍ବ ଯାକ ସୁଦ୍ଧେ ଖାଇ ॥
ଥାଳୀ ଯେ ଲେଉଟାଇ ନେଲ । କେତେତେହେଁ ତୁମେ ମୁଁ ଡାକଲି ॥
ତେଣେ ଯେ ନ ଶୁଣିଲେ କେହି । ଘେନ ଅଇଲ ଲେଉଟାଇ ॥
ଏଥିରେ କେଉଁ ଦୋଷ ମୋର । ଜଡ଼ କେମନ୍ତ ହେଲ ଚୋର ॥
ବିନା ଦୋଷରେ ଦଣ୍ଡ ଦେଲେ । ବୁଝିବେ ମୋର ପ୍ରଭୁ ଥିଲେ ॥
ପତ୍ନୀ କହିଲେ ଏହିମତେ । କେହି ତା ନ ଗଲେ ପରତେ ॥
ବନ୍ଧୁକୁ ବାନ୍ଧି ଘେନଗଲେ । ବନ୍ଦୀ ମନ୍ଦରେ ବନ୍ଦୀ କଲେ ॥
ନାନାମତରେ ଦେଲେ ଗାଳି । ଯେ ଯାହାମତେ ଗଲେ ଚଳି ॥
ବନ୍ଧୁ ରହିଲେ ମାମୁଁ ଘରେ । ଚାଉ ନବେଶି ପ୍ରଭୁଠାରେ ॥
ବୋଲେ ମୁଁ ପାପୀ ଅପରାଧୀ । ତୁମ୍ଭେ ଯେ କରୁଣା ବାରିଧି ॥
ବ୍ରହ୍ମାଣ୍ଡ ମଧ୍ୟେ ପାପୀଜନେ । ମୋ ପରି ନାହିଁ ଅନ୍ୟ ଜଣେ ॥
ତୋ ପରି ପତିତ ତାରଣ । ଅଛି କେ ବ୍ରହ୍ମାଣ୍ଡ ମଧ୍ୟେଣ ॥
ଏଣୁ ତୁ ଯାହା କଲେ କର । ଅନ୍ୟେ ଶରଣ ନାହିଁ ମୋର ॥
ଏମନ୍ତ ବୋଲି ଭକ୍ତ ହୁବେ । ଚିନ୍ତିଲ ପ୍ରଭୁ ପଦ୍ମପାଦେ ॥

ଏଥିଉତ୍ତାରୁ ବନ ଶେଷ । ଉତ୍କଳ ହୋଇଲା ପ୍ରବେଶ ॥
ପ୍ରଭୁଙ୍କ ନଟାକର୍ମ ଯେତେ । ସେବକ ସାରିଲେ ତ୍ୱରିତେ ॥
ପଲଙ୍କ ସୁପାତ ପକାଇ । ପ୍ରଭୁମାନଙ୍କୁ ପହୁଡ଼ାଇ ॥
ବେଉଳେ ବେଢ଼ା ନଶୋଧିଲେ । କବାଟ କଳ ଚଳପଲେ ॥
ପ୍ରବେଶ ଯେ ଯାହା ଭୁବନ । ଏଥି ଉତ୍ତାରୁ ଶୁଣ ମନ ॥
ଯେ ପ୍ରଭୁ ଭୃତ୍ୟ ଚିନ୍ତାମଣି । ସର୍ବତ୍ର ବ୍ୟାପିଛନ୍ତି ପୁଣି ॥
ପ୍ରଭୁଗଣଙ୍କୁ ଲୁଚିଯାଇ । ସେବକ ବେଦନା ନ ସହି ॥
ଦେଖନ୍ତୁ ବଳେ ଜଗନ୍ନ ତା । ଲାଗି ଅଛଇ ଭକ୍ତ ଚିନ୍ତା ॥
ତକ୍ଷଣେ ଗୁରୁଡ଼ ଆବେଶେ । ଗଗନମାର୍ଗେ ଉଡ଼ିଯାଇ ॥
ବଳେ ଖୋରଧା ରଥିପୁରେ । ପ୍ରତାପ ରୁଦ୍ରଙ୍କ ମନ୍ଦରେ ॥
ସେ ମହାରାଜା ନୃପସାଇଁ । ପଲଙ୍କେ ନିଦ୍ରା ଅଛୁ ଯାଇଁ ॥
ତାହାଙ୍କ ପାର୍ଶ୍ୱେ ସ୍ୱବଗ୍ରାହ୍ମ । ବଜସ୍ତୁ କଲେ ଖାବ କହି ॥
ସ୍ୱପନମାର୍ଗେ ଆଜ୍ଞା ଦେଲେ । ଶୁଣରେ ରାଜନ ବୋଇଲେ ॥
ତୋ ଘରେ ବନ୍ଧୁ ଆସିଥାଇ । ସେ ନିତ ଉପବାସେ ଯାଇ ॥
ଇତର ଲୋକଙ୍କର ଘରେ । ଲୁଣିଆ ନ ଯାଇ ଭୋକରେ ॥
ତାହାର ଯାଜପୁରେ ଘର । କୁଟୁମ୍ବ ସେନ ସଙ୍ଗତର ॥
ବନ୍ଧୁ ମୋ ଅତ ଶ୍ରଦ୍ଧା ମନେ । ଆସି ସେ ଥିଲା ମୋ ଭୁବନେ ॥
ତାଙ୍କୁ ଭୋଜନ ମୁହିଁ ଦେଲି । ତୋ ବାପା ଗଣ୍ଡି କ ନାଶିଲ ॥
ସେ ରତ୍ନଥାଳୀ ଗୋଟି ମୋର । ଥିଲା ଯେ ବନ୍ଧୁର ପାଶର ॥
ତାହାକୁ ଚୋରର ଦୋଷ ଦେଇ । ଧଇଲେ ତୋର ଲୋକ ଯାଇ ॥
ନିଗଡ଼େ ବାନ୍ଧି ପକାଇଲେ । ଅନେକ ମାଡ଼ହିଁ ମାଇଲେ ॥
ଚରଣେ ସାଙ୍କୋଳି ଲଗାଇ । ରଖିଲେ ବନ୍ଦୀଘରେ ନେଇ ॥
ତା ଦେଖି କୁଟୁମ୍ବ ସକଳ । କେ କନ୍ଦୁ ତାହାଙ୍କ ବିକଳ ॥
ଏଣୁ ମୁଁ କହୁଅଛୁ ତୋତେ । କ୍ଷେତ୍ରକୁ ଯିବୁ ତୁ ତ୍ୱରିତେ ॥
ବନ୍ଧୁକୁ ବନ୍ଦିରୁ ଫିଟାଇ । ଚରଣ ସାଙ୍କୋଳି କଟାଇ ॥
ବନସ୍ତୁ ହୋଇ ପାର୍ଦ ତଳେ । ସ୍ନାନ କରାଇ ତୀର୍ଥଜଳେ ॥

ପିନ୍ଧାଇ ସୁର୍ଣ୍ଣୀନ ଅମ୍ବର । ଖଞ୍ଜିବୁ ନାନା ଅଳଙ୍କାର ॥
ଚନ୍ଦନେ ଖରଶୋଧ ପଣେ । ଶାଢ଼ୀ ଯେ ଦେବୁ ତୁ ଆପଣେ ॥
ବନ୍ଧୁର ପାଞ୍ଜୀ ମୋ ପ୍ରମାଣ । ଏ କଥା ସତ୍ୟ ବୋଲି ଜାଣ ॥
କ୍ଷିରି ଖେଚଡ଼ି ପୁରି ଅନ୍ନ । ଖାଇବନ୍ତେ ଦେବୁ ତୁ ଭୋଜନ ॥
ତେବେ ସେ ସତ୍ୟେ ସୁଖେଥିବୁ । ନୋହିଲେ ନାଶ କଷ୍ଟେ ଯିବୁ ॥
ଆଜ୍ଞେଟି ପ୍ରଭୁ ନାରାୟଣ । କହିଲୁ ସାବଧାନେ ଶୁଣ ॥
ଏମନ୍ତ ବୋଲି ଗୁଟେ ମାଶ । ତକ୍ଷଣେ ଗଲେ ନରହରି ॥
ପ୍ରବେଶ ହେଲେ ନୀଳାଚଳେ । ଏଣେ ଉଠିଲେ ମନ୍ତ୍ରୀପାଳେ ॥
ପ୍ରଭୁ ମହିମା ମନେଗୁଣି । ବାହାରେ ବିଜେ ନୃପମଣି ॥
ପାତ୍ର ମନ୍ତ୍ରୀଙ୍କୁ ଡକାଇଲେ । ସକଳ ବୁଝାଇ କହିଲେ ॥
ତତ୍କ୍ଷଣେ ବାସ ଲଗି ହୋଇ । ବିଜୟ କଲେ ନୃପସାଇଁ ॥
ଏଣେ ଯେ ଦଣ୍ଡବନ୍ଧଠାରେ । ବିଜୟ କଲେ ନୃପବରେ ॥
ବନ୍ଧୁ ପାଶକୁ ବେଗେ ଗଲେ । ବନ୍ଦନ ଫିଟାଅ ବୋଇଲେ ॥
ବନ୍ଧୁକୁ ନେଇ କଲେ କୋଳ । ହୃଦେ ଲଗାଇ ମହୀପାଳ ॥
ବୋଇଲେ ଧନ୍ୟ ମୋ ଜୀବନ । ଦେଖିଲି ତୋହର ବଦନ ॥
ଏମାନେ ଦୋଷ କଲେ ଯେତେ । ସକଳ କ୍ଷମା ଦିଅ ମୋତେ ॥
ଏମନ୍ତ ବୋଲି ଭୁଜ ଧରି । ଶିରେ ଢାଳିଲେ ତୀର୍ଥବାରି ॥
ପିନ୍ଧାଇ ସୁର୍ଣ୍ଣୀନ ବସନ । ଖଞ୍ଜିଲେ ଟଙ୍କା ବରତନ ॥
ଚନ୍ଦନେ ଝରଶୋଧପଣେ । ପାଟ ବାନ୍ଧିଲେ ତତକ୍ଷଣେ ॥
କୁଟୁମ୍ବ ଯାକ ବନ୍ଧୁ ଭୂଲେ । ଅନେକ ପରିତୁଷ କଲେ ॥
ଦକ୍ଷିଣ ପାର୍ଶ୍ୱରେ ଧର । ଟେକାଇ ଦେଲେ ନୃପବର ॥
ଭୋଗ ଖଞ୍ଜିଲେ ମହାସ୍ନେହେ । ଖୁଆଇ ପ୍ରୀତ ନାଶଂ ଯାଏ ॥
ବନ୍ଧୁକୁ ସୁତଛ କସଲ । ପ୍ରଭୁ ସ୍ୱମୂକୁ ଦେଣଯାଇ ॥
ସକଳ ସମର୍ପିଣ କେଲେ । ନୃପତିବର ଚଳିଗଲେ ॥
ବନ୍ଧୁ ରହିଲେ ପ୍ରଭୁପାଶେ । ଅତ୍ୟନ୍ତ ମନର ହରଷେ ॥
କୁଟୁମ୍ବ ଘେନ ସଙ୍ଗତରେ । ଶ୍ରୀଜଗବନ୍ଧୁଙ୍କ ସେବାରେ ॥

ପରମ ଆନନ୍ଦେ ରହିଲେ । ମନକୁ ଚୈତନ୍ୟ କହିଲେ ॥
ଶୁଣ ସୁଜନେ ସୁଭୂଷଣ । ଭକ୍ତ ବତ୍ସଳ ଭଗବାନ୍ ॥
କରନ୍ତି ଏତେ ଦୁଃଖ ଯାଏ । ଯେବା ବିଶ୍ୱାସ କରିଥାଏ ॥
ଭବକୁ ନକଟ ଗୋସାଇଁ । ଅଭାବ ଜନେ ଛୋଟ ନାହିଁ ॥
ଏଣୁ ପାମର ରାମଦାସ । ଶରଣ କମଳା ବିଳାସ ॥
ବନ୍ଧୁ ମହାନ୍ତି ଗୀତ ରସ । ସୁଜନେ ଶୁଣି ହୁଅ ତୋଷ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ପ୍ରାଣୀ କଷ୍ଟ ହତ ॥
ଯେ ଅବା ଶ୍ରଦ୍ଧାମନେ ଶୁଣେ । କି ଅବା ବଦନରେ ଗୁଣେ ॥
ତାର କଳ୍ମଷ ଥିବ ଯେତେ । ରହିବ ନାହିଁ କଦାଚିତେ ॥
ସକଳ କର୍ମେ ଯଶ ହେବ । ଶମନ ଦର୍ଶନେ ନ ଯିବ ॥
ଏ କଥା ଅଟଇ ପ୍ରମାଣ । ସକଳ ଶାସ୍ତ୍ରେ ଏହା ଶୁଣ ॥
ସାଧୁ ଶ୍ରୀକୃଷ୍ଣ କଥା ବିନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥
ଭଣି ଚିନ୍ତଇ ନିଜ ମନେ । ଯାହା କରିବେ ସାଧୁମାନେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ-ଚୈତନ୍ୟ ସମ୍ବାଦେ
ବନ୍ଧୁ ମହାନ୍ତି ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ତ୍ରୟୋଦଶୋଽଧ୍ୟାୟଃ

—*—

## ଚତୁର୍ଦ୍ଦଶ ଅଧ୍ୟାୟ

## ବଳରାମ ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ଶୁଣ ସୁଜନ ଶୁଦ୍ଧଚିତ୍ତେ । ଯାହା ମୁଁ କହୁଅଛୁ ତୋତେ ॥
ଭକତ ଜନ ମଧ୍ୟେ ସାର । ମହିମା ଅପାରୁ ଅପାର ॥
ନାମ ତା ବଳରାମଦାସ । ମହନ୍ତ ସୋମନାଥ ଶିଷ୍ୟ ॥
ପୁରୁଷୋତ୍ତମେ ତାର ଘର । କୁଟୁମ୍ବ ସେହି ସଙ୍ଗତର ॥
ଉତ୍ତମ ଜନେ ଆଶ୍ରେକରି । ନିତି ବୁଲଇ ଭିକ୍ଷାକରି ॥

ଏମନ୍ତେ ବଞ୍ଚୁ ଥାନ୍ତି ଜନ । ଶୋଚନା ନ ଥାଇ ତା ମନ ।
ନଗରେ ହରିପାଦ ଧ୍ୟାୟୀ । ଆନନ୍ଦେ ମତ୍ତ ହୋଇଥାଇ ।
ଗୋଟିଏ ନାମ ଯହୁଁ ଶୁଣେ । କୋଟିଏ ବାଧି ପ୍ରାୟେ ମଣେ ।
ସର୍ବଦା ହରିରସେ ରସେ । ଶ୍ରବଣେ ଶୁଣି ମୁଖେ ଘୋଷେ ॥
ବସଇ ସାଧୁଙ୍କ ସଙ୍ଗର । ସକଳ ଜୀବେ ଦୟା ତାର ।
ଶ୍ରୀ ବାସୁଦେବଙ୍କ ସେବା ଜନେ । ଅନ୍ୟ ନ ଜାଣେ ତାର ମନେ ।
କେବଳ ପ୍ରକୃତ କଣରେ । ନରତେ ଗମେ ବେଶ୍ୟାଘରେ ।
ଚନ୍ଦ୍ରରେ କଳଙ୍କ ଯେସନ । ଅର୍ଜିଲ୍ଲ କଥା ନୋହେ ଆନ ।
ପୂର୍ବ ଅର୍ଜିଲ୍ଲ କର୍ମ ଫଳେ । ନରତେ ବେଶ୍ୟାଘର ତଳେ ।
ଏମନ୍ତେ କେତେଦିନ ଅନ୍ତେ । ଶୁଣ ସୁଜନ ଶୁଦ୍ଧଚିତ୍ତେ ।
ଆଷାଢ଼େ ଶ୍ରୀଗୁଣ୍ଡିଚା ଯାତ । ନିର୍ମାଣ ହେଲ ତିନିରଥ ।
ସୁଭଦ୍ରା ବଳଦେବ ଭୁଲେ । ପ୍ରଭୁ ସମ୍ଭ୍ରମେ ବିଜେ କଲେ ।
ଅଶେଷ ଜନଙ୍କର ସ୍ତୁତେ । ବିଜୟେ ନନ୍ଦିଘୋଷ ରଥେ ।
ଶ୍ରୀନନ୍ଦିଘୋଷ ଡାଳବାରେ । ଆନନ୍ଦ କେ କହୁ ସଂସାରେ ।
ଅଶେଷ ବାଦ୍ୟ ନାଦ ପୁଣି । ଆନନ୍ଦ ହୋଇଲ୍ଲ ଧରଣୀ ।
ଏମନ୍ତ ସମୟରେ ଶୁଣ । ଗଣିକା ମନ୍ଦିରେ ଯାଇଣ ।
ଥିଲେ ଯେ ବଳରାମ ଦାସେ । ମତ୍ତ ହୋଇଣ ବେଶ୍ୟାରସେ ।
ଶ୍ରବଣେ ଶୁଣିଲେ ସେ ଧ୍ୱନି । ଶିରେ ବଜ୍ରତ ଭଳି ବେନି ।
କୋଇଲେ ଧିକ ମୋ ଜୀବନ । ଅଜ୍ଞାନ ବଞ୍ଚିଲେ ମୁଁ ଜନ ।
ପ୍ରଭୁ ମୋ ରଥେ ବିଜେ କଲେ । ଶୋଇ ମୁଁ ଅଛି ବେଶ୍ୟାକୁଳେ ।
ଏମନ୍ତ ବୋଲି ଗଲ୍ଲ ଧାଇଁ । ମିଳିଲ୍ଲ ପ୍ରଭୁପାଶେ ଯାଇଁ ।
ଉଠିଲ୍ଲ ନନ୍ଦିଘୋଷ ରଥେ । କର ନକେଶି ଅଛି ମାଥେ ।
କଳାଶ୍ରୀ ମୁଖକୁ ଅନାଇ । ଅନେକ ମତେ ବାହୁନଇ ।
ସେବକ ଅନାଇଣ ବେଳେ । କ୍ରୋଧରେ ଦାସଙ୍କୁ ବୋଇଲେ ।
କଣ୍ଠେ ତୋ ତାମ୍ବୁଳର ଗାର । କୁଙ୍କୁମେ ଦେହ ଜରଜର ।
ଅତି ଜଘନ୍ୟ ତୋର କାୟେ । ଦିଶୁଛୁ ଖଣ୍ଡିତ ସ୍ତ୍ରୀପ୍ରାୟେ ॥

ସ୍ନାନ ଶଉଚ ତୋର ନାହିଁ । ଥିଲୁ ତୁ ବେଶ୍ୟାଘରେ ଶୋଇ ॥
କପାଁ ତୁ ଚଢ଼ିଲୁ ରଥର । ଲଙ୍କଟପଣ ଘୋଡ଼ୁ ତୋର ॥
କେତେବୋଲେ ତୋତେ ଜ୍ଞାନବନ୍ତ । ଦେଖ ହୋ ପ୍ରଭୁ ଜଗନ୍ନାଥ ॥
ବ୍ରହ୍ମା ଇନ୍ଦ୍ରାଦି ଯାର ପାଖେ । ସେବା କରନ୍ତି ଅପ୍ରମାଦେ ॥
ତାହାକୁ ତୋର ଭୟ ନାହିଁ । ଆସିଛୁ ଶୁଚିବନ୍ତ ହୋଇ ॥
ଏମନ୍ତ ବୋଲି କୋପକଲେ । ସେବକମାନେ ଯେ ସାହାରେ ॥
ଗଳେ ଅନେକ ଧକ୍କା ଦେଲେ । ରଥରୁ ପେଲି ପକାଇଲେ ॥
ନାନା କୁବାକ୍ୟ ଗାଳିଦେଇ । କହ ତୋ ବାପ ଆଗେ ଯାଇ ॥
ସବୁରି ମୁଖରୁ ଗଞ୍ଜଣ । ପାଇଲା ବଳରାମ ଦାସ ॥
ମନରେ ପାଇ ଗୁରୁ ତାପ । ବଢ଼ିଲା ବିଶେଷ ସନ୍ତାପ ॥
ପ୍ରଭୁ ସମ୍ମୁଖରେ ଲଜ୍ଜାହୋଇ । କଳାଶ୍ରୀମୁଖକୁ ଅନାଇ ॥
ବେନି ନୟନୁ ଧାରଗଳେ । ପ୍ରଣାମ କଲା ମହୀତଳେ ॥
ଉଠି କପାଳେ ଦେଲା ପାଣି । ବୋଇଲା ନମୋ ଚକ୍ରପାଣି ॥
ନମୋ କମଳ ପଦ୍ମମୁଖ । ଭକତ ଜନଙ୍କର ଭେକ ॥
ଭକ୍ତବତ୍ସଳ ମହାବାହୁ । ନନ୍ଦଘୋଷରେ ଥାଉଁ ଥାଉଁ ॥
ଶଙ୍ଖ ଯେ ଚକ୍ର ବେନି କରେ । ବସିଛୁ ଅଛୁ ଉଜ୍ଜପୁରେ ॥
ତେବେ ଗଞ୍ଜଇ ମାରଚଣ୍ଡ । ଚାହିଁ ନ ଛେଦ ମୋର ମୁଣ୍ଡ ॥
ଦଣ୍ଡ ଯେ ଦେଲୁ ପରହସ୍ତେ । ଏଥିରେ ଯଶ ହେଲା କେତେ ॥
ମୋତେକରୁଣା ଯେବେ ତୋର । ସକଳ ଜାଣିଲି ଏଥର ॥
ନନ୍ଦ ଗଉଡ଼ ପୁଅ ହୋଇ । ନନ୍ଦଘୋଷରେ ଏବେ ବୁଲୁ ॥
ବଳଙ୍କ ତଳା ବଇଠରେ । କପାଇ ବହିଁକୁ ଦୃଷ୍ଟିରେ ॥
ଥିଲୁ ମୋ ପ୍ରାଣବନ୍ଧୁ ବୋଲି । ତୋର ସମ୍ମୁଖକୁ ଆସିଥିଲି ॥
ଏଥକୁ ଦଣ୍ଡ ଦେଲୁ ଏତେ । ଆଜ ଜାଣିଲି ମୁହିଁ ତୋତେ ॥
ମୁଁ ଯେ ଜାଣଇ ତୋ ସକଳ । ତେଣୁ ବା ହୋଇବ ଅକଳ ॥
ଏବେ ମୁଁ ଗଲିଟି ବାହୁଡ଼ି । କେ ଛିଙ୍କୁ ତୋ ରଥ ବଉଡ଼ ॥
ଯାହା କେମନ୍ତ କରୁ ତୁହି । ତାହା ଦେଖଇ ଜନା ମୁହିଁ ॥

କଳ୍ପ କେ ଗ୍ରନ୍ଥ ଏବେ ରଥ । ତୋ ବାପ ନନ୍ଦର ଶପଥ ॥
ଆଉର କହୁଅଛୁ ଶୁଣ । ଶ୍ରୀବତ୍ସ ଭୂଷଣ ଶରଣ ॥
ମୁଁ ଯେବେ ତୋହର ସେବକ । ତୁ ଯେବେ ମୋ ପ୍ରାଣନାୟକ ॥
ଅନ୍ୟ ଶରଣ ମୋର ଥିଲେ । ତାହା ବୁଝିବୁ ବୁଦ୍ଧି ଭଲେ ॥
ଆଉର କହୁଅଛୁ ଯାହା । ଶୁଣ ପୂତନା ପ୍ରାଣଖିଆ ॥
କୋଟିଏ ବ୍ରହ୍ମାଣ୍ଡ ହୋଇବ । ଗୋଟିଏ ପ୍ରଭୁ ହୋଇଥିବ ॥
ତାର ସେବକ ହୀନ ନଭ । ସେ ପ୍ରଭୁ ଯେବେ ନ ବୁଝିବ ॥
ସେ ଲଜ୍ଜା ହେବଟି କାହାର । ତୋ ହୃଦପଦ୍ମରେ ବିଚାର ॥
ଅଧିକ କ କହିବ ମୁହିଁ । ତୁମ୍ଭେ ମୋ ଜୀବର ଗୋସାଇଁ ॥
ଯେ ଦଣ୍ଡ ଉଚିତ ମୋହର । ବୋଲି ଚଳିଲେ କ୍ରୋଧଭର ॥
ପଛକୁ ଅନାଇଁ ଅନାଇଁ । ମିଳିଲ୍ଲ ସିନ୍ଧୁ କୂଳେ ଯାଇଁ ॥
ବାଙ୍କମୁହାଣ ବାଲିକୁହେ । ବସିଲ ମନର ବିଷାଦେ ॥
ବାଲିରେ ତିନଗୋଟି ରଥ । ନିର୍ମାଣ କରଣ ଉନତ ॥
ନସ୍ତ ଭୁଜ ଧ୍ୟାନେ ଚିନ୍ତ । ଯେ ଜଗବନ୍ଧୁ ତନମୂର୍ତ୍ତି ॥
ବୋଇଲ୍ଲ ଏଥେଁ ବିଜେ କର । ମୁଁ ଯେବେ ସେବକ ତୋହର ॥
ଏମନ୍ତ ବୋଲି ହାକନ୍ଦେନେ । ନୟନୁ ଅଶ୍ରୁ ଧାର ଗଳେ ॥
ଅମୃତ ନଦୀ ପ୍ରାୟେ ହୋଇ । ସର୍ବାଙ୍ଗେ ଯାଉଅଛୁ ବହି ॥
ତାହା ଜାଣିଲେ ଆତ୍ମନ୍କ । ଯେ ପ୍ରଭୁ ଭକତ ବତ୍ସଳ ॥
ଶରଣ ରକ୍ଷଣ ଯେ ବାନା । ନ ସହେ ସେବକ ବେଦନା ॥
ଅଶେଷ ସୁଖ ଦୂରକରି । ବାଙ୍କି ମୁହାଣେ ବିଜେକରି ॥
ଦାରୁ ରକ୍ଷିଣ ନନ୍ଦଘୋଷେ । ପ୍ରଭୁ ବିଜୟ ଭକ୍ତ ପାଶେ ॥
ସଙ୍ଗତେ ଘେନ ଭଗ୍ନୀ ଭ୍ରାତ । ବିଜୟ କଲେ ବାଲିରଥ ॥
ତା ଦେଖି ବଳରାମ ଦାସ । କେ କହୁ ମନର ହରଷ ॥
ଅକପେ ଅନାଇଣ ହେଲ୍ଲ । କଳପ ସୁକୃତ ଲଭିଲ୍ଲ ॥
କେବଳ ଅଭିମାନ ଧରି । ସ୍ବାମ୍ଭିଁ ସେ ଅଚ୍ଛି ବଶକରି ॥
ହୃଦେ ଆନନ୍ଦ ମୁଖେ ଦୁଃଖ । ତାହା ଜାଣିଲେ ପଦ୍ମମୁଖ ॥

ହସି କହନ୍ତି ପୀତବାସ । ହାସେ ନ କର ତୁମ୍ଭେ ସେଷ ॥
ମୋର ସନ୍ତାପ ତୋର ଦେଖି । ଯାହା ମୁଁ ଅଇଲି ଉପେକ୍ଷି ।
ଏବେ ଯେ ଆସୁଛି ତୋହର । ତୋ ମନେ ଯାହା ତାହା କର ॥
ପ୍ରଭୁ ଶ୍ରୀମୁଖୁଁ ଶୁଣି ଏତେ । ଦାସ ବଳିଆ ସ୍ତୁତି କେତେ ॥
ତତକ୍ଷଣେ ଶିରେ କରବେଇ । ସମ୍ମୁଖରେ ପାଦେ ପଡ଼ି ଶୋଇ ॥
ଉଠି କପାଳେ ଦେଇ କର । ବୋଲଇ ନମୋ ଚକ୍ରଧର ॥
କମଳା ଯାର ଏଶ୍ୱର୍ଯ୍ୟ । ଧାତା ଯାହାର ଆଜ୍ଞାକାରୀ ॥
ଦେବ ଇନ୍ଦ୍ରାଦି ସୁରାସୁର । ଯକ୍ଷ ଗନ୍ଧର୍ବ ଯେ କିନ୍ନର ॥
ରବି ଚନ୍ଦ୍ରାଦି ବୈଶ୍ୱାନର । ନାଗ ନୃପତି ଚରାଚର ।
କ୍ଷିତି ଆକାଶ ଦିଗପାଳ । ଯାହାର ଆଜ୍ଞାରେ ସକଳ ।
ହେଉଅଛନ୍ତି ଆତଯାତ । ତୁମ୍ଭେ ଅଶେଷ ଲୋକନାଥ ।
ସାରଦା ଯାର ଆଜ୍ଞାକାରୀ । ଯେ ଅଷ୍ଟନିଧି ପରିକାରୀ ।
ସିଦ୍ଧ ଯୋଗୀନ୍ଦ୍ର ମୁନି ଗଣେ । ଧ୍ୟାନେ ଚିନ୍ତନ୍ତି ଯା ଚରଣେ ।
ମୋ ସ୍ତୁତି କେତେକ ମାତର । କୋଟିଏ କୀଟରୁ ଅନ୍ତର ।
କଷ୍ଟ କଲେ ମୋର ପାଇଁ । ପ୍ରଭୁପଣକୁଁ ଲୁଚାଇଁ ।
ଏହା ନ ଜାଣି ମୂଢ଼ ନରେ । ସେବନ୍ତି ଅନ୍ୟ ଦେବତାରେ ।
ଗଙ୍ଗା ତେଜିଣ ଗଙ୍ଗାକୂଳେ । କୂପ ଖୋଳନ୍ତି ତୃଷା ଭରେ ॥
ସୁଧା ତେଜିଣ ବିଷ ଖାଇ । ମରିବା ସମ ସେ ଅଟଇ ।
ଯେ ତୁମ୍ଭ ମହିମା କଥିତ । ଜାଣି ଭଜଇ ଅବିରତ ।
ଶରଣ ପଶେ ତୋ ଚରଣେ । ଇନ୍ଦ୍ର ପଦକୁଁ ସେ ନ ଗଣେ ।
ତେଣୁ ବଳିଆ ଏ ସଂସାରେ । ଚିତ୍ତରେ କାହାକୁ ନ ଡରେ ॥
କମ୍ବୁରଥାଙ୍ଗ ଗଦାପାଣି । ଭରସା ଅଛି ବୋଲି ଜାଣି ।
ମହାପାତକୀ ହୋଇଥାଇଁ । ସେ ଦୋଷ କ୍ଷମାକର ତୁହି ।
ମୁଁ ଯେ ସର୍ବଦା ଅପରାଧୀ । ତୁମ୍ଭେ ଯେ କରୁଣାବାରିଧି ।
ହୁଡ଼ି ବୋଇଲି ଯେତେ ଆଜ । ସେ ତୁଣ୍ଡେ ପଡ଼ୁ ମୋର ବଜ୍ର ।
ତୁମ୍ଭଙ୍କୁ ଏଡ଼େ ସାହାପକ୍ଷ । ଆଜତ ଦେଖିଲି ପ୍ରତ୍ୟକ୍ଷ ।

ଏବେ ଯେ ନନ୍ଦଘୋଷ ରଥ । ନୀଳାଦ୍ରୀ ନଗରରେ ଯାତ ॥
ଅଶେଷ ସୁଖ ଭୋଗମାନ । ଛାଡ଼ି ଅଇଲ ଭଗବାନ ॥
ଭ୍ରାତା ଭଗିନୀ ସାଙ୍ଗ ହୋଇ । ଏଥେ କ ଭୁଞ୍ଜିବ ଗୋସାଇଁ ॥
ମୁଁ ମୂଢ଼ ମନ୍ଦକୃତ୍ୟ କଲି । ପ୍ରଭୁଙ୍କୁ ଏ କଷ୍ଟ ଦହିଲି ॥
ତା ଶୁଣି ପ୍ରଭୁ ଭାବଗ୍ରାହୀ । ଦାସଙ୍କୁ ପାଶରେ ବସାଇ ॥
ହସି ଶ୍ରୀମୁଖେ ଆଜ୍ଞା କଲେ । ହେ ଦାସେ ଶୁଣକୁ ବୋଇଲେ ॥
ଜସ୍ତକ ମୋର ଜସ ହେବ । ମୂଳ ମୋ ଭକତର ଭାବ ॥
ଅଶେଷ ସୁଖଶ୍ରାବ ମୋର । ଭକତ କଥାମୃତ ସାର ॥
ମୋର ମହିମା ପଦେ ପଦେ । ଯେ ଶୁଣୁଥିବ ସଦା ହୃଦେ ॥
ସେ ଅଟେ ସୁଖଦାତା ମୋର । ଏଥିରେ ସଂଶୟ ନ କର ॥
ଏ କଥା ସତ୍ୟ ସତ୍ୟ ମୋର । ତୋ ମନେ ସଂଶୟ ନ କର ॥
ତା ଶୁଣି ଦଳଗମ ଦାସେ । ମନରେ ଲଭି ଅତି ତୋଷ ॥
ହୃଦୟ ମଧ୍ୟେ ଚକାସନେ । ପ୍ରଭୁଙ୍କୁ ବସାଇ ଆସନେ ॥
ଆପଣା ଧଇର୍ଯ୍ୟ ସ୍ତମ୍ଭରେ । ବାନ୍ଧିଲ ମନ ଘାଟକେ ରେ ॥
ଆନନ୍ଦ ଦାଣ୍ଡେ ରଥ ଚଢ଼ି । ଲଗାଇ କଳ୍ପନା ଦଉଡ଼ି ॥
ପ୍ରକୃତ ପିଠିଆଇ ଗଲେ । ରଥଦଉଡ ଓଟାଇଲେ ॥
ସୁଗୁଣ ସାରଥିଏ ରଥେ । ଗୀତ ଗାଇଣ ରଙ୍ଗେ ନାଚେ ॥
ରାଜସବୁଦ୍ଧି ବେଶକରେ । ହିଂସାଦୁର୍ବୁଦ୍ଧି ଦୂର କରେ ॥
ମଙ୍ଗଳଘଣ୍ଟ ବଜାଇଲେ । ଶବଦ ଶଙ୍ଖଧ୍ୱନି କଲେ ॥
ଜାଗ୍ରତ ସ୍ୱପ୍ନତ ସୁଷୁପ୍ତି । ଯେ ରଥ କରିବାକୁ ରକ୍ଷା ॥
ପଞ୍ଚପବଣ ଦିପ୍ରଗଣ । ସୁବୁଦ୍ଧି ପଣ୍ଡାଙ୍କୁ ଘେନିଣ ॥
ପ୍ରଭୁଙ୍କ ପୂଜାରେ ବସିଲେ । ଅଭେଦ ଭୋଗ ମନାସିଲେ ॥
ଚଉଦବ୍ରହ୍ମାଣ୍ଡର ଗତେ । ଅପୂର୍ବ ଦ୍ରବ୍ୟମାନ ଯେତେ ॥
ସମ୍ମୁଖେ ସବୁ ଠୁଳ କଲେ । କଳ୍ପନାମାର୍ଗ ପୂଜା କଲେ ॥
ଭୁ ହୋ ସୁମନ ନୁ ପବଣ । ଚୈତନ୍ୟ ମନ୍ତ୍ରୀଙ୍କ ଘେନିଣ ॥
ରଜ୍ଜୁକୁ ଷିଡୁମୁନାଦ୍ୱାରେ । ଦଶଟ ପୁରୁଷ ସମ୍ମୁଖରେ ॥

ନିର୍ଭୟ ହୋଇ ଆଜ୍ଞାଦେଲେ । ଭସ୍ମକୁ ମାରରେ ବୋଇଲେ ।
କ୍ରୋଧ ତାମସ ଆଦି ଯେତେ । କୁଟିଳ କପଟ ସଙ୍ଗତେ ॥
ସ୍ଥୂଳ କୁମତି ମିଥ୍ୟା ଲୋଭ । ମଦ ମତ୍ସର ଯେ ସ୍ୱଭାବ ॥
ଦୁର୍ଗୁଣ ଦାମ୍ଭିକ ନାସ୍ତିକ । କଳ୍ପନା ଆଦି ଯେତେ ଲୋକ ॥
ମାରି ଏହାଙ୍କୁ କର ଦୂର । ନ ଥାଉ ଏ ଦିବ୍ୟ ରଥର ॥
ଏମନ୍ତ ଆଜ୍ଞା ତାକୁ ଦେଇ । ଲଗ୍ନିଲ ଶ୍ରୀମୁଖକୁ ଧ୍ୟାଇ ॥
ଆନନ୍ଦେ ବଳରାମ ଦାସ । ଗୁଣ୍ଡ଼ ସହାରେ ଦେଇଁଆଶ ॥
ରାତ୍ର ଦିବସ ନ ଜାଣିଲା । କ୍ଷୁଧା ତୃଷାକୁଁ ନ ମଣିଲା ॥
କେବଳ ଏକଭାବ ହୋଇ । ଶ୍ରୀ ଦାରୁବ୍ରହ୍ମକୁ ଭଜଇ ॥
ଏମନ୍ତ ଭାବ ଦେଖିକରି । ସେ ଭାବେ ବନ୍ଧନ ଶ୍ରୀହରି ॥
ଏଣେ ଯେ ନନ୍ଦିଘୋଷ ରଥ । କଳା ପିଠିଆ ଅପ୍ରମିତ ॥
ଦଇତ୍ ଧରଣ ଓଟାରି । ବଳ ପ୍ରାକ୍ରମେ ଗଲେ ହାରି ॥
ରଥ ଚକର୍ବିଁ ନ ଚଳିଲେ । ସମସ୍ତେ ଦେଖିଣ ଭାଳିଲେ ॥
କି ବୁଦ୍ଧି କରିବା ଏଥିର । କପାଁ ନ ଚଳେ ରଥବର ॥
ଏମନ୍ତ ଦେଖିଣ ସମସ୍ତେ । କହିଲେ ନୃପତି ଅଗ୍ରତେ ॥
ଭାରତେ ଜଗତର ଯେ ଯାଇ । ରାଜ୍ୟୁ ସକଳ ଜନ ରାଇ ॥
ଯୁବା ବାଳକ ବୃଦ୍ଧ ନାରୀ । ବ୍ରହ୍ମ କ୍ଷତ୍ରିୟ ଆଦି କରି ॥
ଯେ ପାତ୍ର ମନ୍ତ୍ରୀ ଅମାତ୍ୟେ । ସାଧୁତ ସାମନ୍ତ ସଙ୍ଗତେ ॥
ସକଳ ଲୋକଙ୍କର ହାତେ । ରଥେ ଝିଙ୍କାଇ ନାନାମତେ ॥
କଷ୍ଟେ ଟାଣି ନ ପାରିଲେ । ଆପଣେ ନୃପତି ଭାଳିଲେ ॥
କିବା ଅଭାଗ୍ୟ ହେଲା ମୋର । ଟେଣୁ ନ ଚଳେ ରଥବର ॥
ଆଣରେ ମତ୍ତଗଜ ଯେତେ । ନୃପତି ଆଜ୍ଞାରେ ସମସ୍ତେ ॥
ଆଣିଲେ ଶତେକ ମତ୍ତଗଜ । କରିଣ ନାନା ମତେ ସଜ ॥
ବେଗେଣ ରଥରେ ଯୋଚିଲେ । ମାହୁନ୍ତେ ଅଙ୍କୁଶ ଟିପିଲେ ॥
ଏଣେ ପ୍ରତାପରୁଦ୍ର ରାଜା । କରଇ ନାନାମତେ ପୂଜା ॥
କଟି ବସନ ଆଣ୍ଟେ ଭିଡ଼ି । ଆପଣେ ଧଇଲେ ଦଉଡ଼ି ।

ତାହା ଦେଖିଣ ଯେତେ ଲୋକ । ସମସ୍ତେ ହୋଇଣ ଉତ୍ସୁକ ॥
ଧଇଲେ ନନ୍ଦଘୋଷ ବେଢ଼ି । ଗୁଡ଼କୁ ଯେସନେ ପିମ୍ପୁଡ଼ି ॥
ଆନନ୍ଦେ ଦେଲେ ହୁଳହୁଳି । ବଜାଇ ଜୟେ କରତାଳି ॥
ଅନେକ ହରିବୋଲ ପଡ଼ି । ହସ୍ତରେ ଧଇଲେ ବଉଡ଼ି ॥
ଟିଙ୍କିଲେ ଯେ ଯାହାର ମତେ । ରଥ ନ ଚଳେ କଦାଚିତେ ॥
ଗଜ ମନୁଷ୍ୟ ଶ୍ରମପାଇ । ବସିଲେ ଯେ ଯାହାରେ ଯାଇ ॥
ତାହା ଦେଖିଣ ନୃପବର । ବିସ୍ମର କଲ ତା ମନର ॥
ପ୍ରଭୁ ପଦାରବିନ୍ଦଗତ । ଅପ୍ରାଧ ଅର୍ଜିଲି ବହୁତ ॥
ତେଣୁ ନ ଚଳେ ନନ୍ଦଘୋଷ । ବୁଝିବା ଏଥିର ସନ୍ଦେଶ ॥
ଏମନ୍ତ ବୋଲି କୁଶାସନେ । ଶୋଇଲେ ରାଜା ଦୁଃଖମନେ ॥
ପ୍ରଭୁ ଚରଣେ ମନ ଦେଇ । ସଂଶୟ ଜାଣିବାର ପାଇଁ ॥
ତାହା ଜାଣିଲେ ତତକ୍ଷଣ । ସେ ଅନ୍ତର୍ଯ୍ୟାମୀ ନାରାୟଣ । ॥
ରାଜାକୁ କହିଲେ ସ୍ୱପନେ । ତୁ କମ୍ପା ଚିନ୍ତାକରୁ ମନେ ॥
ଏବେ ମୁଁ କହୁଅଛି ତୋତେ । ହେ [illegible] ଶୁଣ ଶୁଦ୍ଧଚିତ୍ତେ ॥
ମୋର ଭକତ ଯେଉଁଜନ । ମୋହର ନାମ କରେ ଗାନ ॥
ସେ ଜେବେ ଅଶୁଚି ନୁହଇ । ସର୍ବଦା ଶୁଚିମନ୍ତ ଦେହି ॥
ଏଣୁ ମୋ ବଳରାମ ଦାସ । ମନରେ ହୋଇଣ ହରଷ ॥
ସ୍ଥମୁକୁ ଅଇଲ ମୋହର । ମାରି ତାହାକୁ କଲେ ଦୂର ॥
ତେଣୁ ଭକତ ଅଭିମାନେ । ଗଲ ଅଟ୍ଟାଳ ଦୁଃଖମନେ ॥
ବସିଲ ଚନ୍ଦ୍ରତୀର୍ଥେ ଯାଇ । ଚିନ୍ତି ମୋ ପାଦପଦ୍ମ ଧ୍ୟାୟି ॥
ତାହା ଜାଣିଣ ଆମ୍ଭେ ଗଲୁଁ । ଭକତ ପାରୁଶେ ମିଳିଲୁ ॥
ସେ ଯେତେ ସୁଖ ମୋତେ ଦେଲ । ଯେଉଁ ପ୍ରକାରେ ଯାହାକଲ ॥
ଇନ୍ଦ୍ରାଦି ଦେବଙ୍କୁ ଦୁର୍ଲ୍ଲଭ । ତୁ କାହିଁ ଜାଣିବୁ ତା ଭାବ ॥
ତେଣୁଟି ଅଛୁ ସେହି ସ୍ଥାନେ । ଏ ରଥ ଚଳିବ କେସନେ ॥
ଭକତ ଭାବେ ବାନ୍ଧିଅଛି । ଆମ୍ଭେ ତା ନ ପାରୁ ମୁକୁଳି ॥
ଭକତ ମୋହର ଶରୀର । ମୁହିଁ ତାହାର ପ୍ରାଣେଶ୍ୱର ॥

ଭକତ ମୋର ଭିନ୍ନ ଭିନ୍ନ । କେତେବେହେଁ ନୁହେଁ ହେ ରାଜନ ॥
ଭକତ ରକ୍ଷଣ ନିମନ୍ତେ । ଚକ୍ର ମୁଁ ଧରିଅଛୁ ହସ୍ତେ ॥
ଭକତ ଦୁଃଖ ସୁଖ ଯେତେ । ମୁଁ ସିନା ଭୁଞ୍ଜି ଥାଇ ନିତ୍ୟେ ॥
ଏ ଆଜ୍ଞା ସତ୍ୟ ଅଟେ ମୋର । ହେ ରାଜା ସଂଶୟ ନକର ॥
ଯେବେ ତୁ ନନ୍ଦଘୋଷ ରଥେ । ଯାତ୍ରା କରିବୁ ଘେନି ମୋତେ ॥
ତେବେ ତୁ ଏମନ୍ତ କରିବୁ । ସେବକ ଯାକ ଡକାଇବୁ ॥
ମୋର ଭକ୍ତଙ୍କୁ ଅହଙ୍କାରଣେ । ଦଣ୍ଡ ଦହୁଲେ ଯେଉଁମାନେ ॥
ତାହାଙ୍କୁ ଯୋଡ଼ ଯୋଡ଼ କରି । ବନ୍ଧାଇଥିବୁ ଦଣ୍ଡଧାରୀ ॥
ଗଳାରେ ଜାଲଫାଶ ଭରି । ହସ୍ତେ ତୋରଣ ଥିବେ ଧରି ॥
ପଛରେ ଗଳାଧକ୍କା ଦେଇ । ଘେନାଇ ଯିବୁ ନରସାଇଁ ॥
ମୋ ଭୃତ୍ୟ ସମ୍ମୁଖରେ ଭେଟିବେ । ସମସ୍ତେ ଚରଣେ ଲୋଟିବେ ॥
ତୁ ଯେ ଆପଣେ ନ ପଚାରିଣ । ଦାସଙ୍କୁ କୋଳେ ବସାଇଣ ॥
ଅନେକ ଗଉରବ କରି । ଘେନି ଆସିବୁ ଦଣ୍ଡଧାରୀ ॥
ବସାଇ ନନ୍ଦଘୋଷ ରଥେ । ବାନ୍ଧିବୁ ପାଟଶାଢ଼ୀ ମାଥେ ॥
ବୋଲିବୁ ଯାତ୍ରା ବେଗେକରି । ତେବେ ଚଳିବ ରଥବର ॥
ନୋହିଲେ ନ ଚଳିବ ରଥ । ହେ ରାଜା କହୁଅଛି ସତ ॥
ମୁହିଁ ପ୍ରବଳ ମାଳାଚଳ । ଭକତ ପ୍ରାଣ ମୋର ମୂଳ ॥
ଭକତ ଯିବ ମୋର ଯେଣେ । ମୁହିଁ ନିଶ୍ଚୟ ଯିବି ତେଣେ ॥
ଏ କଥା ସତ୍ୟ ମହୀପାଳ । କହି ଚଳିଲେ ଆଦିମୂଳ ॥
ରାଜା ଏମନ୍ତ ଆଜ୍ଞା ପାଇ । ଉଠିଲା ଅତି ବେଗ ହୋଇ ॥
ସେବକମାନଙ୍କୁ ସ୍ମରିଣ । ତ'ସେ କୋଟେହା ଯେତେ ଜନ ॥
ବନ୍ଧାଇ ଯୋଡ଼ ଯୋଡ଼ କରି । ଗଳେ ରେ ଜାଲଫାଶ ଭରି ॥
ହସ୍ତେ ତୋରଣ ଧରାଇଲେ । ପଛେ ଧାବୁକା ତାକୁ ଦେଲେ ॥
ଘେନାଇଗଲେ ଖରେ ଜନେ । ମିଳିଲେ ଭକ୍ତ ସନ୍ନିଧାନେ ॥
ସମସ୍ତେ ସମ୍ମୁଖରେ ଭେଟିଲେ । ତତକ୍ଷଣେ ଚରଣେ ଲୋଟିଲେ ॥
ଉଠି କପାଳେ ଦେଲେ କର । ବୋଇଲେ ଦେବ ବିଜେକର ॥

ଯେତେ ଅପ୍ରାଧ ଆମ୍ଭେ କଲୁ । ତହିଁର ଶାସ୍ତି ତ ପାଇଲୁ ॥
ଏବେ ତୁ ଦୋଷ କର କ୍ଷମା । ଧନ୍ୟ ତୋ ଭକତ ମହିମା ॥
ଏମନ୍ତ ବୋଲଇଣ ରାଜନ । କହିଲେ ମଧୁର ବଚନ ॥
ଦାସଙ୍କୁ କୋଳେ ବସାଇଲେ । ଅନେକ ଗଉରବ କଲେ ॥
ଧନ ବସନ ତାଙ୍କୁ ଦେଇ । ଦାହଙ୍କୁ ଅଶ୍ୱରେ ବସାଇ ॥
ଘେନାଇ ଗଲେ ନୃପବଣ । ଅନେକ ଉତ୍ସବ କରିଣ ॥
ପ୍ରବେଶ ହେଲେ କ୍ଷେତ୍ରବରେ । ଶ୍ରୀ ନନ୍ଦଘୋଷ ପାରୁଶରେ ॥
ଦାସଙ୍କୁ ଘେନି ନରନାଥେ । ଝଜସ୍ତୁ ନନ୍ଦଘୋଷ ରଥେ ॥
ପ୍ରଭୁଙ୍କ ସମ୍ମୁଖରେ ବସାଇ । ପାଠ କାହ୍ଲେ ନରସାଇଁ ॥
ବୋଇଲେ କର ଏବେ ଯାଚ । ଏ ସର୍ବ ଭୁମ୍ଭର ଆୟତ୍ତ ॥
ତା ଶୁଣି ବଳରାମ ଦାସ । ମନରେ ହୋଇଣ ହରଷ ॥
ବୋଇଲେ ନମୋ ମହାବାହୁ । ଭକତ ବତ୍ସଳ ବୋଲାଉ ॥
ନାମ କରୁଣା ମହାମେରୁ । କଷ୍ଟକେ ଦୁବ କରୁ ବାରୁ ॥
ଏବେ ମୁଁ କହୁଅଛୁ ତୋତେ । ହେ ପ୍ରଭୁ ବଜେ କର ରଥେ ॥
ଭିଡ଼ିତେ ରଥ ଚଳିଯାଉ । ପ୍ରଭୁ ମହିମା ରହିଥାଉ ॥
ଏମନ୍ତ ବୋଲି କର ଯୋଡ଼ି । ବୋଇଲା ଝିଙ୍କ ହୋ ଦଉଡ଼ ॥
ତା ଶୁଣି ପିଠିଆଏ ଗଲେ । ରଥ ଦଉଡ଼ି ଉଠାଇଲେ ॥
ସମସ୍ତେ ଜୟ ଜୟ କଲେ । ଅଶେଷ ବାଦ୍ୟ ବଜାଇଲେ ॥
ସେବକ ଘଣ୍ଟ ବଜାଇଲେ । କାମିନୀ ହୁଳହୁଳି ଦେଲେ ॥
ତାହା ଦେଖିଣ ପ୍ରଭୁ ମନେ । ପ୍ରସନ୍ନ ହେଲେ ନରବଣେ ॥
ରଖିଣ ଭକତ ମହତ । ଚଳିଲା ନନ୍ଦଘୋଷ ରଥ ॥
ପଛକୁ ଉହ୍ନିଲା ଦଉଡ଼ । ପକ୍ଷୀ ଯେସନେ ଶୂନ୍ୟେ ଉଡ଼େ ॥
ତେସନେ ପ୍ରଭୁ ଦେବରାଜ । ସଙ୍ଗେ ଚଳିଲେ ତାଳଧ୍ୱଜ ॥
ପଲକ ମାତ୍ରେ ରଥବର । ପ୍ରବେଶ ଗୁଣ୍ଡିଚ୍ଚ ନଗର ॥
ତାହା ଦେଖିଣ ସର୍ବଜନ । ଆଦର ସେ ମହାରାଜନ ॥
ସୁରଙ୍ଗରେ ବେଢ଼ି ବସି । ଦାସଙ୍କୁ ଅନେକ ପ୍ରଶଂସି ॥

ବୋଇଲେ ଧନ୍ୟ ତୋ ଜୀବନ । ଦଶ ତୁ କଲୁ ନାରାୟଣ ।
ଧନ୍ୟ ଏ ପ୍ରଭୁଙ୍କ ମହିମା । ରଖିଲେ ଭକତ ଗାରିମା ।
ଏଣୁ ଏ ବ୍ରହ୍ମାଣ୍ଡ ମଧ୍ୟେଣ । ହରି ଭକତ ବଡ଼ ଜାଣ ।
ଯେ ସାଧୁ ଜନଙ୍କୁ ଭଜଇ । ସେ ନିଶ୍ଚେ ହରିଙ୍କ ଲଭଇ ।
ଯେବା ସାଧୁରେ ଦ୍ରୋହ କରି । ସେ ନିଶ୍ଚେ ଶ୍ରୀହରି ବଇରୀ ।
ଏମନ୍ତ ବୋଲି ଯେଝାମତେ । ଗଲେ ସେ ଭାବ ଚିନ୍ତ ଚିତ୍ତେ ।
ପ୍ରଭୁଙ୍କୁ ବଜେ କରାଇଲେ । ସେବାରେ ସେବକ ଲାଗିଲେ ।
ଶୁଣ ସୁମନ ଏହୁ ରସ । ସାଧୁଙ୍କ ମହିମା ଅଶେଷ ।
ଭକତେ ପ୍ରଭୁ ବଶ୍ୟ ଯେତେ । ବ୍ରହ୍ମା ଇନ୍ଦ୍ରେ ନାହିଁ ତେତେ ।
କହଇ ବିପ୍ର ରାମ ଦାସ । ମୋ ପ୍ରଭୁ କମଳା ବିଳାସ ।
ସାଧୁଜନଙ୍କ ପାଦତଳେ । ମୋ ଚିତ୍ତ ରହୁ ଅନୁବ୍ରତେ ।
ଏ ଦାର୍ଢ୍ୟଭକ୍ତି ରସବାଣୀ । ଶୁଣି ସଂସାରୁ ତର ପ୍ରାଣୀ ।
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲଗେ ପ୍ରମାଦ ।
ଏଣୁ ଅଧମ ରାମ ଦାସ । ତୋ ପାଦେ ରହୁମୋର ଆଶ ।
ନଇତେ ଏହି ଆଜ୍ଞା ଦେଉ । ଏ ଭାବ ମନରୁ ନଯାଉ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ ବଳରାମ ଦାସ ଦାଢ଼୍ୟଭାବ ମୋହନେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।

—*—

## ପଞ୍ଚଦଶ ଅଧ୍ୟାୟ

## ଜଗନ୍ନାଥ ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ଶୁଣି ଚୈତନ୍ୟ ଅନ୍ତଚୋକ୍ତେ । କହଇ ମନ ରାଜ ପାଶେ ।
ଶୁଣ ସୁଜନେ ଶୁଦ୍ଧଚିତ୍ତେ । ତୁ ଯାହା ପଚାରିଲୁ ମୋତେ ।
ଏ ବଡ଼ ଆଚମ୍ବିତ କଥା । ଶୁଣି ଗୁଣ୍ଡିବ ଭବବ୍ୟଥା ।
ଯେ କ୍ଷେତ୍ରମାନଙ୍କ ଉତ୍ତମ । ନାମ ତା ଶ୍ରୀପୁରୁଷୋତ୍ତମ ।

ସେ ପୁଣ୍ୟକ୍ଷେତ୍ରରେ ନିବାସ । ନାମ ତା ଜଗନ୍ନାଥ ଦାସ ।
ଜାତିରେ ଅଟଇ ବ୍ରାହ୍ମଣ । ସୁଜ୍ଞାନୀ ପଣ୍ଡିତ ସୁଜାଣ ।
ଚତୁର ବିବେକ ତା ମତି । ଶାନ୍ତସ୍ୱଭାବ ଧୀରମତି ।
ଧାର୍ମିକବୁଦ୍ଧି ସତ୍ତ୍ୱମୟ । ସ୍ୱଭାବେ ସଦାନନ୍ଦମୟ ।
ସକଳ ଶାସ୍ତ୍ରରେ ସୁଜ୍ଞତା । ଜାଣଇ ପାପପୁଣ୍ୟ କଥା ।
ଏ ଘୋର ସଂସାରକୁ ଡରି । ନିରତେ ମନରେ ବିଚାରି ॥
କେମନ୍ତେ ହେବି ଏଥୁଁ ପାର । ଏ ତ ଅପାର ପାରାବାର ।
ଏଥୁ ଉଦ୍ଧାର ହେବାପାଇଁ । ଭକତି ବିନୁ ଅନ୍ୟ ନାହିଁ ।
ଏମନ୍ତ ବୋଲି ପ୍ରତିଦିନ । ହରିଚରଣେ କରୁ ଧ୍ୟାନ ।
ଏମନ୍ତେ କେତେଦିନ ଗଲା । ଦିନେକ ଏମନ୍ତ ହୋଇଲା ।
ଶୟନ ସମୟରେ ଦାସେ । ମନ ନିବେଶି ପ୍ରଭୁ ପାଶେ ।
ବୋଇଲେ କୃପା ମୋତେ କର । ଦେଖାଅ ମହିମା ତୁମ୍ଭର ।
ମୋ ଜୀବ ଉଦ୍ଧାର ନିମନ୍ତେ । କି ଆଜ୍ଞା ଦେଉ ପ୍ରଭୁ ମୋତେ ।
ତୁମ୍ଭେ ବୋଲାଅ ଦୀନବନ୍ଧୁ । ନାମ କରୁଣାମୟ ସିନ୍ଧୁ ।
ସୁଦୟା ନୋହିଲେ ତୁମ୍ଭର । କେମନ୍ତେ ଭବୁଁ ହେବି ପାର ।
ଏଣୁ ତୁ ଯାହା କହେ କର । ଆୟୁଷ ନାହିଁଟି ମୋହର ।
ଏମନ୍ତ ବୋଲି ନିଦ୍ରାଗତେ । ହରିଙ୍କ ଚିନ୍ତା କରି ଚିତ୍ତେ ।
ତାହା ଜାଣିଲେ ନାରାୟଣ । ଯେ ପ୍ରଭୁ ଜଗତ କାରଣ ।
ଶରଣଜନ ଚିନ୍ତାମଣି । କମ୍ବୁ ରଥାଙ୍ଗ ଗଦାପାଣି ।
ବିମ୍ବ ଅଧରେ ମନ୍ଦହାସେ । ବିଜୟ କଲେ ଭକ୍ତପାଶେ ।
ଶ୍ରୀମୁଖେ ଆଜ୍ଞା ଦେଲେ ହରି । ଶୁଣ ହେ ଦାସେ ହେତୁ କରି ।
ତୁ ଯାହା ଚିନ୍ତୁଥାଉ ମନ । ତାହା ତ କହୁଅଛୁ ଶୁଣ ।
ତୋ ଜୀବ ଉଦ୍ଧାର ନିମନ୍ତେ । ଦୟା ମୁଁ କରୁଅଛୁ ତୋତେ ।
ସକଳ ଶାସ୍ତ୍ର ମଧ୍ୟେ ସାର । ଓଁ କାର ବ୍ରହ୍ମ ଏକାକ୍ଷର ।
ଆମ୍ଭେ ଶ୍ରୀମୁଖେ ଆଜ୍ଞା ଦେଲୁ । ଶ୍ରୀଭାଗବତ ନାମ ଦେଲୁ ।
ସେ ମହାବୀଜ ନିଅକ୍ଷର । କହିଲ ଅନନ୍ତ ଆଗର ।

ସେ ମହାଭାଗବତ ଚତୁର୍ଦ୍ଦଶେ । କହିଲେ ବ୍ରହ୍ମାଙ୍କର ପାଶେ ॥
ବିଧାତା ହୃଦେ ଜପକଲେ । ପୁଣି ତା ଚତୁର ଶ୍ଳୋକରେ ॥
ବିସ୍ତାର କଲେ କବି ପଣେ । କହିଲେ ନରଦାସ୍ୱପ୍ନଣେ ॥
ସେ ନର ନାସ୍ୱପ୍ନେ ରହି । ହୃଦପଦ୍ମରେ ତାହା ଘୋହି ॥
ଦଶମ ଶ୍ଳୋକରେ ଭଣିଲେ । ନାରଦମୁନିଙ୍କୁ କହିଲେ ॥
ନାରଦ ଶତେ ଶ୍ଳୋକ କଲେ । ବ୍ୟାସଙ୍କ ଆଗରେ କହିଲେ ॥
ସେ ବ୍ୟାସ ମହାଯତ୍ନ ଭଲେ । ଅଠରସସ୍ର ଶ୍ଳୋକ କଲେ ॥
କହିଲେ ଶୁକଦେବ ପାଶେ । ସେ ମୁନି ଶୁଣି ଅତି ତୋଷେ ॥
ଅଶେଷ ମୁନିଙ୍କର ଭୁଲେ । ପରୀକ୍ଷ ସହାଙ୍କୁ କହିଲେ ॥
ଶୁଣି ପରୀକ୍ଷ ମହାଗୁଣ । ପାଇଲେ ପରମ କାରଣ ॥
ସେ ମହାପୁରାଣ ଚରିତ । ପ୍ରାକୃତ ବନ୍ଧେ କରେ ଗୀତ ॥
ତୁ ନିଷ୍ଟେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀଙ୍କ ତାରିବୁ ॥
ଶ୍ରୀଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀମାନେ ॥
କର ତୁ ଏହି ଅନୁକୂଳ । ଭଲ ତୁ ପରମ ମଙ୍ଗଳ ॥
ଏମନ୍ତେ ଦାସେ ଆଜ୍ଞାପାଇ । ସ୍ୱପନେ ପ୍ରଭୁଙ୍କୁ ଜଣାଇ ॥
ଏ'ଗ୍ରନ୍ଥ ଜଗମୁଁ ବାହାର । ମୁନିମାନଙ୍କୁ ଅଗୋଚର ॥
ଫେଡ଼ ଏ କଥା ଆଜ୍ଞା ହେଉ । ପୁଣି ବୋଲନ୍ତି ମହାବାହୁ ॥
ଭୟ ନ କର ତୁମ୍ଭେ କିଛି । ଗୀତାରୁ କର ମୂର୍ତ୍ତି ଅଛି ॥
ତୋ ହୃଦପଦ୍ମେ ବସିଥାଇ । ମୁଁ ଯାହା ବୋଉଥିବି କହି ॥
ତାହା ତୁ ପତ୍ର ହେନ ଲେଖ । କହି ଚଳିଲେ ପଦ୍ମମୁଖ ॥
ଏମନ୍ତ ସମୟରେ ଶୁଣ । ନିଦ୍ରା ଭଜିଲ ତତକ୍ଷଣ ॥
ଦାସେ ଉଠିଲେ ଚେତାପାଇ । ପାଶେ ଦେଖିଲେ କେହି ନାହିଁ ॥
ବୋଇଲେ ପ୍ରଭୁ ଅଙ୍ଗୀକାର । କେବେ ମୋ ଜୀବନ ଉଦ୍ଧାର ॥
ଏମନ୍ତ ବୋଲି ଶୁଦ୍ଧଚିତ୍ତେ । ଲେଖନ ପତ୍ର ଧରି ହସ୍ତେ ॥
ଚିତ୍ତ ନିବେଶି ପ୍ରଭୁ ପାଶେ । ଲେଖିଲେ ମନର ହରଷେ ॥
ଏମନ୍ତେ ଅଷ୍ଟମ ପୁରାଣ । ଯେ ଅଟେ କଠିନୁଁ କଠିନ ॥

ପ୍ରାକୃତବନ୍ଧେ କଲେ ଗୀତ । ସେ ପୁଣ୍ୟମୟ ଭାଗବତ ॥
ପ୍ରାଣୀଙ୍କ ଚିତ୍ତ କରି ସ୍ଥିର । କାଢ଼ିଲେ ମୁକତି ପସାର ॥
ସୁନ୍ଦର ମଧୁର କୋମଳ । ସାଧୁଙ୍କ ଶ୍ରବଣ ମଙ୍ଗଳ ॥
ପ୍ରାଣୀ କଳ୍ମଷ ନାଶିବାରେ । ଗାୟନ କଲେ ସର୍ବଠାରେ ॥
ତାହା ଶୁଣିଣ ପ୍ରାଣୀମାନେ । ଅତି ଆନନ୍ଦ ହୋଇ ମନେ ॥
ସ୍ତ୍ରୀ ଶିଶୁ ପୁରୁଷ ବାଳ ବୃଦ୍ଧା । ସମସ୍ତେ ଶୁଣିବାରେ ଶ୍ରଦ୍ଧା ॥
ଯମପୁରରେ ଯେତେ ନାପ । ତାସଙ୍କୁ ଆଣିଲେ ଉଦ୍ଧାର ॥
ବସନ୍ତ ମଣ୍ଡଳ ଆକାରେ । ତାସଙ୍କୁ ବସାଇ ମଧ୍ୟରେ ॥
ବୋଲନ୍ତି ସମସ୍ତ ଅବଳା । ଜୟ ଶ୍ରୀକୃଷ୍ଣ ବାଳଲୀଳା ॥
ଶୁଣି ପବିତ୍ର ହେଉ ଆମ୍ଭେ । ବନ୍ଦନ ଜୟ କଳା ତୁମ୍ଭେ ॥
ତା ଶୁଣି ଜଗନ୍ନାଥ ଦାସ । ଗାୟନ କରନ୍ତି ଅଭ୍ୟାସ ॥
ଶ୍ରୀକୃଷ୍ଣ ଗୋପୀଙ୍କର ଭାବ । ଯେ ବ୍ରହ୍ମା ଶିବଙ୍କୁ ଦୁର୍ଲ୍ଲଭ ॥
କେ ଜନ୍ମପାରେ ତହିଁ ସ୍ୱାଦ । ବଡପ୍ରାକୃତକୁ ଯେ ଗଦ ॥
ପଦ ପଦକେ ସୁଧାଝରେ । ଅଶେଷ ଜନ୍ମ ପାପ ହରେ ॥
ତାହା ଶୁଣିଣ ନାରୀବୃନ୍ଦ । ଲଭନ୍ତି ପରମ ଆନନ୍ଦ ॥
ଅନେକ ଧନ ବସ୍ତ୍ର ଦେଇ । ସମସ୍ତେ କହନ୍ତି ବିନୟୀ ॥
ପ୍ରତିଦିନରେ ଆସି ପୁରେ । ଏକତ୍ର କରୁଥିବ ଥରେ ॥
ପକ୍ଷ କରି ଗାଉଥିବ । ଜୟ ଶ୍ରୀକୃଷ୍ଣ ଲୀଳା ଭାବ ॥
ତା ଶୁଣି ଦାସେ ଶ୍ରଦ୍ଧାମନେ । ଚଳନ୍ତି ଆପଣା ଭୁବନେ ॥
ପ୍ରତିଦିନରେ ଏହି ମତେ । ଗାୟନ କରୁଥାନ୍ତି ନିତ୍ୟେ ॥
ତାହା ଦେଖିଣ ଖଳଜନେ । ସହି ନ ପାରି ଥାନ୍ତି ମନେ ॥
ଏଣୁ ତାହାଙ୍କ ଦୁଷ୍ଟମତି । ସାଧୁଙ୍କ ସଙ୍ଗେ ବୁଲୁଥାନ୍ତି ॥
କାକବ୍ରାହ୍ମଣ ଯେଉଁପରି । ଉତ୍ତମ ଦ୍ରବ୍ୟ ଭ୍ରଷ୍ଟ କରି ॥
ଶ୍ୱାନବ୍ରାହ୍ମଣ ଯେହ୍ନେ ଦାଣ୍ଡେ । ଧାଇଁଣ ଯାଉଥାନ୍ତି ବୃତଣ୍ଡେ ॥
ଦେଖିଲେ ତୁଳସୀ ବୃକ୍ଷରେ । ଚରଣ ଟେକି ମୂତ୍ର କରେ ॥
ମୂଷିକ ଯେହ୍ନେ ଦ୍ରବ୍ୟ ରସ । କାଳେ କାଟିଣ କରେ ନାଶ ॥

କଣ୍ଠରେ ନକରେ ଆହାର । ନାଶିବ କଥା ମନ୍ତ୍ର ତାର ॥
ସେହି ପ୍ରକାରେ ମୂଢ଼ନରେ । ଦୋଷ ଦଅନ୍ତି ସାଧୁଠାରେ ॥
ଏଣୁଟି ନ ପାଇଲେ ସନ୍ଧି । ସେ ରାଜ୍ୟ ରାଜା ଆଗେ କହ୍ନି ॥
ବୋଲନ୍ତି ଶୁଣ ନୃପବଣ । ତୋ ପୁଣ୍ୟକ୍ଷେତ୍ରର ପ୍ରଧାନ ॥
ବ୍ରାହ୍ମଣ ଜଗନ୍ନାଥ ଦାସ । ଅନେକ ସ୍ତ୍ରୀ ସ କଲ ନାଶ ॥
ଗୁପ୍ତ ଭଜନଙ୍କ ମାଳ ଭରି । କପଟେ ହୋଇ ବ୍ରହ୍ମସ୍ୱୀ ॥
କାଖରେ ପୁସ୍ତକ ଗୋଟିଏ । ଧରି ବୁଲଇ ସର୍ବଦାଏ ॥
ଯେତଣେ ଦେଖଇ ନାରୀବୃନ୍ଦ । କେ କହୁ ତାହାର ଆନନ୍ଦ ॥
ତର୍ବି ବର୍ଣ୍ଣିଣ କରେ ଗୀତ । ହଲଇ ମୁଣ୍ଡ ତାର ହସ୍ତ ॥
ଅର୍ଥ କହଇ ନାନାମତେ । ସ୍ତ୍ରିଙ୍କି ମୋହିବା ନିମନ୍ତେ ॥
ତାହା ଶୁଣନ୍ତି ଯେତେ ନାରୀ । କେ ପାରୁ ତା ଠାରେ ଉବୁରି ॥
ତାକୁ କରନ୍ତି ଯେତେ ସେବା । ପତିଙ୍କି ନ କରିବେ ଅବା ॥
ଏକଥା ବୁଝି ନରପଶୀ । ସତ କି ମିଛ ଦୂତ ପେଷି ॥
ଶୁଣି ନୃପତି କୋପ ଭରେ । ବୋଇଲେ ଯାଅ ଧାତକାରେ ॥
ଦାସଙ୍କୁ ବେଗେ ଘେନିଆସ । ବୁଝିବା ଏଥିର ସନ୍ଦେଶ ॥
ଆଜ୍ଞା ପ୍ରମାଣେ ଦୂତେ ଗଲେ । ଦାସଙ୍କୁ ଘେନିଣ ଆଇଲେ ॥
ସମ୍ମୁରେ ଉଭା କଲେ ନେଇ । ଦେଖି ପୁଚ୍ଛିଲେ ନୃପସାଇଁ ॥
କୋପେ ବୋଇଲେ ଦାସେ ଶୁଣ । ଏ କି ତୁମ୍ଭର ବିଡ଼ମ୍ବଣ ॥
ଗୁଡ଼ଣ ପୁସ୍ତକ ସଙ୍ଗତ । ସ୍ତ୍ରିରି ମଧ୍ୟରେ ଗାଅ ଗୀତ ॥
ନିଶି ଦିବସେ ସବୁବେଳେ । କେବଳ ଥାଅ ନାରୀମେଳେ ॥
ଏ କି ତୁମ୍ଭର ବପଘତ । କହ ହେ ଏଥିର ଚରିତ ॥
ତା ଶୁଣି ଜଗନ୍ନାଥ ଦାସ । ଛଞ୍ଚେ ଶନ୍ତଲେ ପୀତବାସ ॥
ବୋଇଲେ ଶୁଣ ଦଣ୍ଡଧାରୀ । ଖଳ ବଚନ ଶୁଣିକରି ॥
ସାଧୁଙ୍କୁ କଷଣ ଦେବାର । ଏ ଧର୍ମ ନୁହଇ ତୁମ୍ଭର ॥
ତୁମ୍ଭର ଭାବ ଅଛି ଯାହା । ଶୁଣ କହୁଛି ନରନାହା ॥
ବ୍ରହ୍ମ କ୍ଷତ୍ରିୟ ସ୍ୱରଜାତି । ଅପରେ ଯେତେ ଜନ ଛନ୍ତି ॥

ସ୍ତ୍ରୀ ସେ ପୁରୁଷ ବାଳ ବୃଦ୍ଧା । ଯେ ଅବା ଶୁଣି କରେ ଶ୍ରଦ୍ଧା ॥
ବସିବୁ ତାର ପାଶେ ଯାଇଁ । ଏଥି ସଂଶୟ କିଛି ନାହିଁ ॥
ସ୍ୱରୂପ ଶୁଣ ଦଣ୍ଡଧାରୀ । ଆମ୍ଭେତ ଅଟୁ ବ୍ରହ୍ମଚାରୀ ॥
ପୁରୁଷେ ପୁରୁଷ ଭୋଳଇ । ସ୍ତ୍ରୀଙ୍କ ସଙ୍ଗେ ପ୍ରୀତି ହେଉଁ ॥
ଏଣୁଟି ଶ୍ରୀହରି କୃପାଏ । ତରଇ କାହାକୁ ନାହିଁ ଭୟେ ॥
ତାହା ଶୁଣିଣ ନୃପବର । କ୍ରୋଧରେ କମ୍ପାଇ ଶରୀର ॥
ଦନ୍ତେ ଅଧର ଚାପି ବେଗେ । ବୋଇଲେ ଶୁଣ ଆହେ ଦାସେ ॥
ଏହାତ କହିଲ ବଚନେ । କେମନ୍ତେ ଯିବା ପ୍ରତେ ମନେ ॥
ସ୍ୱରୂପ ଯେବେ ଏ ଈଶ୍ୱର । ଦେଖାଅ ନାରୀ ରୂପ ତୋର ॥
ନୋହିଲେ ଦଣ୍ଡକୁ କାରଣ । ଅବଶ୍ୟ ହେବୁ ହପ୍ର ଶୁଣ ॥
ଏମନ୍ତ ବୋଲି ନୃପବର । ରଖାଇ ଦେଲେ ବନ୍ଦୀଘର ॥
ସେ ବନ୍ଦୀଘରେ ଦାସେ ଥାଇ । ତହେଁ ଚିନ୍ତିଲେ ଭାବଗ୍ରାହୀ ॥
ଆରତେ ଦାସ ଜଗନ୍ନାଥ । ବୋଲନ୍ତି ରଖ ଗୋପୀନାଥ ॥
ରଖ ହେ ଆରତଭଞ୍ଜନ । କଷ୍ଟ ପାବକ ପ୍ରଭଞ୍ଜନ ॥
ଦ୍ରୌପଦୀ ଲଜ୍ଜା ନିବାରଣ । କାରଣ ଆରତ ତାରଣ ॥
କୃପା ସମୁଦ୍ର ଚକ୍ରପାଣି । ଶରଣଜନ ଚିନ୍ତାମଣି ॥
ପ୍ରତାପରୁଦ୍ରର ଦଣ୍ଡରୁ । ଉଦ୍ଧର ଧର ମହାମେରୁ ॥
ଲଜ୍ଜା ସମୁଦ୍ର ପାରକର । ମୁଁ ଯେବେ ଶରଣ ତୁମ୍ଭର ॥
କରୁଣା କର ପ୍ରଭୁ ମୋତେ । କୀରତି ରହୁ ଏ ଜଗତେ ॥
ଏ ଯେ ପୁରୁଷରୂପ ଯାଉ । ସ୍ତ୍ରୀ ସ୍ୱରୂପକୁ ମୋର ଦେହ ॥
ଦେଖି ନୃପତି ମରୁ ଲାଜ । ଖଳଙ୍କ ମୁଖେ ଲଗୁ କାଳି ॥
କପଟୀଜନ ଛନ୍ଦ ଯେତେ । ଚିନ୍ତାରେ ମରନ୍ତୁ ସମସ୍ତେ ॥
ମୂର୍ଖଜନଙ୍କ ଗର୍ବ ନାଶୁ । ସାଧୁଙ୍କ ମହିମା ପ୍ରକାଶୁ ॥
ଏମନ୍ତ ଆଜ୍ଞା ହେଉ ମୋତେ । ନୋହିଲେ ହତ୍ୟା ଦେବ ତୋତେ ॥
ତୋ ପଦ ଛାଡ଼ି ଥାଉଁ ଥାଉଁ । ଏ ବନ୍ଦୀଦଣ୍ଡ କେବା ସହୁ ॥
ତୁ ଯେ ମୋହର ପ୍ରାଣନାଥ । ଏଠାରେ ନ ସରୁ ମହତ୍ତ୍ୱ ॥

ଏମନ୍ତ ବୋଲି ସ୍ତୁତି କଲେ । ଦାସେ ନିଶ୍ଚିନ୍ତେ ନିଦ୍ରାଗଲେ ॥
ତାହା ଜାଣିଲେ ଭଗବାନ । ଯେ ପ୍ରଭୁ ଭକତ ଜୀବନ ॥
ବିଜୟ କଲେ ଭାବଗ୍ରାହୀ । ଦାସଙ୍କ ପାଖୁଣତରେ ଯାଇଁ ॥
ଅଭୟ ପାଦ ଆନନ୍ଦରେ । ଲଦ୍ଧିଲେ ସେବକ ଉପରେ ॥
ବୋଇଲେ ବାଞ୍ଛା ସିଦ୍ଧିହେଉ । ପୁରୁଷ ତନୁ ତୋର ଯାଉ ॥
ହେଉ କାମିନୀ ତନୁ ପ୍ରାୟେ । ରଙ୍କା ଘରକୁ କମ୍ପା ଭୟେ ॥
ହରି ଭରସା ଥାଉଁ ଥାଉଁ । ଟଳେ କାହାକୁ ଭୟ ଆଉ ॥
ଏବେ ତ ମନେ ହେଜୁ କର । ମୋ ସୁଦର୍ଶନ ବଳଆର ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଦାସେ ଯେ ନିଦ୍ରା ଯାଇଥିଲେ । ଏମନ୍ତ ସ୍ୱପନେ ଦେଖିଲେ ॥
ଉଠିବସିଲେ ତତକ୍ଷଣ । ଚିନ୍ତିଣ କମଳା ରମଣ ॥
ଦେଖିଲେ ପାଶେ କେହି ନାହିଁ । ବୋଇଲେ ବ୍ରହ୍ମାଣ୍ଡ ଗୋସାଇଁ ॥
ନିଶ୍ଚେ କରୁଣା କରିଗଲେ । ମୋର ବିପଦ ଦେଖି ଭଲେ ॥
ଏମନ୍ତ ବୋଲି ବେଗ ହୋଇ । ନିଜ ଦେହକୁ ଦେଲେ ଚାହିଁ ॥
ଦେଖିଲେ ସ୍ତିରୀ ଦେହ ଗୋଟି । ହୋଇଣ ମୋହୁଅଛି ଦୃଷ୍ଟି ॥
ବିଚାର କଲେ ମନେ ତାର । ଧନ୍ୟ ଜୀବନ ହେଲା ମୋର ॥
ଯେବଣ ପାଦ ପଦ୍ମ ଲାଗି । ଅହଲ୍ୟା ହେଲା ମୋକ୍ଷ ଭାଗୀ ॥
ଯେଉଁ ଚରଣ ଲାଗିକରି । କୁବୁଜା ହୋଇଲା ସୁନ୍ଦରୀ ॥
ଯେବଣ ପାଦପଦ୍ମ କଲେ । ଫଣିମଣିକ ଚିହ୍ନ କଲେ ॥
ଯେବଣ ପାଦପଦ୍ମ ବାରି । ଶଙ୍କର ମଉଳିଲେ ଧରି ॥
ସଂସାରେ ଗଙ୍ଗାରୂପେ ବହି । ଅଶେଷ ପ୍ରାଣିଙ୍କି ତାରଇ ॥
ସେ ପାଦପଦ୍ମ ରଜ ପାଇ । ପବିତ୍ର ହେଲି ଆଜ ମୁହିଁ ॥
ଆଉ କାହାକୁ ମୋର ଡର । ମୋ ପ୍ରଭୁ ବଳେ ବଳଆର ॥
ଏମନ୍ତ ବୋଲି ଅତି ତୋଷେ । ମଧ୍ୟରୁ ବାହାରିଲେ ଦାସେ ॥
ଭଜିଲେ ରାମକୃଷ୍ଣ ହରି । ବୋଇଲେ କାହିଁ ଦଣ୍ଡଧାରୀ ॥
ମନେ ଯେ କରୁଥିଲା କୋପ । ଦେଖ ଆମ୍ଭର ସ୍ତିରୀରୂପ ॥

ଏମନ୍ତ ବୋଲି ମାୟାନାରୀ । ରଜା ଦୂତଙ୍କୁ ସଙ୍ଗେ ଧରି ॥
ଚଳିଲେ ଅତ୍ୟନ୍ତ ହରଷେ । ଭେଟିଲେ ଯାଇଁ ରଜା ପାଶେ ॥
ଦେଖି ନୃପତି ଆଚମ୍ଭିତ । ବୋଇଲେ ଏ କି ବିପରୀତ ॥
ସ୍ତନ ବଦନ ଅଙ୍ଗେ ଶୋଭା । କି ଅବା ପଟାନ୍ତର ଦେବା ॥
ସୁନ୍ଦରପଣେ ଏହୁ ନାରୀ । ମୋହି ପାରଇ ବ୍ରହ୍ମଋଷି ॥
କେମନ୍ତେ ଏ ରୂପ ହୋଇଲା । ପୁରୁଷ ତନୁ କେଉଁଣେ ଗଲା ॥
ନିଶ୍ଚୟେ ଗୋବିନ୍ଦର ମାୟା । ଆନର ବଳେ କାହିଁ ଏହା ॥
ଏମନ୍ତ ବିଚାରି ନୃପତି । ହରିପଦ୍ମରେ କଲା ସ୍ତୁତି ॥
ବୋଇଲେ ଶୁଣ ଆହେ ଦାସେ । ମାୟା ଯେ କଲ ଆମ୍ଭ ପାଶେ ॥
ଏହା କେମନ୍ତେ ଜଣାଯିବ । ଦେଖାଅ ନାରୀଙ୍କ ସ୍ୱଭାବ ॥
ତା ଶୁଣି ସେ ମାୟାସୁନ୍ଦରୀ । ମନେ ଚିନ୍ତିଲେ ନରହରି ॥
ଅଳପ ମନ୍ଦେ ମନ୍ଦେ ହସି । ନୟନ ଅପାଙ୍ଗରେ ଝୋସି ॥
ଭଳକୁ କଲେ ଚନ୍ଦ୍ରାନନ । ବୋଇଲେ ଶୁଣ ହେ ରାଜନ ॥
କେତେ କଟାକ୍ଷ କରୁ ମୋତେ । ଯେମନ୍ତେ ହେବ ତୋର ହିତେ ॥
ଏମନ୍ତ ବୋଲି ବାସ ଧରି । ଦେଖାଇ ଦେଲେକ ସୁନ୍ଦରୀ ॥
ସ୍ତ୍ରୀରୀସ୍ୱଭାବେ ରଜପତି । ପ୍ରତ୍ୟକ୍ଷେ ଦେଖିଲେ ନୃପତି ॥
ସଭାରେ ଥିଲେ ଯେତେ ଜନ । ସମସ୍ତେ ଦେଖିଲେ ନୟନ ॥
ବୋଇଲେ ସ୍ୱରୂପ ଏ କଥା । କେ ଏହା କରିପାରେ ମିଥ୍ୟା ॥
ନିଶ୍ଚେ ଏ ଶ୍ରୀହରିର ଦାସ । ରାଜନ କର ହେ ବିଶ୍ୱାସ ॥
ସାଧୁରେ ଅପରାଧ କଲେ । ସମସ୍ତେ ନାଶ ଯିବା ଭଲେ ॥
ଏହା ଶୁଣିଣ ମହାରାଜା । କଲେ ଦାସଙ୍କ ପାଦପୂଜା ॥
ଅନେକ ଧନ ବସ୍ତ୍ର ଦେଲେ । ଚରଣେ ବିନୟ ହୋଇଲେ ॥
ବୋଇଲେ ଶୁଣ ଗୋ ବଚନ । ଦୁଃଖ ନ କର ତୁମ୍ଭ ମନ ॥
କହ କ୍ଷମା ଭଗବତ ରସ । ଏ ମୋର ଅପରାଧ ନାଶ ॥
ଶ୍ରବଣେ କର୍ଣ୍ଣ ସୁଖୀ ହେଉ । ଅଶେଷ ଜନ୍ମ ପାପ ଯାଉ ॥
ଏଥିରେ ନ କର ବିଚାର । ତା ଶୁଣି ଜଗନ୍ନାଥ ଦାସ ॥

ହୋଇଣ ପରମ ଆନନ୍ଦ । ଛନ୍ଦେ ଚଳିଲେ ଆଦିକନ୍ଦ ॥
ପଶିଲେ ଜଳ ମଧ୍ୟେ ଯାଇଁ । ସ୍ନାନ ଯେ କରିବାର ପାଇଁ ॥
କାମିନୀରୂପ ଗୋପ୍ୟ କଲେ । ପୁରୁଷ ସ୍ୱରୂପ ହୋଇଲେ ॥
ସମସ୍ତେ ଦେଖୁଁ ଦେଖୁଁ ତହିଁ । ସ୍ନାନ ଶଉଚକର୍ମ ହୋଇ ॥
ବସିଲେ ନୃପତି ସଭାରେ । ଅତ୍ୟନ୍ତ ହରଷ ମନରେ ॥
ଗାୟନ କଲେ ଭାଗବତ । ଯେ ଶୁକଦେବଙ୍କ ଉକତ ॥
ପ୍ରାକୃତବନ୍ଧେ ଥିଲେ କରି । ସେ ମହାପୁରାଣ ବିସ୍ତାରି ॥
କହିଲେ ନୃପତି ଅଗ୍ରତେ । ଆଦ୍ୟରୁ ପ୍ରାନ୍ତ ପରିଯନ୍ତେ ॥
ଶୁଣି ନୃପତି ସଭାଜନେ । ଅତି ହରଷ ହୋଇ ମନେ ॥
ଦାସଙ୍କୁ ଅନେକ ପ୍ରଶଂସି । ବୋଇଲେ ତୁମ୍ଭେ ବ୍ରହ୍ମଋଷି ॥
ତୁମ୍ଭ ମହିମା ବୁଝିବାରେ । କେ ଅବା ଅଛୁ ଏ ସଭାରେ ॥
ଏଥିକୁ ଶୋଚନା ନ କର । ବୋଲି ଉଠିଲେ ଦଣ୍ଡଧର ॥
ଆପଣା ଅଙ୍ଗ ଅଳଙ୍କାର । କାଢ଼ିଣ ଦାସଙ୍କ ଛାମୁର ॥
ରଖିଣ ଦଣ୍ଡବତ କଲେ । ଆଜ ମୁଁ ଶରଣ ବୋଇଲେ ॥
ଏମନ୍ତ ବୋଲି ସେ ରାଜନ । ଚନ୍ଦ୍ରାର୍କେ ଦେଲ ଭୂମିଦାନ ॥
ଗୃହ ସହିତେ ଦାନ ଦେଇ । ଦାସେଙ୍କୁ ମେଳଣି କରାଇ ॥
ଏଥିଉତ୍ତାରୁ ଦଣ୍ଡଧାରୀ । ଖଟୁଆମାନଙ୍କୁ ହକାରି ॥
ଡେଙ୍ଗି ବଡୁକ ପୃଷ୍ଠ ପିଟି । ସବୁଙ୍କୁ କଲେ ସାତବେଣ୍ଟି ॥
ଅନେକ ଶାସ୍ତି ତାଙ୍କୁ କଲେ । ରାଜ୍ୟ ବାହାର କରାଇଲେ ॥
ବୋଇଲେ ଆଜ୍ଞା ଏ ରାଜ୍ୟରେ । ଯେ ଅବା ସାଧୁଜନଠାରେ ॥
ଦୂଷଣ ବଚନ କହିବ । ତାହାର ବଂଶ ନାଶପିବ ॥
ଏମନ୍ତ ବୋଲି ଦଣ୍ଡଧର । ବିଜୟ କଲେ ନିଜପୁର ॥
ତେବଣେ ଯେ ଦାସେ ଗଲେ ଚଳି । ନିଜଭୁବନେ ଯାଇଁ ମିଳି ॥
ଆନନ୍ଦେ ବଞ୍ଚାଇଲେ ଦିନ । ଭଜିଣ ଶ୍ରୀମଧୁସୂଦନ ॥
କାଳେ ଲଭିଲେ ହରି ଭକ୍ତି । ସଂସାର ମଧ୍ୟେ ଅଛି କୀର୍ତ୍ତି ॥
ଶୁଣ ସୁଜନ ଶୁଦ୍ଧଚିତ୍ତେ । ଏ କାର୍ଯ୍ୟ ଭକ୍ତିରସାମୃତେ ॥

ପଢ଼ି ଶୁଣିବେ ଯେଉଁ ଜନେ । ନ ଯିବେ ଶମନ ସଦନେ ॥
ଅଶେଷ ଜନ୍ମ ପାପ ନାଶି । ଦେବଙ୍କ ସଙ୍ଗେ ଥିବ ବସି ॥
ଜନ୍ମର ବପ୍ର ଯମ ବାସ । ମୁକତି ଅଟଇ ବିଶ୍ୱାସ ॥
ବିଶ୍ୱାସ ବିନା କର୍ମ ଯେତେ । କେବଳ ଆଶ୍ରୟ ଜଗତେ ॥
ଏଣୁ ପାମର ଯମବାସ । ସାଧୁ ଚରଣେ କରେ ଆଶ ॥
ସୁଜନେ ଏହି ରସେ ରସ । ଏ ଭବଜଳରେ ନ ଭାସ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ଜଗନ୍ନାଥଦାସ ଦାଢ଼୍ୟଭାବ ମୋକ୍ଷଣେ
ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡ଼ଶ ଅଧ୍ୟାୟ
## ମାଧବାଚାର୍ଯ୍ୟ ସମ୍ବାଦ
### ଚୈତନ୍ୟ ଉବାଚ

ଏବେ ହେ। ମନରାୟ ଶୁଣ । ଏ ଦାର୍ଢ୍ୟଭକ୍ତିର ଲକ୍ଷଣ ॥
ସେ ପୁଣ୍ୟ-ଭଙ୍ଗାନଦୀ ତୀର । ବର୍ଦ୍ଧମାନନଗରରେ ଘର ॥
ଜାତିରେ ଅଟେ ବିପ୍ରବର । ମାଧବାଚାର୍ଯ୍ୟ ନାମ ତାର ॥
ଧାର୍ମିକ ବିବେକ ସୁଜାଣ । ସକଳ ଗୁଣରେ ନିପୁଣ ॥
ସକଳ ଜନେ ତାର ବଶ୍ୟା । ଶାନ୍ତ ସୁଶୀଳ ସେ ନିର୍ମାୟା ॥
ଦାନ ସୁକୃତେ ତାର ମତି । ସାଧୁଙ୍କ ସେବା କରେ ନିତି ॥
ପ୍ରଭୁ ସେବାରେ ଦୃଢ଼ବ୍ରତ । ନାମଭଜନେ ଅପ୍ରମିତ ॥
ଶୁଭ କର୍ମରେ ବଞ୍ଚେ ଦିନ । ନ ଜାଣେ ଅନ୍ୟ କଥାମାନ ॥
ତାର ଭାରଯା ମହାସତୀ । ନାମ ତାହାର ସତ୍ୟବତୀ ॥
ସୁନ୍ଦରପଣେ ସେ ତରୁଣୀ । ତ୍ରିପୁର ଯାକ ପାରେ ଜିଣି ॥
ଶରଦ ସୁଧାଂଶୁ ବଦନୀ । କରଇ ହୀରକ ଦଶନା ॥
ସେ ଯେ ଚତୁରୀ ଶିରୋମଣି । ଶ୍ରୀକୃଷ୍ଣର ଚିତ୍ତ ଭଜୁଣୀ ॥
ସ୍ୱାମୀର ଆଜ୍ଞା ନ ମେଣ୍ଟଇ । ନିରତେ ଚରଣେ ଖଟଇ ॥

ସ୍ୱାମୀର ସେବା ତାର ମୂଳ । ନ ଜାଣେ ସେ ଅନ୍ୟ କୁଶଳ ॥
ଏମନ୍ତ ପତିବ୍ରତା ନାରୀ । କେବଳ ଭଜଥାଇ ହରି ॥
ପତି ଶ୍ରୀପତି ସାଧୁଜନ । ଏ ତିନି ମଣଇ ସମାନ ॥
ଏମନ୍ତେ ପତି ପତ୍ନୀ ଦୁଇ । ଏକଇ ପ୍ରାଣ ଭିନ୍ନ ନୋହି ॥
ଆନନ୍ଦେ ବଞ୍ଚୁଥାନ୍ତି ଦିନ । ଏଥିଉତ୍ତାରୁ ଶୁଣ ମନ ॥
ତାହାର ଏକଇ କୁମର । ଛ ମାସ ହେଲା ଜନ୍ମ ବାର ॥
ଅତି ସୁନ୍ଦର ସେ କୁମର । ମାତା ପିତାଙ୍କ ମନୋହର ॥
ଚନ୍ଦ୍ରମା ପ୍ରାୟେ ଦେହ ତାର । ଉଜ୍ଜ୍ୱଳ କରଇ ଅନ୍ଧାର ॥
ତାତ ଜନନୀ ତାହା ଦେଖି । ନିରତେ ହୋଇଥାନ୍ତି ସୁଖୀ ॥
ପୁତ୍ରକୁ ଧରି କାଖେ କୋଳେ । ଦିନ ବଞ୍ଚନ୍ତି ସୁଖହେଳେ ॥
ଏମନ୍ତ ସମୟରେ ତହିଁ । ଯେ ପ୍ରଭୁ ଚୈତନ୍ୟଗୋସାଇଁ ॥
ଅଶେଷ ପ୍ରାଣୀଙ୍କ କଲୁଷ । କରିବା ଅର୍ଥେ ପ୍ରଭୁ ନାଶ ॥
ହୋଇଅଛନ୍ତି ଅବତାର । ସେ ପ୍ରଭୁ ଏକ ଦିନକର ॥
ନଶି ପ୍ରହରେ ଅଛି ହୋଇ । ଅତି ଆନନ୍ଦେ ବେନି ଭାଇ ॥
ନଗ୍ରପ୍ରାନ୍ତେ ବଜେଇଲି । ସକଳ ସାଧୁଙ୍କୁ ହକାରି ॥
ତାଳ ମୃଦଙ୍ଗ ଅଣାଇଲେ । ଭକ୍ତମାନେ ଲଗାଇଲେ ॥
ବଜାଇ ଶିଙ୍ଗା ବେଣୁସ୍ୱନ । ଆନନ୍ଦେ କଲେ ସଂକୀର୍ତ୍ତନ ॥
ଶ୍ରୀରାମକୃଷ୍ଣ ଗୁଣ ଯେତେ । ଗାନ କରନ୍ତି ଅବିରତେ ॥
ନାଚନ୍ତି ଅତି ଭୋଳହୋଇ । ଉର୍ଦ୍ଧ୍ୱ ବାହୁ ପକାଇ ॥
ତା ଶୁଣି ଅତି ବେଗହୋଇ । ମାଧବାର୍ଘ୍ୟ ଗଲେ ଧାଇଁ ॥
ଶୁଣିଲେ ନାମ ସଂକୀର୍ତ୍ତନ । ଏଥିଉତ୍ତାରୁ ଶୁଣ ମନ ॥
ପତି ଆସନ୍ତେ ସତ୍ୟବତୀ । ରନ୍ଧନ କର୍ମେ ଥିଲେ ମତି ॥
ହୋଇଲେ ଧରଣ ନଗ ବାଳ । ଅତି କୋମଳ ତୁମ୍ବି ଫଳ ॥
ବ୍ୟଞ୍ଜନ କରିବାର ଅର୍ଥେ । ପନିକ ପକାଇ ତୁରିତେ ॥
ସେ ଫଳ କାଟନ୍ତେ କାମିନୀ । କର୍ଣ୍ଣେ ଶୁଭିଲା ନାମ ଧ୍ୱନି ॥
ଶ୍ରୀସଂକୀର୍ତ୍ତନର ମଧ୍ୟରେ । ଗାନ କରନ୍ତି ଉଚ୍ଚସ୍ୱରେ ॥

ରାଧା ଶ୍ରୀକୃଷ୍ଣ ପ୍ରେମଲୀଳା । କର୍ଣ୍ଣରେ ଶୁଣି ହେଲ ଭୋଳା ॥
ପୁଲକ ହେଲ ରୋମାବଳୀ । ନେତ୍ର ଲୋତକଧାର ଗଳି ॥
ବଦନୁ ନସ୍ଫୁରେ ବଚନ । ଦେହୁ ହଜିଲ ବୁଦ୍ଧି ଜ୍ଞାନ ॥
ଲମ୍ଫ ଲାଗିଲ ସଂକୀର୍ତ୍ତନେ । ସୁସାଧୁମାନଙ୍କର ଗାନେ ॥
ଏଣୁ ସେ ଅତି ଭାବ ଭୋଳେ । ସେ ଫଳ ପକାଇଲ ତଳେ ॥
ଧଇଲ ଝଡ଼ପୁଷ ଗୋଟି । ତକ୍ଷଣେ ପକାଇଲ ଭାଟି ॥
ଅତ୍ୟନ୍ତ ଟିକ ଟିକ କରି । ତକୁଆ ଆଟିକାରେ ଭରି ॥
ବ୍ୟଞ୍ଜନ ଅର୍ଥେ ଚୁଲିପରେ । ବସାଇ ଦେଲ ଧାତକାରେ ॥
ଆଣେ ଅନଳ ନଦେଲ୍ଲ ଜାଳି । ତହୁଁ ଅନ୍ତର ହେଲ ବାଳୀ ॥
ମନ ନବେଶି ସଂକୀର୍ତ୍ତନେ । ବସିଲ ନଶ୍ଚଳ ଆସନେ ॥
ଶ୍ରୀକୃଷ୍ଣ ପ୍ରେମଲୀଳାମୃତ । ଶୁଣି ହୋଇଲ ମୂର୍ଚ୍ଛିତ ॥
କ୍ଷଣ କ୍ଷଣକେ ଭାବ ହୃଦେ । ଗାନ କରଇ ପଦେ ପଦେ ॥
କ୍ଷଣକେ ହସି କ୍ଷଣେ ଝୁନ । କ୍ଷଣକେ ପଡ଼ଇ ମେଦିନୀ ॥
ଏମନ୍ତ ଭାବେ ହୋଇ ଭୋଳ । ତାହା ଜାଣିଲେ ଆଦିମୂଳ ॥
ମାଧବାଚାର୍ଯ୍ୟ କଣ୍ଠେ ବସି । ମନ ମୋହିଲେ ବ୍ରହ୍ମବଶି ॥
ସେ ବସ୍ତ୍ର ଚାଣ୍ଡି ଛନ ଛନ । ଛୁଟିଲ ସଂକୀର୍ତ୍ତନ ମନ ॥
ଅତି ତଞ୍ଚଙ୍କେ ଗଲ ଚଳି । ନିଜଭୁବନେ ଯାଇଁ ମିଳି ॥
ଦେଖିଲ ନିଜ ସ୍ତ୍ରୀ ସୁତା ତାର । ରୁଧିରେ ତନୁ ଜରଜର ॥
ଭାବେ ହୋଇଲ ମୂର୍ଚ୍ଛିତ । ବସ୍ତ୍ର କପାଳେ ମାରେ ହସ୍ତ ॥
ପତ୍ନୀକ ଧରଣ ଉଚିତ । ବୋଇଲ୍ଲ ଏକ ଉପଘାତ ॥
ଫେଡ଼ ତୁ କହ ତତପର । କାହିଁ ତୋ ବାଳୁଙ୍କୁମର ॥
ଶୁଣି ସୁନ୍ଦରୀ ଚେତା ପାଇ । ପାଶେ ଦେଖିଲ ପୁତ୍ର ନାହିଁ ॥
ତନୁ ବସନ ନାରଖାର । ରକତେ ଦଶେ ଜରଜର ॥
ତଳେ ପଡ଼ିଛୁ ଫଳଗୋଟି । ଦେଖିଣ ଚକିତ ବମ୍ବୋଷ୍ଠୀ ॥
ବେଗେ ରନ୍ଧନପୁରେ ଗଲ । ଚୁଲ୍ଲୀରୁ ଉଭବଟେ ଅଣିଲ ॥
ଦେଖିଲ ପୁତ୍ରମାଂସ ସିଝି । ରହିଛି ପକ୍ୱ ସ୍ୱାଦେ ଭଜି ॥

ପତି ଗ୍ରାମୁରେ ବେଳ ଥୋଇ । ବୋଇଲ ମୋର ଦୋଷନାହିଁ ॥
କେବଳ ଚୈତନ୍ୟ ସନ୍ନ୍ୟାସ । ଶ୍ରୀକୃଷ୍ଣ ରାଧା ପ୍ରେମରସ ॥
ତାମ୍ବୁଳ କଲେ ଉଚସ୍ୱରେ । ସେ ଧ୍ୱନି ଶୁଣି ଶ୍ରବଣରେ ॥
ଦେହରୁ ହଜିଲା ମୋ ଜ୍ଞାନ । ଲହ୍ଲା ସଂକୀର୍ତ୍ତନେ ମନ ॥
ତେଣୁକି କଲି ପୂଜନାଶ । ହବ୍ଭର ଏଥେଁ କାହା ଦୋଷ ॥
ତା ଶୁଣି ବୋଲେ ତାର ପତି । ଧନ୍ୟ ଜୀବନ ତୋର ସତି ॥
ଧନ୍ୟ ତୋହର ତାତ ମାତା । ଧନ୍ୟ ମୁଁ ଅଟେ ତୋରଭର୍ତ୍ତା ॥
ଧନ୍ୟ ଅଟଇ ତୋ ଜୀବନ । କୃଷ୍ଣ ବିଷୟେ ତୋର ମନ ॥
ପୂଜ ମୋ ଗଲେ ପଛେ ଯାଉ । ଏ ହୃଦ ଦେଖିବ ମୁଁ କାହୁଁ ॥
ଏମନ୍ତ ବୋଲି ନିଜପତି । କୋଳେ ବସାଇ ସେ ଯୁବତୀ ॥
ମୁଖେ ଚୁମ୍ବନ ତାର ଦେଇ । କହେ ଅଚନ୍ତେ ରହ ସହି ॥
ତା ଶୁଣି ବୋଲେ ସେ ଯୁବତୀ । ଶୁଣ ମୋହର ପ୍ରାଣପତି ॥
ସେ ରାଧା କୃଷ୍ଣର ମହିମା । ଜାଣି ନ ପାରେ ବେଦବ୍ରହ୍ମା ॥
ସେ କୃଷ୍ଣ ପ୍ରେମରସେ ରସି । ଅଛନ୍ତି ଚୈତନ୍ୟ ସନ୍ନ୍ୟାସୀ ॥
ଭକତ ବନ୍ଧୁ ସଙ୍ଗତରେ । ଆନନ୍ଦେ ସଂକୀର୍ତ୍ତନ କରେ ॥
କୃଷ୍ଣ ମହିମା ଯେବେ ସତ । ନଷ୍ଟେ ଜୀଇଁବ ମୋ ବାଳୁତ ॥
ତହିଁ ବୁଡ଼ିଛି ମୋର ମନ । କମ୍ପା ମଣିବ ମୋ ନନ୍ଦନ ॥
ଏମନ୍ତ ବୋଲି ସେ ସୁନ୍ଦରୀ । ପତିକ ସଙ୍ଗତରେ ଧରି ॥
ମାଂସ ଆଟିକା ମାଥେ ବହି । ଚଳିଲେ ଅତି ବେଗେହେଇ ॥
ମିଳିଲେ ସଂକୀର୍ତ୍ତନ ମଧ୍ୟେ । ଅତ୍ୟନ୍ତ ମନର ଆନନ୍ଦେ ॥
ଆଟିକା ତଳରେ ଥୋଇଲେ । ସକଳ ବୃତ୍ତାନ୍ତ କହିଲେ ॥
ତାହା ଶୁଣିଣ ସାଧୁମାନେ । ଚୈତନ୍ୟଦେବଙ୍କର ସନେ ॥
ବୋଇଲେ ଧନ୍ୟ ଏ ସୁନ୍ଦରୀ । ଧନ୍ୟ ଏହାର ଗର୍ଭଧାରୀ ॥
ଧନ୍ୟ ଅଟଇ ଏହା ପତି । ଧନ୍ୟ ଅଟଇ ଏହା ମତି ॥
ଧନ୍ୟ ସୁଫଳ ଆମ୍ଭ ଆଖି । ଏମନ୍ତ ସ୍ତ୍ରୀ ଶ୍ରୀମୁଖ ଦେଖି ॥
ଏମନ୍ତ ବୋଲି ସର୍ବଜନେ । ଅତି ଆନନ୍ଦ ହୋଇ ମନେ ॥

ବୋଇଲେ ନମୋ ମହାବାହୁ । ଜଗତ ବାନ୍ଧବ ବୋଲାଉ ॥
ଅଶେଷଜନ ଚିନ୍ତାମଣି । ବ୍ରଜମୋହନ ବଂଶୀପାଣି ॥
ନମସ୍ତେ ବ୍ରଜେନ୍ଦ୍ର କୁମାର । ନମୋ ରାଧିକା ପ୍ରାଣେଶ୍ୱର ॥
ଏ ଭୂମି ବୃନ୍ଦାବନ ସ୍ଥଳ । ବ୍ରହ୍ମାଦିଦେବଙ୍କୁ ଦୁର୍ଲ୍ଲଭ ॥
ଏ ସ୍ଥଳେ ଚଉ ବେଢ଼ଇବାର । ପୂର୍ବ ମାଗିଲ ସେ ସୁନ୍ଦର ॥
ଏ କଥା ଅଟେ ବଡ଼ପ୍ରଖ୍ୟାତ । ମହିମା ଅଟେ ତୋର ସତ ॥
ଏ ପୁଣ୍ୟ ପୁରୀ ପୂର୍ଣ୍ଣ ଥାଉ । ମହିମା ଯୁଗେ ଯୁଗେ ଥାଉ ॥
ନାମ ମହିମା ଏଣେ ବଢ଼ୁ । ସାଧୁଙ୍କ ମହିମା ପ୍ରକାଶୁ ॥
ଏମନ୍ତ ବୋଲି ସର୍ବଜନେ । ମାତିଲେ ନାମ ସଂକୀର୍ତ୍ତନେ ॥
ନୃତ୍ୟେ ଚୈତନ୍ୟ ଦୁଇଭାଇ । ଆନନ୍ଦେ ଗଦ ଗଦ ହୋଇ ॥
ଶ୍ରୀରାଧା କୃଷ୍ଣ ଚିନ୍ତାକରି । କରେ ତୁଳସୀଜଳ ଧରି ॥
ବ୍ୟଞ୍ଜନ ଖଣ୍ଡେ ପକାଇଲେ । ମଣ୍ଡଳ ମଧ୍ୟେ ବସାଇଲେ ॥
ଚହୁଁ ଡାକିଲେ ପୁଣ ଗୋଟି । ସ୍ଥଳେ ଶ୍ରୀହରି ନାମଗୋଟି ॥
ବୋଇଲେ ଏହି ଆଜ୍ଞା ଦେଉ । ବିପ୍ର ନନ୍ଦନ ପ୍ରାଣ ପାଉ ॥
ଏମନ୍ତ ବୋଲି ଆଜ୍ଞାକରି । ଶ୍ରୀକରେ କରତାଳ ଧରି ॥
ଗାୟନ କଲେ ଉଚ୍ଚସ୍ୱରେ । ଶ୍ରୀକୃଷ୍ଣ ଯୁଗଳ ସ୍ତବରେ ॥
ବଣ୍ଡ ବଣ୍ଡଳେ ହରି ଧ୍ୱନି । କରନ୍ତେ କମ୍ପିଲ ମେଦିନୀ ॥
କେ ରଙ୍ଗେ କରେ ନାନା ନୃତ୍ୟ । କେ ରଙ୍ଗ କରି ଗାଏ ଗୀତ ॥
କେ ଅଙ୍ଗ ଢାଳି ଭଙ୍ଗ ହୋଇ । ରଙ୍ଗରେ ମୃଦଙ୍ଗ ବଜାଇ ॥
କେ କରେ ଦେଇ କରତାଳ । କେ ମୁଖେ ଦେଇ ହୁଳହୁଳ ॥
ନଦିଆ ନଗରରେ ଯେତେ । ଯେ ସ୍ତ୍ରୀ ପୁରୁଷ ସହିତେ ॥
ବୃଦ୍ଧ ବାଳକ ଯୁବା ଯାଏ । ସମସ୍ତେ କଲେ ଜୟେ ଜୟେ ॥
ସକଳ ମୂର୍ଖ ଏହା ଶୁଣି । ଆନନ୍ଦ ହୋଇଲା ଧରଣୀ ॥
ଏମନ୍ତ ବଡ଼ ଖଣ୍ଡ ପଡ଼ି । ବ୍ରହ୍ମାଣ୍ଡ ନାୟକ କୃପାରେ ॥
ଯେ ନାମ ବ୍ରହ୍ମ ମହିମାରେ । ଚୈତନ୍ୟଦେବଙ୍କ କୃପାରେ ॥
ଆବର ସାଧୁଙ୍କ କୃପାରେ । ଶେଷେ ସୁରକ୍ଷ ସନ୍ତୋଷରେ ॥

ବାଳୁତ କୋଟି ପ୍ରାଣ ପାଇ । ଚେତନ କଲା ଖଣ୍ଡେ ଆଇ ॥
ତାହା ଦେଖିଣ ସର୍ବଜନ । ଉଠିଲେ ନାମ ସଂକୀର୍ତ୍ତନ ॥
ଅତ ଆନନ୍ଦମନ ମତାଇ । ଗାୟନ କଲେକ ଗୋସାଇଁ ॥
ଖଣ୍ଡ ତାଙ୍କୁଣି ଫେଡ଼ ଦେଲେ । ପୁତ୍ରକୁ ଘେନଣ ଅଇଲେ ॥
ସଭାରେ ଆସନ ନଦେଖି । ବସିଲେ ଚୈତନ୍ୟ ସନ୍ନ୍ୟାସୀ ॥
ପୁତ୍ରକୁ କୋଳରେ ବସାଇ । କର୍ଣ୍ଣରେ ସଞ୍ଜୀବନୀ କହି ॥
କୃପାରୁ ଯେଣୁ ପ୍ରାଣପାଇ । କୃପା ଆଚାର୍ଯ୍ୟ ନାମ ବହି ॥
ଜନନୀକୋଳେ ନେଇ ଦେଲେ । ନିଅ ତୋ ପୁତ୍ରକୁ ବୋଇଲେ ॥
ଅଶେଷ ଜନ ତାହା ଦେଖି । ସୁଫଳ କଲେ ଚର୍ମଆଖି ॥
ଜନନୀ ନିଜସୁତ ପାଇ । ଆନନ୍ଦ କେ ପାରିବ କହି ॥
ଧନଜନରେ କୋଟିଖଣ୍ଡ । ମିଳିଲେ ହୁଅଇ ଯେମନ୍ତ ॥
ଆଜନ୍ମ ପଙ୍ଗୁ ମୁକ୍ତ ହେଲେ । ମୂକ ଯେ ବଚନ କହିଲେ ॥
ଆଜନ୍ମ ଅନ୍ଧ ଚକ୍ଷୁପାଇ । ଯେମନ୍ତେ କୃତାର୍ଥ ହୁଅଇ ॥
ପାପିଷ୍ଠ ବୈକୁଣ୍ଠ ଗମନେ । ଯେମନ୍ତେ ହୁଏ ତାର ମନେ ॥
ଏମନ୍ତ ହେଲା ସେ ସୁନ୍ଦରୀ । ନିଜ ବାଳକ ପାଇକରି ॥
କେ କହୁ ପିଅର ଆନନ୍ଦ । ମୁଖ ପ୍ରକାଶେ ପୂର୍ଣ୍ଣଚନ୍ଦ୍ର ॥
ଅଶ୍ରୁତ ଅଗୋଚର ଯାହା । ନୟନେ ଦେଖି କଲ ତାହା ॥
ସାଧୁଙ୍କୁ ଅନେକ ପ୍ରଶଂସି । ଅନେକ ଧନ ଦେଲା ତୋଷି ॥
ତାହା ଦେଖିଲେ ଯେତେ ଜନ । ସଭିଙ୍କ ମୁଖେ ଧନ୍ୟ ଧନ୍ୟ ॥
କୃଷ୍ଣ ମହିମା ଭାବ ଯେତେ । କୋଳିଣ ଗଲେ ଯେଝାମତେ ॥
ସେ ପତ ପତ୍ନୀ ପୁତ୍ର ଧରି । ଚଳିଣ ଗଲେ ନିଜପୁରୀ ॥
ଚୈତନ୍ୟଦେବଙ୍କ ଚରିତ୍ର । ଶ୍ରୀରାଧାକୃଷ୍ଣ ପ୍ରେମରସ ॥
ସାଧୁମାନଙ୍କ ଗୁଣ ଯେତେ । ନାମର ମହିମା ସଙ୍ଗତେ ॥
ନରକେ ଛଡ଼େ ଗୁଣ ଗୁଣି । ବଞ୍ଚିଲେ ଦିବସ ରଜନୀ ॥
ଏମନ୍ତେ କେତେଦିନ ଅନ୍ତେ । ହରିଙ୍କ ଭଜିଲେ ସାକ୍ଷାତେ ॥
ଶୁଣ ସୁଜନ ଏ ଚରିତ । ବାର୍ଦ୍ଧ୍ୟଚାଭକ୍ତ ରସାମୃତ ॥

ଶ୍ରବଣେ ଶ୍ରଦ୍ଧା ଯେଉଁ ନର । ଜନ୍ମ ମରଣୁ ହେବ ପାର ।
ହରି ଭକତଜନ କଥା । ତାହାଙ୍କୁ ସତ୍ୟ ଏହୁ କଥା ।
ଭାନ୍ତ କ ମୂର୍ଖ ଯେଉଁ ନର । ସେ କାହିଁ କରିବ ଗୋଚର ।
ସେ କଥା ପରତେ କରିବ । ହାସ୍ୟରେ ଉଡ଼ାଇଣ ଦେବ ।
କହଇ ବସ୍ତ୍ର ରାମ ଦାସ । ମୋ ପ୍ରଭୁ ଚୈତନ୍ୟ ସନ୍ୟାସୀ ।
ଆବର ସାଧୁଜନ ଯାବେ । ମୋ ଚଞ୍ଚ ରହୁ ଅପ୍ରମାଦେ ।

ଇତି ଶ୍ରୀ ବାର୍ଦ୍ଧ୍ୟଚାଲକ୍ତ ରସାମୃତେ ମନ ଚୈତନ୍ୟ ସମ୍ବାଦେ
ମାଧବାର୍ଯ୍ୟ ପଣ୍ଡ ଗହ୍ନୀ ବାର୍ଦ୍ଧ୍ୟଜ୍ଞାବ ମୋକ୍ଷଣେ
ନାମ ଷୋଡ଼ଶୋଽଧ୍ୟାୟଃ ।

—:*:—

## ସପ୍ତଦଶ ଅଧ୍ୟାୟ
## ଖୋଲିଆ କବୀର ସମ୍ବାଦ

ଚୈତନ୍ୟ ଦେବ ଅନ୍ତ ଭାବେ । କହଇ ମନ ରଙ୍ଗ ଆଗେ ।
ଅନ୍ତ ଆନନ୍ଦ ଦିବ୍ୟ ରସ । କେବଳ ଶ୍ରବଣେ ପୀୟୂଷ ।
ହେ ମନ ହୁଅ ସାବଧାନ । ଚଞ୍ଚଳ ନକର ତୋ ମନ ।
ଏ ବଡ଼ ଆଚମ୍ଭିତ କଥା । ଶୁଣି ଖଣ୍ଡିବ ଭବବ୍ୟଥା ।
ଆନନ୍ଦେ ଶୁଣ କର୍ଣ୍ଣ ପୁଟେ । ଯେ ପୁଣ୍ୟ ଗଙ୍ଗାନଗ୍ରୀ ତଟେ ।
ହୁଗଳି ମଧ୍ୟରେ ତା ଘର । ନାମ ତା ଖୋଲିଆ କବୀର ।
ବାଘ ତନୟ ତାର ନାହିଁ । ସେ ଜନେ ମାତା ପୁତ୍ର ଦୁଇ ।
ଏମନ୍ତେ ଥାନ୍ତି ଦେହଜନ । ଜାତିରେ ଅଟନ୍ତି ପଠାଣ ।
ଅତ୍ୟନ୍ତ ଦରିଦ୍ର ଜୀବନ । କଷ୍ଟରେ ବଞ୍ଚି ଥାଇ ଦିନ ।
ବସ୍ତ୍ର ଖଣ୍ଡିଏ ନଡ ନଡ । ଭଣ ଜରିଣ ବୁଣୁଥାନ୍ତି ।
ସେ ବସ୍ତ୍ର ଖଣ୍ଡ ବିକା ନତେ । ରଖନ୍ତି ସାଧୁ ମୂଳ ଯେତେ ।
ଚନ୍ଦ୍ର ଯେତେକ ମିଳଥାଇ । ପ୍ରାଣ ପୋଷନ୍ତି ତାହା ଖାଇ ।
ବଇବ ଯୋଗରେ ଭକାଶି । ଯୋଗୀ ଆବର ବ୍ରହ୍ମଋଷି ।
ବସ୍ତ୍ର ବୈଷ୍ଣବ ଯେ ସନ୍ୟାସୀ । ତାହାର ଦ୍ୱାରେ ଯେବେ ଆସି ।

ପ୍ରକାଶ କରନ୍ତି ସେମାନେ । ତାହାଙ୍କୁ ଅତି ଶ୍ରଦ୍ଧାମନେ ॥
ଯେ ଅବା ତାର ଘରେ ଥାଇ । ଦଅଇ ତାର ପାଶେ ନେଇ ॥
ମାତା ନନ୍ଦନ ବେନି ପ୍ରାଣୀ । କହୁଣ ସୁଧାସମ ବାଣୀ ॥
କନ୍ଥା ସିଁଝାରୁ ଯେତେ ଥାଇ । ଯେ ଯାହା ମାଗେ ତାହା ଦେଇ ॥
ନାହିଁ ବୋଲିବା ପଦ ତାର । ତୁଣ୍ଡରୁ ନୁହଇ ବାହାର ॥
ଏମନ୍ତେ ବଞ୍ଚି ଥାଇ ଜନ । କରିଣ ଶ୍ରୀହରି ଭଜନ ॥
ଦେଖିଲେ ସାଧୁଜନ ଗୋଷ୍ଠୀ । ସେଠାରୁ ନ ଆସଇ ଉଠି ॥
ଯଦି ସେ ଗୃହକର୍ମେ ଥାଇ । ଯେ ଯାହା ମାଗିଲେ ତା ଦେଇ ॥
ପୁତ୍ର ପରିବାରବନ୍ଦ ଗତେ । ନଦେଖି ମନ ଅନୁବ୍ରତେ ॥
ସକଳ ଜନେ ଦୟାକରେ । ବିକଳ ଦୁଃଖିଜନଠାରେ ॥
ଏହି ପ୍ରକାରେ ବଞ୍ଚେ ଜନ । ନ ଜାଣେ ଅନ୍ୟ କଥାମନ ॥
ଏମନ୍ତେ କେତେଦିନ ଅନ୍ତେ । ତା କୀର୍ତ୍ତି ବୃଦ୍ଧିଲା ଜଗତେ ॥
ଯହିଁ ଶୁଣିଲେ ତା ଚରିତ । ପ୍ରଶଂସା କଲେ ଅପ୍ରମିତ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଝୋଲିଆ କବୀର ଜୀବନ ॥
ଏଡେ ଦରିଦ୍ର ଜନ ହୋଇ । ଯେ ଯାହା ମାଗିଲେ ଦଅଇ ॥
ଏଡ଼େ କୁଶଳ ତାର ମତି । ବୋଲିଣ ପ୍ରଶଂସା କରନ୍ତି ॥
ବଞ୍ଚାଇ ପର ଉପକାରେ । ନାମଭଜନ ନିତ୍ୟ ଭରେ ॥
ଏମନ୍ତ ହୋଇ ଦଣ୍ଡକ୍ଷଣେ । ତା ଯଶ ଜଗତେ ପ୍ରକାଶେ ॥
ତାହା ଜାଣିଲେ ଭଗବାନ । ବଢ଼ିବା ପାଇ ତାର ମନ ॥
ତକ୍ଷଣେ ବିପ୍ରରୂପ ହୋଇ । ବିଜୟ କଲେ ଶ୍ରୀବତ୍ସାଙ୍କେ ॥
ଅତି ଦୁର୍ବଳ ବସ୍ତ୍ର ଗୋଟି । ଚଳନ୍ତେ ପଡ଼ୁଅଛି ଫୁଟି ॥
ଛିଣ୍ଡା ନେଲଙ୍ଗଡ଼ା କନାଧଡ଼ି । ଅନେକ ଗଣ୍ଠି ଅଛି ପଡ଼ି ॥
ତହୁଁ ଖଣ୍ଡିକ ପିନ୍ଧି ହରି । ଖଣ୍ଡେ କୋଖଡ଼ା ସ୍କନ୍ଧେ ଧରି ॥
ଅତ୍ୟନ୍ତ ଦରିଦ୍ର ରୂପରେ । ବିଜୟ କଲେ ତାର ପୁରେ ॥
ଧୀରେ ଚଳନ୍ତେ ତନୁ ଘସି । ଖଣ୍ଡେ ଦୂରରେ ବସି ବସି ॥
ଯାହାକୁ ଦେଖିଲେ ପଚାରି । କାହିଁ ହେ କବୀରର ପୁରୀ ॥

ଆଜ୍ଞ ଅଛଇ କେତେ ଦୂରେ । ଦେଖାଇ ଦିଅ ଜନା ମୋରେ ॥
ଆମ୍ଭେ ହୋ ଯିବୁ ତାର ପାଶେ । କଛୁହିଁ ମାଗିବାର ଆଶେ ॥
ଏମନ୍ତ କହି ଜନାର୍ଦ୍ଦନ । ସେଠାରୁ କଲେକ ଗମନ ॥
ତେଣୁ କବୀର ଆସୁଅଛୁ । ଘରେ ତୋ ଅନ୍ନ ନାହିଁ କଛୁ ॥
ବସ୍ତ୍ର ଖଣ୍ଡିଏ ଅଛୁ ଧରି । ବଣୀ କରିବ ବୋଲି କରି ॥
ଘରେ ତା କିଛୁ ନାହିଁ ଯେଣୁ । ତଞ୍ଜନେ ଯାଉଛୁ ସେ ତେଣୁ ॥
ତେଣୁ ଆସନ୍ତ ଦାମୋଦର । ଭେଟ ପଡ଼ିଲେ ଯେ ଦଣ୍ଡର ॥
ଲୋକେ ବୋଇଲେ ତହିଁ ଥାଇ । ଏହିଟି କବୀର ଅଟଇ ॥
ତାହା ଶୁଣିଣ ଚକ୍ରପାଣି । କବୀର ମୁଖ ଚହିଁ ଭଣି ॥
ଶୁଣ ହେ ଜୋଲିଆ କବୀର । ଆମ୍ଭେ ଆସିଛୁ ତୋହଠାରେ ॥
ସ୍ବରଦଗରେ ତୋ ଖ୍ୟାତ । ଶୁଣି ଯେ ଆଜ୍ଞ ଜନ୍ତ ନନ୍ତ ॥
କବୀର ପ୍ରାୟେ ଏକ ଜଣେ । ନାହିଁ ନ ଥିବ ଏ ଭୁବନେ ॥
ଦରିଦ୍ର ହେଲେ ଜସ ହୋଇ । ଯେ ଯାହା ମାଗିଲେ ଦିଅଇ ॥
ଏମନ୍ତ ଶୁଣି ଆମ୍ଭେ କର୍ଣ୍ଣେ । ଅତି ଭରସା କରି ମନେ ॥
ଆସିଣ ଅଛୁ ତୋର ପାଶେ । କଛୁହିଁ ମାଗିବାର ଆଶେ ॥
ଦିଅ ନ ଦିଅ ତୋର ମନ । କହିଲୁ ସ୍ୱରୂପ ବଚନ ॥
ତା ଶୁଣି ଜୋଲିଆ କବୀର । ବିପ୍ରଙ୍କୁ କଲା ନମସ୍କାର ॥
ବୋଇଲା ଶୁଣ ହେ ଗୋସାଇଁ । ଏହା ଯେ କହିଲ କମାଇଁ ॥
ଦେବା ଦିଆଇବାକୁ ହରି । କରତା ଅଟନ୍ତି ସବୁରି ॥
ମୋ ଛାର କେତେକ ଶକତି । ଦେବାକୁ ହେବ ମୋର ମତି ॥
ହେଲେ କ ମାଗୁଛ ଗୋସାଇଁ । କହ ଶୁଣଇ ଜନା ମୁହିଁ ॥
ତା ଶୁଣି ପ୍ରଭୁ ଦାମୋଦର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ମେଘଗମ୍ଭୀର ଧୀରବାଣୀ । କହନ୍ତି ପ୍ରଭୁ ଚକ୍ରପାଣି ॥
ଦେଖ ମୁଁ ଦରିଦ୍ର ବ୍ରାହ୍ମଣ । କବୀର ଭଲେ ଏହା ଶୁଣ ॥
ବସ୍ତ୍ର ଖଣ୍ଡିଏ ମୋତେ ଦିଅ । ଅଶେଷ ଲୋକେ ଯଶ ଯାଅ ॥
ଅଧିକ ନ କହିବ ତୋତେ । ଏତେକ ମାଗିଲୁ ଯୁକତେ ॥

ତା ଶୁଣି ଝୋଲିଆ କବୀର । ବୋଇଲା ଶୁଣ ବିପ୍ରବର ।
ଏ ମୋର ସଙ୍କଟୁ ଉଦ୍ଧର । ଯାହା ଜଣାଇଥିବେ ହରି ।
ତେବେକେ ସନ୍ତୋଷ ହୋଇବ । ମୋହର ସାହାଯ୍ୟରେ ଲାଗିବ ।
ଏମନ୍ତ ବୋଲି ବସ୍ତ୍ର ଧରି । ଚିରିଲା ଦେଇ ଖଣ୍ଡ କରି ।
ଖଣ୍ଡେକ ବସ୍ତ୍ର ହସ୍ତେ ନେଇ । ବାକ୍ୟ ଉତ୍ତୁଳ ସ୍ୱଚ୍ଛୁଆଇ ।
ଆରେକ ଖଣ୍ଡ ହସ୍ତେ ଧରି । ଭାଙ୍ଗି ପୋଇଲା ଯତ୍ନ କରି ।
ବୋଇଲା ଯେନ ହେ ବ୍ରାହ୍ମଣ । ତା ଶୁଣି କମଳା ରମଣ ।
ଅତି ଆନନ୍ଦ ହୋଇ ମନେ । ପିନ୍ଧିଲେ କବୀର ବଚନେ ।
ଛିଣ୍ଡା ଲେଙ୍ଗୁଡ଼ା କନା ଯେତେ । ପିନ୍ଧିବା ବୋଡ଼ଡ଼ା ସହିତେ ।
ଅନ୍ତର କରି ତା ପକାଇ । ରହିଲେ ଆନନ୍ଦିତ ହୋଇ ॥
ତା ଦେଖି ବୋଲଇ କବୀର । ହେ ଦ୍ୱିଜବର ବିଜେ କର ।
ମୁଁ ଏବେ ଯାଉଛି ତ୍ୱରିତେ । ଏ ଖଣ୍ଡି ବିକିବା ନିମନ୍ତେ ।
ଦେଖ ମୋ ଦୁଃଖ ଦ୍ୱିଜବର । ଧନ ଆଣିଲେ ଘରେ ମୋର ।
କୁଟୁମ୍ବଯାକ ସୁସ୍ଥ ହୋଇ । ଭୋଜନ କରିବେ ଗୋସାଇଁ ।
ନୋହିଲେ ଉପବାସେ ଥିବେ । ତେଣୁ ମୁଁ ଯାଉଅଛି ଏବେ ।
ତା ଶୁଣି ପ୍ରଭୁ ବ୍ରହ୍ମବେଶି । ଅଳପ ମନେ ମନେ ହସି ।
ବୋଇଲେ ଶୁଣ ହେ କବୀର । ଜାଣିଲି ଦାତାପଣ ତୋର ।
କ୍ଷୁଧାର୍ତ୍ତଜନଙ୍କୁ ବସାଇ । ଯେ ଅର୍ଦ୍ଧ ଭୋଜନ ଦିଅଇ ।
ତହିଁ ଯେ ଫଳ ନାହିଁ କିଛି । ଅଧିକ ପାତକ ଲେଖୁଛି ।
ଆକର ବିପ୍ରଙ୍କର କରେ । ଦାନ ଦିଅନ୍ତି ଯେଉଁ ନରେ ।
ଯେବେ ତା ଦକ୍ଷିଣା ନ ଦେଇ । ତହିଁରେ ଫଳ ଅ.ଉ ନାହିଁ ।
ନୋହିରେ ଦେଉଳ ଅଟାଳି । ବାମ୍ପୀ ପୋଖରୀ ଥିବ ଖୋଳି ।
କୂପାଦି ତଡ଼ାଗ ସହିତେ । ଆବର ଧର୍ମ ହୋଇ ଯେତେ ।
ଏମାନ ପ୍ରତିଷ୍ଠା ନ କଲେ । ଫଳ ମିଳିବ କାହୁଁ ଭଲେ ।
ଘଟ ନ ଥିଲ ପତ୍ନୀ ପ୍ରାପ୍ୟେ । ଏ ସବୁ ଅନର୍ଥକୁ ଯାଏ ।
ଏଣୁ ମୁଁ କହୁଅଛି ତୋତେ । ଆବର ଖଣ୍ଡି ଦିଅ ମୋତେ ॥

ବୋଷଡ଼ା କରି ଆମ୍ଭେ ଯାଉ । ତୋର କ୍ଷାଉତ ରନ୍ଧ ଥାଉ ।
ନୋହିଲେ ନ ଯଣଇ ଶୋଷ । ଅଧିକ କ କହିବ ଅବା ।
ଦେଖ ମୁଁ ଦୁଃଖୀ ବିପ୍ରବର । ଏଥିରେ ସଂଶୟ ନ କର ।
ତା ଶୁଣି କସାର ଭୁଣରେ । ଆବର ଖଣ୍ଡ ଧରି ହସ୍ତେ ।
ବ୍ରାହ୍ମଣ ହସ୍ତେ ଦେଲେ ନେଇ । ବୋଇଲେ ଶୁଣହେ ଗୋସାଇଁ ।
ଏବେ ବହନ ବିଜେକର । ମୋରେ କରୁଣା ରଖି ତୋର ।
ତା ଶୁଣି ପ୍ରଭୁ ନାରାୟଣ । କହିଣ ଅନେକ କଲ୍ୟାଣ ।
ସେଠାରୁ ବିଜେ କରିଗଲେ । ପିନ୍ଧା କୋଷଡ଼ା ପାଇ ଭଲେ ।
ଏଣେ କସାର ଗଲା ଚଳି । ଏକାନ୍ତ ସ୍ଥାନେ ଯାଇ ମିଳି ।
ବସିଲା ନିଶ୍ଚଳ ଆସନେ । ହରିଙ୍କି ଚିନ୍ତା କରି ମନେ ।
ବୋଇଲା ଆହେ ମହାମେରୁ । ଅଶେଷ ପ୍ରାଣୀଙ୍କର ଗୁରୁ ।
କୁମ୍ଭର ସଞ୍ଚାର ଅନ୍ନେ । ପ୍ରାଣ ପୋଷନ୍ତି ପ୍ରାଣିମାନେ ।
ଏଣୁ ମୋ କୁଟୁମ୍ବର ଚିନ୍ତା । କୁହ ହେ ପ୍ରଭୁ ଜଗତ୍କର୍ତ୍ତା ।
ଏମନ୍ତ ବୋଲି ସୁଖେ ବସି । ମୁଖେ ଶ୍ରୀହରି ନାମ ଘୋଷି ।
ଏଣୁ ସେ ଗଲେ ଜନାର୍ଦ୍ଦନ । ସେ ପ୍ରଭୁ କାଳୀୟ ମର୍ଦ୍ଦନ ।
ଗ୍ରାମରୁ ବାହାର ହୋଇଲେ । ବିପ୍ର ସ୍ୱରୂପ ଗୋପ୍ୟ କଲେ ।
ଭକତଭାବେ ଭାବଗ୍ରାହୀ । ଭାବେ ଗୋପାଳରୂପ ହୋଇ ।
ତତକ୍ଷଣେ ଭାରଗୋଟି କରି । ଅଶେଷ ଦ୍ରବ୍ୟ ଛନ୍ଦି ଭରି ।
ସରୁବ୍ରୀହିଳ ମୁଗଯାଇ । ଘୃତ ନବାତ ଦୁଗ୍ଧ ଦହି ।
ହେଙ୍ଗୁ ମରିଚ ଫୁଲବଡ଼ି । ଲବଣ ସୋରିଷ କଉଡ଼ି ।
ଏ ଆଦି ନାନା ଦ୍ରବ୍ୟମାନ । ସମ୍ପୂର୍ଣ୍ଣ କରି ଭଗବାନ ।।
ଭାର ବହିଣ ବନମାଳୀ । ଭକତ ନିକଟେ ଗଲେ ଚଳି ।
ଅତ୍ୟନ୍ତ ସନ୍ଧ୍ୟା ସମୟରେ । ମିଳିଲେ କସାରର ଦ୍ୱାରେ ।
ଦ୍ୱାରେ ରହିଣ ନରହରି । ଡାକିଲେ ଡାକ ଗୋଙ୍ଗାରିଣ ।
ତେଣେ ସେ କସାରର ମାତା । ବସିଣ କରୁଛନ୍ତି ଚିନ୍ତା ।
ପୁତ୍ର ମୋ ଗଲା ବସ୍ତ୍ର ଧରି । ଘରକୁ ନଇଲା ଆଜିକ ।

କବା କାରଣ ତାର ହୋଇ । ବସ୍ତ୍ର କ ବଜା ହୋଇନାହିଁ ॥
ତେଣୁ ସେ ଚିନ୍ତା କରି ଚିତ୍ତେ । ବସିଣ ଅଛଇ ଏକାନ୍ତେ ॥
ଏମନ୍ତ ବୋଲି ବସି ଘରେ । ଡାକ ଶୁଭିଲା କର୍ଣ୍ଣଦ୍ୱାରେ ॥
ଉଠିଣ ଧାଇଁଲି ତୁରିତେ । ଦ୍ୱାରେ ଦେଖିଲି ଅଦ୍ଭୁତେ ॥
ଅତି ବିଶାଳ ବାହୁ ଦୁଇ । କରେ କଙ୍କଣ ବିରାଜଇ ॥
ମହା ବିଶାଳ ବକ୍ଷସ୍ଥଳ । ସୁନ୍ଦର ସୁକଣ୍ଠ କପୋଳ ॥
ରଙ୍ଗ ଅଧର ମନ୍ଦହାସେ । ସମ୍ପୂର୍ଣ୍ଣ ଚନ୍ଦ୍ରମୁଖ କି ସେ ॥
ଏମନ୍ତ ରୂପ ତାଙ୍କ ହେରି । ବଚନ କହିତ ନ ପାରି ॥
ବିସ୍ମୟ କରଇ ମନର । କିସ ଏ ଆସିଅଛ ଘର ॥
କାହୁଁ ଅଇଲ ଏ ଯୁବକେ । ଏହା ମୁଁ ଜାଣିବି କେମନ୍ତେ ॥
ଏମନ୍ତ ବୋଲି ପଚାରଇ । କାହୁଁ ଅଇଲ ବାପ କହି ॥
କାହିଁ ବସିଛ କେଉଁ ଘର । ରଖିଣ କହ ମୋ ଆଗର ॥
ତା ଶୁଣି ପ୍ରଭୁ ଦେବରାୟେ । ବୋଲନ୍ତି ଶୁଣସି ଗୋ ମାଏ ॥
ତୁମ୍ଭର ପୁତ୍ର ଦାଣ୍ଡେ ବସି । ଆମ୍ଭଙ୍କୁ ଦେଇଛନ୍ତି ପେଷି ॥
କାମ ଅଛଇ ଏଥେଁ ଦେଖ । ନେଇଣ ଭଲକରି ରଖ ॥
ତୃଷ୍ଣା ଅଧିକ ଥିଲେ କେତେ । ଏବେହେଁ କହ କନା ମୋତେ ॥
ଆମ୍ଭେ ଯେ ମହନ୍ତ ବୋଲାଉଁ । ପଛକୁ ବୋଲଣା ନ ପାଉଁ ॥
ଏମନ୍ତ ବୋଲି ଘର ଥୋଇ । କହାଇ ଯାଆନ୍ତି ଖବରାଖି ॥
କବୀର ମାତା ଦେଖିଯାଇ । ମନ୍ଦିରେ ରଖି ଆସୁଥାଇ ॥
ଏହି ପ୍ରକାରେ କେତେଥର । ନେଇଣ ପୂର୍ଣ୍ଣ କଲା ଘର ॥
ଆଉ ଥୋଇବା ଠାବ ନାହିଁ । ବୋଇଲା ଗଉଡଙ୍କୁ ଚାହିଁ ॥
ଆଉ କି ଘର ଅଛୁ ତୋର । ଘରେତ ସ୍ଥାନ ନାହିଁ ମୋର ॥
ତା ଶୁଣି ପ୍ରଭୁ ଜଗନ୍ନାଥ । ବୋଇଲେ ଶୁଣସି ଗୋ ମାତ ॥
ତୋ ଘରେ ଯେବେ ନାହିଁ ସ୍ଥାନ । ମୋ ଘର ହୋଇଲାଣି ଶୂନ୍ୟ ॥
ଆସିଣ ଦେଖିଥାଅ ତୁମ୍ଭ । ପଛେ ଗୋ ଯାଉଅଛି ମୁହିଁ ॥
ତା ଶୁଣି କବୀରର ମାତା । ହସି ବୋଲଇ ଏ କି କଥା ॥

ଆଜ ଦଣ୍ଡକମାଛ ରତ । ରନ୍ଧନ କରି ଭୁଞ୍ଜି ଯାଅ ।
ହୋଇଲେ ଶୀତଳ ମଣୋହି । କରି ଯାଅରେ ବାପଙ୍କୁ ।
ତରକ୍ସ ନ କରିଣ ଯେବେ । ତୁମ୍ଭଙ୍କୁ ଘୁଡ଼ବେଣ୍ଡ ତେବେ ।
ପୁଅ ଯେ କି ବୋଲିବେ ମୋତେ । ଏ କଥା ନୋହେ ଭବାତତେ ।
ତା ଶୁଣି ବୋଲନ୍ତି ଶ୍ରୀକନ୍ତି । ଅଶେଷ ବତଷ୍ୟା ଯେ ଅଛି ।
ଷଣେ ରହିବା ତର ନାହିଁ । ଏବେ ପାଇଲି ସବୁ ମୁହିଁ ।
ଏହାର ବୁହା ମୂଲ୍ୟ ଯାହା । ଆଗହୁଁ ପାଇଅଛି ତାହା ।
ଏମନ୍ତ କହି ମଧୁହାସି । ସେଠାରୁ ଗଲେ ଝଟେକରି ।
ଭକତ ବନ୍ଧୁ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ।
ଏଥି ଉତ୍ତାରୁ ଶୁଣ ମନ । କବୀର ଜନନୀ ବଦନ ।
ଅନ୍ନ ଯେ ରନ୍ଧା ବଢ଼ା କଲା । ଯାଇଣ ପୁଅକୁ ଡାକିଲା ।
ତା ଶୁଣି କବୀର ହରଷେ । ଯାଇ ମିଳିଲା ମାତା ପାଶେ ।
ବୋଇଲା ମାତା ମୁଖ ଚାହିଁ । ମୋତେ ଡାକିଲୁ କାହିଁପାଇଁ ।
କାହୁଁ ଯେ ମିଳିଲା ଭୋଜନ । କହ ଗୋ ସ୍ୱରୂପ ବଚନ ।
କି ଅବା ମଗା ଯାଚ୍ଛି କଲୁ । ଉଧାର କରି କି ଆଣିଲୁ ।
କେଉଁ ପ୍ରକାରେ ଦେଲେ ହରି । କହଗୋ ସଂଶୟ ନ କରି ।
ପୁଅର ଏସନ ବଚନ । ଶୁଣି ବୋଇଲେ ମାତା ପୁଣ ।
ବାତୁଳ ହେଲୁକହେ ସୁତ । ମୋତେ ଲାଗିଲା ଆଚମ୍ବିତ ।
ଖାଦ୍ୟ ସାମଗ୍ରୀ କରି ଘର । ପେଟ ଯେ ଥିଲୁ ଆମ୍ଭଘର ।
ଘରୁଆ ତାହା ଆଣି ଦ୍ୟନ୍ତେ । ରନ୍ଧନ କଲି ମୁଁ ଇଚ୍ଛାତେ ।
ତା ଶୁଣି ଝୋଲିଆ କବୀର । ମନରେ ଜାଣିଲା ବିଚାର ॥
ମୁଁ ତ କାହାକୁ ନାହିଁ ପେଷି । କେ ଘର ଦେଇଗଲା ଆସି ।
ଆନରେ ନୋହେ ଏ ଚରିତ । ନିଶ୍ଚେ ସେ ପ୍ରଭୁ ଜଗନ୍ନାଥ ।
ହେ ମାତ ! ଘର ବୁହାବେଳେ । ଦେଖିଲୁଟିକି ଚର୍ମଚୋଳେ ॥
ମାତା ବୋଲଇ ଆରେ ସୁତ । ଭୂତ କହିଲୁ ବିପରୀତ ॥
ଆମ୍ଭର ଦ୍ୱାରେ ଉଭା ହୋଇ । ଡାକନ୍ତେ ଅଇଲି ମୁଁ ଧାଇଁ ॥

ଦେଖିଲି ଅପୂର୍ବ ସ୍ୱରୂପ । ଯେସନେ ନବଘନ ରୂପ ॥
ଘରରୁ ଆଣି ମୋର ହସ୍ତେ । ବଢ଼ାଇଦେଇଥିଲେ ମୋତେ ॥
ମୁଁ ନେଇ ରଖିଥିଲି ଘର । ପୂରିଲା ମନ୍ଦର ମୋହର ॥
ତାହାର ଘର ବୃଦ୍ଧ ହେଲା । ପିତାକୁ ମେଲାଣି ମାଗିଲା ॥
ମୁଁ ଯେ ଡାକିଲି ନାନାମତେ । ରହିଲେ ନାହିଁ କଦାଚିତେ ॥
ମୂଲ ମୁଁ ଯାଚିଲି ନ ନେଲେ । ଆଗହୁଁ ପାଇଛୁଁ ବୋଇଲେ ॥
ଶୁଣି କବୀର ସ୍ତ୍ରୀବଷ୍ଟେକେ । ନମିଲା ମାତା ପାଦତଳେ ॥
ଉଠେ କପାଳେ ଯୋଡ଼କର । ବୋଇଲେ ଧନ୍ୟ ଜୀବ ତୋର ॥
ଏବେ ମୁଁ ତୋର ରୂପ ଦେଖି । ସଫଳ କଲି ଚର୍ମ ଆଖି ॥
ମାତା ବୋଇଲା ରେ ନନ୍ଦନ । ମୋ ସ୍ତ୍ରୀର କେତେକ ଜୀବନ ॥
ତୋତେ ମୁଁ ପୁତ୍ର କଷ୍ଟ ପାଇ । ତେଣୁ ଦେଖିଲି ହବକସ୍ତାଷ୍ଟୀ ॥
ଏମନ୍ତ ବୋଲି ପୁତ୍ର କର । ଧରିଚଳିଲେ ନିଜପୁର ॥
ବୋଇଲେ ଶୁଣସିରେ ବାବୁ । ଘରେ ତ ପୂରିଅଛି ସବୁ ॥
ଶୁଣି କବୀର ଦେଲା ଯାଇଁ । ମନ୍ଦରେ କାହିଁ ଠାବ ନାହିଁ ॥
ନାନାଦି ଦ୍ରବ୍ୟମାନଙ୍କରେ । ପୂରିରହିଛି ସବୁଠାରେ ॥
ତା ଦେଖି କବୀରର ମନ । ଧନ୍ୟ ମହିମା ଭଗବାନ ॥
ଅତ୍ୟନ୍ତ ଦୀନଜନଠାରେ । କି ଅବା ଅଭକ୍ଷିତ ନରେ ॥
ହୁଅନ୍ତି ସେ ଏତେ ସାପକ୍ଷ । କୋଟି ବ୍ରହ୍ମାଣ୍ଡେ ନାହିଁ ଲକ୍ଷ ॥
ଏମନ୍ତ ପ୍ରଭୁଙ୍କର ସେବା । ଛାଡ଼ି ଯେ ଭଜେ ଅନ୍ୟ ଦେବା ॥
ଧିକ ତା ଧିକ ତା ଜୀବନ । ସ୍ୱଅର୍ଥେ ବଞ୍ଚାଇବା ଧନ ॥
କେବଳ ନର ଦେହ ବହି । ପଶୁଙ୍କ ପ୍ରାୟ ସେ ବଞ୍ଚଇ ॥
ଏବେ ତୁ ଶୁଣ ମୋ ଉତ୍ତର । ସାଧୁ ଶ୍ରୀକୃଷ୍ଣ ନାମ ସାର ॥
ସଂସାରେ ସତ୍ୟ ହୁଏ କଥା । ଆଉ ସକଳ କଥା ମିଥ୍ୟା ॥
ଏଣୁଟି ପ୍ରଭୁ ଆଦ୍ୟମୂଳ । ଭଜନ କଥା ଅମୃ ମୂଳ ॥
ଏମନ୍ତ ବୋଲି ମାତ୍ୟେପୋତ୍ୟେ । ଶ୍ରୀହରି ପାଦେ କରି ଲକ୍ଷ୍ୟେ ॥
ଶ୍ରୀହରି ପାଦେ ଦେଇ ମନ । ଆନନ୍ଦେ ବଞ୍ଚାଇଲେ ଧନ ॥

ଏମନ୍ତେ କବୀରର ଯଶ । ଜଗତେ ହୋଇଛି ପ୍ରକାଶ ॥
ଶୁଣ ସୁମନ ହେତୁ ଦେଇ । ଏ ବାର୍ଦ୍ଧ୍ୟଭକତ ଅଟଇ ॥
ଏହା ଯେ ଶୁଣି କରେ ଶ୍ରଦ୍ଧା । ଲାଗଇ ନାହିଁ ପାପ ବାଧା ॥
କହଇ ବସ୍ତ୍ର ରାମ ଦାସ । ମୋ ପ୍ରଭୁ କମଳା ବଳାସ ॥

ଇତି ଶ୍ରୀ ବାର୍ଦ୍ଧ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
କବୀର ବସ୍ତ୍ରଦାନ ବାର୍ଦ୍ଧ୍ୟଭକ ମୋକ୍ଷଣେ
ନାମ ସପ୍ତଦଶୋଽଧ୍ୟାୟଃ ।

—❀—

## ଅଷ୍ଟାଦଶ ଅଧ୍ୟାୟ

## ମଣି ଦାସ ସମ୍ବାଦ

### ଚୈତନ୍ୟ ଉବାଚ

କହେ ଚୈତନ୍ୟ ମହାତ୍ମତା । ଭକତ ସ୍ତବେ ଯେଉଁ କଥା ॥
ଶୁଣ ହେ ମନ ନୃପଗଣ । ବାର୍ଦ୍ଧ୍ୟଭକ୍ତର ଯେ ଲକ୍ଷଣ ॥
ପୁରୁଷୋତ୍ତମେ ତାର ଘର । ଜାତିରେ ଅଟେ ମାଳାକାର ॥
ନାମ ତାହାର ମଣି ଦାସ । କୁଟୁମ୍ବ ଘେନି କରେ ବାସ ॥
କରି ଆପଣା ନିଜବୃତ୍ତି । ଦୁଃଖ ସୁଖରେ ବଞ୍ଚୁଥାନ୍ତି ॥
ଏମନ୍ତେ କେତେଦିନ ଗଲା । ଦଇବ ଯାହା ଭିଆଇଲା ॥
କୁଟୁମ୍ବଯାକ ଗଲେ ନାଶ । ଏକା ରହିଲା ମଣି ଦାସ ॥
ଚିତ୍ତେ ବୈରାଗ୍ୟ ହେଲା ତାର । ବୋଇଲା ଧିକ ଏ ସଂସାରର ॥
କି ହେଲା ଦାରା ପୁତ୍ର ମୋର । କେହ୍ନେତ ନୁହଇ କାହାର ॥
କେବଳ ଜୀବର ଉଦ୍ଧାର । ହେବାକୁ ହରିନାମ ସାର ॥
ସଂସାରେ ଅନ୍ୟ କର୍ମ ଯେତେ । କେବଳ ମିଥ୍ୟା ଏ ସମସ୍ତେ ॥
ଏମନ୍ତ ବୋଲି ମଣି ଦାସ । ବୈଷ୍ଣବ ପଣେ କଲା ଆଶ ॥
ଡୋର କୌପୀନ ଆଶ୍ରେ କରି । ସବେଣ ଭଜଇ ଶ୍ରୀହରି ॥
ପ୍ରଭାତୁଁ ସ୍ନାନ ସେ କରଇ । ଦ୍ୱାଦଶ ତିଳକ ଘେନଇ ॥
ଉତ୍ତମ ତୁଳସୀର ହାର । ଗଳାରେ ଭରିଥାଇ ତାର ॥

ନଡ଼ିଆ ସଢ଼ାଇ ବଫାଳ । କରଣ ଥାଇ କରତାଳ ।
କାଖେ ଯାକଣ କଦାଖଣ୍ଡେ । ମେଲଇ ଅସୁଥାଏ କାଣ୍ଡେ ।
ମିଳଇ ସିଂହଦ୍ୱାରଠାରେ । ଉତ୍କଳପାବନ ଗ୍ରାମରେ ।
ନୃତ୍ୟ କରଇ କାଣ୍ଡେ ରଙ୍ଗ । ଅନେକ ଦଣ୍ଡବତ ହୋଇ ।
ଚହୁଁ ମିଳଇ ଶ୍ରଦ୍ଧାମନେ । ମିଳଇ ଶ୍ରୀ ଜଗମୋହନେ ।
ଗରୁଡ଼ ପଛେ ଉଭାହୋଇ । ପ୍ରଭୁଙ୍କ ଶୋଭାକୁ ଅନାଇ ।
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ ହସ୍ତ ।
ବୋଲଇ ଲୁଚ ହୋଇଯିବ । କଳା ଶ୍ରୀମୁଖ ଦିଶୁଥିବ ।
ତୁମ୍ଭେ ମୋ ଜୀବର କାରଣ । ଦରିଦ୍ର ଲୋକଙ୍କର ଧନ ॥
ଏମନ୍ତ ବୋଲି କଲେ ନୃତ୍ୟ । ମୁଣ୍ଡ ହଲାଇ ଗାଏ ଗୀତ ।
ସଢ଼ାଇ ତାଳ କରେ ଧରି । ବଜାଇ ଅତି ଆଣନ୍ଦରି ।
ବନତାସୁତ ପାଶେ ଯାଇଁ । ଧାଇଁଣ ପୁଣି ଆସୁଥାଇ ।
କଣ୍ଠ ତା ଅର୍ଗଳବାନ୍ଧକୁ । ଦିଶିଁଣ କଳା ଶ୍ରୀମୁଖକୁ ।
ପଛକୁ ଘୁଞ୍ଚି ଆସୁଥାଇ । ଜୟ ଶବଦ ତୁଣ୍ଡେ ଗାଇ ।
ଆନନ୍ଦେ ବେଣୁଭୁଜ ଧରି । ତୁଣ୍ଡେ ଅନେକ ସ୍ତୁତିକରି ।
ମୁଣ୍ଡେ ଯେ ବେଣୁକରେ ଧରି । ତୁଣ୍ଡେ ଅନେକ ସ୍ତୁତିକରି ।
ଜୟ ତୁ ବିପଣ୍ଡ କାଳିଆ । ଜୟ ତୁ ବାଇଁଚ ମାଳିଆ ।
ନାନା କୁସୁମେ ମାଳା ଯେତେ । ଲଗ୍ନ ସେ ଶୋଭା ଦିଶେ ତୋତେ ।
ଦ୍ରୁବପଦ୍ମରେ ପଦ୍ମମାଳା । ଯହିଁ କମଳା କରେ ଲୀଳା ।
ଅନେକ ରତ୍ନ ଅଳଙ୍କାର । ପୂରେ ତୋ ସର୍ବାଙ୍ଗ ଯାକର ।
ଶ୍ରବଣେ ମକର କୁଣ୍ଡଳ । କି ରବିମଣ୍ଡଳ ଯୁଗଳ ।
ଶିରେ କଣ୍ଠାଟ ଝୁଣ୍ଟକନ୍ତ । କି ଅବା ନବ ସୁପ୍ତପନ୍ତ ।
ତୋ କଳାନିଧି ମୁଖ ଦେଖି । ଭକତ ଜନ ହୁଏ ସୁଖୀ ।
ସୁନ୍ଦର ଶ୍ୱେତ ପଦ୍ମତୋଳା । ଭୃତ୍ୟ ଆଗତସିନ୍ଧୁ ବେଳା ।
ଯେ ତୋର ଶ୍ରୀଭୁଜ ଯୁଗଳ । ଅଶେଷ ପ୍ରାଣୀଙ୍କ ମଙ୍ଗଳ ।
ସେ ଭୁଜେ ଶଙ୍ଖ ଚକ୍ର ଦେଖି । ସିଗ୍ଧୁଡ଼ ନ ପାରଇ ଆଖି ।

ଚନ୍ଦ୍ରିଁ ନଷ୍ଟକେ ମଣ୍ଡ ଯାଉ । କ କରୁପାରେ ଖଣ୍ଡ ତାଉ ।
ତୋହର ଅଭୟ ଚରଣ । ଭକତ ଭୟ ନିବାରଣ ।
ସେ ପାଦପଦ୍ମ ବିନା ଆନେ । ଭରସା ନାହିଁ ମୋର ମନେ ।
ଏମନ୍ତ ବୋଲି ଗୀତ ଗାଇ । ନାଚଇ ଉନମତ୍ତ ହୋଇ ।
ସଢ଼ାଇ ନାଦ ମୁଖଧ୍ୱନି । ଚରଣେ ପଡ଼ନ୍ତେ ମେଦିନୀ ।
କମ୍ପଇ ଦୁଲୁ ଦୁଲୁ ହୋଇ । ତା ଭଙ୍ଗୀ କହି ନ ସରଇ ।
ଏହି ପ୍ରକାରେ ପ୍ରତିଦିନ । ନାଚଇ ଶ୍ରୀ ଜଗମୋହନ ।
ଏମନ୍ତେ କେତେଦିନ ଅନ୍ତେ । ଶୁଣ ସୁମନ ଶୁଦ୍ଧଚିତ୍ତେ ।
ଶ୍ରୀ ଜଗମୋହନ ନିବାସେ । ପୁରାଣପଣ୍ଡା ଅତି ତୋଷେ ।
ବସିଣ ପୁରାଣ କରନ୍ତି । ଅନେକ ଲୋକ ଶୁଣୁଛନ୍ତି ।
କହିବା ଶୁଭୁସରେ କରି । ସବୁର ମନ ଅଛି ହରି ।
ଏମନ୍ତ ବେଳେ ମଣି ଦାସ । ଆସିଣ ହୋଇଲେ ପ୍ରବେଶ ।
ସଢ଼ାଇ ଗରଜନ କରି । ମୁଖେ ବୋଲଇ ରାମହରି ।
ଚରଣ ତୋଳି ନୃତ୍ୟକରେ । ଶ୍ରୀ ଦାରୁବ୍ରହ୍ମଙ୍କ ସମ୍ମୁଖରେ ।
ମନ ନିବେଶି ପଦ୍ମପାଦେ । ତହିଁ କାହାକୁ ନାହିଁ ଭୟେ ।
ପୁରାଣ ନିକଟେ ପଡ଼ଇ । କୁହାଟ କୁରୁଳି ଗୁଡ଼ଇ ।
ତା ଦେଖି ପଣ୍ଡା କୋପଚିତ୍ତେ । ପୁସ୍ତକ ରଖିଲେ ଭୂଇଁତେ ।
ବୋଇଲେ ଶୁଣ ଆରେ ମୂର୍ଖ । ଏ ବସ୍ତୁ ପୁରାଣର ସାଖ ।
ଚରଣ ଟେକ ନାଚୁଅଛୁ । କହୁଣି ମାଡ ମୁଣ୍ଡଉଛୁ ।
ଉତ୍ତମ ଲୋକେ ବସିଛନ୍ତି । ଦେବଙ୍କ ସମାନ ଦିଶନ୍ତି ।
ଏଥେ ଗରବ ତୋର ଏଡ଼େ । ନାଚୁ ଝୁମ୍ପକ ବାନ୍ଧି ଗୋଡ଼େ ।
କୋବାଇ ମରୁଥାଉ ଏଣେ । ପୁରାଣ ନ ଶୁଣୁ ତୋ କର୍ଣ୍ଣେ ।
ଏମନ୍ତେ ବୋଲି ପଣ୍ଡା କୋପେ । ଗାଳି ଦିଅନ୍ତି କେତେ ରୂପେ ।
ମାଣିଆ ଦାସ ନ ଶୁଣଇ । ପ୍ରଭୁଙ୍କୁ ଆନ ନ ଜାଣଇ ।
ତାହା ଶୁଣିଣ ଅନ୍ୟଜନ । ବୋଲନ୍ତି ଶୁଣରେ ଅଜ୍ଞାନ ।
ପଣ୍ଡାଙ୍କ ବଚନ ନ ଶୁଣୁ । ଇତର ଜନ ପ୍ରାୟେ ମଣୁ ।

ପ୍ରସାଦ ପାଇବୁ ଅପାର । ରଖିବ କେଉଁବାପ ତୋର ॥
ତୁ ଏବେ ଲେଉଡ଼ୁ କହୁଣୀ । ଜାଣିଥା ହେବ ଏହୁକ୍ଷଣି ॥
ନ ଖାଇ ବେଗ ହୋଇ ଚଳ । ଯେବେ ତୋ ଅଦୃଷ୍ଟ କୁଶଳ ॥
ନୋହିଲେ ମରିବୁ ଅବଶ୍ୟ । ତାହା ଶୁଣିଣ ମଣି ଦାସ ॥
କ୍ରୋଧରେ ଗଦ ଗଦ ହୋଇ । ବଦନୁ ବାକ୍ୟ ନ ସ୍ଫୁରଇ ॥
ବଳା ଶ୍ରୀମୁଖକୁ ଅନାଇ । ନେସ୍ତୁ ଲେତକ ଧାସବନ୍ଧ ॥
ବୋଇଲା ଆହେ ମହାବାହୁ । ଶରଣ ପଞ୍ଜର ବୋଲାଉ ॥
ତୋଳି ବସିଛୁ ବାହୁ ଦୁଇ । ଶରଣ ସମ୍ଭାଳିବା ପାଇଁ ॥
ମୁଁ ଯେ ଅଟଇ ତୋ ଶରଣ । ମୋତେ ବାନ୍ଧିଲୁ ଏ କଷଣ ॥
ଇତରଲୋକ ହୋଇଥିଲେ । ଶରଣ ସମ୍ଭାଳନ୍ତା ଭଲେ ॥
ଶୁଣିଲି ତୋର ପ୍ରଭୁପଣ । ଭୃତ୍ୟରେ କରଇ ଦାରୁଣ ॥
ଏମନ୍ତ ବୋଲି କ୍ରୋଧଭରେ । ସଭାଇ ତାଳଧର କରେ ॥
ପ୍ରଭୁ ସ୍ତମ୍ଭକୁ ପିଙ୍ଗି ଦେଲେ । ମଣିଆ ଦାସ ବହିଗଲେ ॥
ମନରେ ହୋଇଣ ନିରାଶ । ମଠରେ ହୋଇଲା ପ୍ରବେଶ ॥
ଚିଛୁ ନଦେଖି ପ୍ରଭୁ ପାଶେ । ଶୋଇଲା ମନର ହରଷେ
ଏମନ୍ତେ ହେଲା ଦିନ ଶେଷ । ରଜନୀ ହୋଇଲା ପ୍ରବେଶ ॥
ସନ୍ଧ୍ୟାଧୂପକୁ ମଣି ଦାସେ । ନ ଗଲେ ମନର ହରଷେ ॥
ଅନ୍ନ ଭୋଜନ ତାର ନାହିଁ । ଉପବାସରେ ଅଛି ଶୋଇ ॥
ଏଣେ ଯେ ପ୍ରଭୁ ଶୋଷ୍ଣ ଯେତେ । ଶ୍ରୀହରି ପଦ୍ମଜ ସହିତେ ॥
ଭଣ୍ଡାର ଘର ମୁଦ ଦେଇ । ଭୋଜନ ନଶୋଧ କରାଇ ॥
କବାଟ ପକାଇ ଭୂଶତେ । ସେବକ ଗଲେ ଯେଝାମତେ ॥
ଏଥିଅନ୍ତରର ଆଦ୍ୟମୂଳ । ଯେ ପ୍ରଭୁ ଭକତ ବତ୍ସଳ ॥
ନ ସହେ ସେବକ ବେଦନା । ଏଥି ନିମନ୍ତେ ତହେଃ ବାନା ॥
ଜନ୍ତୁ ଯେ ଅଛି ନିରନ୍ତରେ । ଭୃତ୍ୟ ଆରତ ଖଣ୍ଡିବାରେ ॥
ତେଣୁ ଭକତ ସ୍ନେହେ ହରି । ତତକ୍ଷଣେ ଗଲେ ବିଜେ କରି ॥
ଯେ ମହାରାଜାଙ୍କର ପାଶ । ଧଇସ୍ତି କମଳା ବିଳାସ ॥

ରଜା ଯେ ନଦ୍ରା ଅଛୁ ଯାଇ । ତା ଶୀମସ୍ଥାନେ ଉଭା ହୋଇ ।
ମଣିଆ ଦାସ ଅଭିମାନେ । ରଜାଙ୍କୁ କହିଲେ ସ୍ୱପନେ ।
ବୋଇଲେ ଶୁଣରେ ରଜତ । ତୁ ତ ଅଜ୍ଞାନେ ହେଲୁ ମତ୍ତ ॥
ତୋ ରାଜ୍ୟ ହାନକାଇ ଯେତେ । ତାହା ନ ବୁଝି କି ନିମନ୍ତେ ।
ଏବେ ହେ ଶୁଣ ଶୁଦ୍ଧଚିତ୍ତେ । ମୁଁ ଯାହା କହୁଅଛୁ ତୋତେ ।
ମୋର ମଣିଆ ଦାସ ଆସି । ଜଗମୋହନ ଘରେ ପଶି ।
ସଙ୍ଗାଇ ତାଳ କରେ ଧରି । ଅନେକ ନାମ ଧ୍ୱନି କରି ।
ନୃତ୍ୟ କରଇ ଆମ୍ଭ ପାଖେ । ଆମ୍ଭେ ତା ଶୁଣୁଥାଉଁ ସୁଖେ ।
ମୋର ତହିଁରେ ଯେତେ ଲାଜ । ଶୁଣ କହିବା ତହିଁ ରାଜ ।
ତୋହର ଯେସନେ ନନ୍ଦନ । ପାଞ୍ଚ ସାତରେ ଯେତୁ ସାନ ।
ବରଷେ ପୂରିଣ ନ ଥାଇ । ଆସଇ ଗେହ୍ଲାଇ ଗେହ୍ଲାଇ ।
କହଇ ବଚେରି ବଚନ । କେବଳ ଅମୃତ ସମାନ ।
ତାହା ଯେମନ୍ତେ ଶୁଣି ତୁହି । ତହୁଁ ଅଧିକ ମୋତେ ସେହି ।
ତାକୁ ପ୍ରହାର ପଣ୍ଡା ତୋର । ମାରି ମୋ ପାଶୁ କଲା ଦୂର ।
ତେଣୁ ଉକତ ରୁଷିଗଲା । ପ୍ରଭୁମୂଳୁ ମୋହର ନଇଲା ।
ତେଣୁ ମୁଁ ଉପବାସେ ଅଛି । ତାକୁ ମୁଁ ନ ପାରଇ ମୁଞ୍ଚି ।
ଭୃତ୍ୟ ଅଇଲା ଯାଏ ମୋର । ମଣୋହି ନାହିଁଟି ମୋହର ।
ଏବେ ତୁ ବେଗେ ହୋଇଯିବୁ । ମୋର ଭକ୍ତକୁ ଡକାଇବୁ ।
ଅନେକ ଗଉରବ କରି । ଦେନାଇଯିବୁ କଣ୍ଠଧାସି ।
ପ୍ରାଢ଼ୁକୁ ଶ୍ରୀଜଗମୋହନେ । ନୃତ୍ୟ କରିବ ପ୍ରତିଦିନେ ।
ତେବେ ମୁଁ କରିବ ଭୋଜନ । ଏକଥା ସତ୍ୟ ବୋଲି ଜାଣ ।
ଆଉର କହୁଅଛୁ ତୋତେ । ମୋର ଭକତ ଜନ ହିତେ ।
ଅତ୍ୟନ୍ତ ହରଷ ମନରେ । ନିର୍ମାଣ ବିଶ୍ୱକର୍ମା କରେ ।
କରିଛୁ ଶ୍ରୀଜଗମୋହନ । ବିସ୍ତାର କରିଛୁ ଯତନ ।
ଭକତ ଜନ ତହିଁ ମିଳି । ରଙ୍ଗେ ବଜାଇ କରତାଳି ।
ମୋ ଭଙ୍ଗ ଅଧରକୁ ଚାହିଁ । ମୋ ପାଦପଦ୍ମକୁ ଯେ ଧ୍ୟାଇ ।

ମୋ ନାମ କରଣ କୀର୍ତ୍ତନ । ଆନନ୍ଦ କରୁଥିବ ମନ ॥
ଖବରେ ଯାଇଥିବେ ଗଡ଼ । ଉଠି କପାଳେ କର ଯୋଡ଼ ॥
ଅନେକ ସ୍ତୁତି କରିମୋତେ । ଜଣାଉଥିବେ ଦୁଃଖ ଶତେ ॥
ତାହା ମୁଁ ଶୁଣୁଥିବ ବସି । ଭକତ ଜନ ମନ ତୋଷି ॥
ଜଗମୋହନ ଏଥିପାଇଁ । ଆନେ ମୋ ପ୍ରୟୋଜନ ନାହିଁ ॥
ପୁରାଣ ପଣ୍ଡା ଆଜଠାରୁ । ମୋ ଆଗେ ପୁରାଣ ନ କରୁ ॥
ପାରିଲେ ଲକ୍ଷ୍ମୀଙ୍କ ମୋହନେ । ପୁରାଣ କରୁ ପ୍ରତିଦିନେ ॥
ଭୃତ୍ୟଙ୍କୁ କଲେ ମୋର ଦୂର । ସମ୍ଭବ ନାହିଁ ନସଧାର ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଇ । ଅଦୃଶ୍ୟ କଲେ ଶ୍ରୀବତ୍ସାଙ୍କ ॥
ମଣିଆ ଦାସ ପାଶେ ବିଜେ । କଲେ ଦେବାଧି ଦେବରାଜେ ॥
ବୋଇଲେ ଶୁଣ ଆହେ ଦାସ । ତୁ କମା ଅଛୁ ଉପବାସ ॥
ଏବେ ଭୋଜନ କରୁ ଜନା । କାଲି ମହିମା ବୁଝୁ ସିନା ॥
ଏମନ୍ତ କହି ପୀତବାସ । ଶ୍ରୀ ନୀଳାଚଳରେ ପ୍ରବେଶ ॥
ଦାସେ ଉଠିଲେ ତାହା ଶୁଣି । ଆନନ୍ଦେ ପ୍ରଭୁ ଗୁଣଗୁଣି ॥
ହରଷ କରି ପଞ୍ଚମନ । ସନ୍ତୋଷେ କଲେକ ଭୋଜନ ॥
ତେବଣେ ନୃପତି ଚେତା ପାଇ । ପାଶେ ଦେଖିଲା କେହିନାହିଁ ॥
ଜାଣିଲା ନିଶ୍ଚେ ଜଗନ୍ନାଥେ । କରୁଣା କରିଗଲେ ମୋତେ ॥
ମୋ ଜୀବ ଉଦ୍ଧାର ନିମନ୍ତେ । ପ୍ରବନ୍ଧ ହେଲା ତା ଉଚିତେ ॥
ଏମନ୍ତେ ମନେ ମନେ ଗୁଣି । ଉଠିଲା ନୃପ ଚୂଡ଼ାମଣି ॥
ଅଶ୍ୱ ଉପରେ ଲଗି ହୋଇ । ମିଳିଲା ଷେହବରେ ଯାଇଁ ॥
ବେଳ ପ୍ରହରେ ଅଛି ହୋଇ । ନୃପତି ଅଶ୍ୱରୁ ଓହ୍ଲାଇ ॥
ମଣିଆ ଦାସଙ୍କୁ ହକାରି । କୋଳେ ବସାଇ ଦଣ୍ଡଧାରୀ ॥
ଅନେକ ଗଉରବ କଲେ । ହସ୍ତ ଧରିଣ ଘେନଗଲେ ॥
ସଙ୍ଗତେ ଘେନ ଶ୍ରଦ୍ଧାମନେ । ପ୍ରବେଶ ଶ୍ରୀ ଜଗମୋହନେ ॥
ନୃପତି ବାନ୍ଧିବେଲେ ପାଠ । ବୋଇଲେ ଦାସେ କର ନାଟ ॥
ସଢ଼ାଇତାଳ ଧରି ହସ୍ତ । ଆନନ୍ଦେ ଗାଉ ଥାଅ ଗୀତ ॥

ପ୍ରଭୁଙ୍କ ମନ କର ତୋଷ । ଶୁଣି ଆନନ୍ଦ ମଣିଦାସ ॥
ସେହି ପ୍ରକାରେ କରି ଗୀତ । ଗାଇ ଢ଼ମାଳ କରେ ନୃତ୍ୟ ॥
ତହୁଁ ପୁରାଣ ମନାଇଲେ । ଲକ୍ଷ୍ମୀଙ୍କ ମୋହନେ ଗାଇଲେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ପ୍ରଭୁଙ୍କ ମହିମା ଏମନ୍ତେ ॥
କୃଷ୍ଣ ପୁରାଣେ କଲେ ମନା । ଭକତ ଭାବ ମୂଳ ସିନା ॥
ସଢ଼ାଇ ନାଟ କଲେ ମୂଳ । ଭକତବନ୍ଧୁ ଆଢ଼ମୂଳ ॥
ଏହି ସେ ପ୍ରଭୁର ଭଜନ । ମୂଳ ତୁ କର ହେ ସୁମନ ॥
ଏ ଭବଜଳଧି ହେବୁ ପାର । ଗୋଷ୍ପଦ ଜଳର ପ୍ରକାର ॥
ଯେ ହରି ଗୁଣ୍ଡ ଯେ ଭଜନ । କରଇ ଅନ୍ୟ ଦେବମାନ ॥
ସେ କାହିଁ ତରଇ ସଂସାର । ବ୍ୟର୍ଥ କର୍ମରେ ଶ୍ରମତାର ॥
ଅନ୍ଧ ଯେସନେ ଅନ୍ଧକାରେ । କେବେହେଁ ଗମିଣ ନ ପାରେ ॥
ମୃଗ ତୃଷ୍ଣାକୁ ଆଶ୍ରାକରି । ଧାଇଁଲେ ତୃଷା ନକ ହରି ॥
ସେହି ପ୍ରକାରେ ଭ୍ରମି ମରେ । ବୁଲଇ ମୋହ ପାଶ କରେ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ମୁକତ ॥
ଯେ ପ୍ରାଣୀ ଶୁଣି ଶ୍ରଦ୍ଧାକରେ । ଅନେକେ ଜନ୍ମ ପାପହରେ ॥
ବାଞ୍ଛା ସମ୍ପୂର୍ଣ୍ଣ ହେବ ତାର । ନ ଯିବ ଯମର ମନ୍ଦର ॥
କହଇ ରାମଦାସ ଦ୍ୱିଜ । ମୋ ପ୍ରଭୁ ଶଙ୍ଖ ଚକ୍ରଭୁଜ ॥
ଏ ଭବ ସଂସାରକୁ ଡରି । ଶରଣ ମାଗୁଅଛୁ ହରି ॥
ତୁମ୍ଭେ ଯେ ପତିତ ପାବନ । ମୁହିଁ ଅଟଇ ପାପୀଜନ ॥
ନସଙ୍କ ନକର ଗୋସାଇଁ । ଅନ୍ୟ ଶରଣ ମୋର ନାହିଁ ॥
ତୁମ୍ଭର ପାଦପଦ୍ମ ଧୂଳି । ମଣ୍ଡନ ହେଉ ମୋ ମଉଳି ॥
ଉଦ୍ଧର ଅବା ନ ଉଦ୍ଧର । ଅନ୍ୟ ଭରସା ନାହିଁ ମୋର ॥
ସୁଜନେ ଏହି ରସେ ରସ । ହରି ମହିମା ନାବେ ବସ ॥
ସକଳ ଅମଙ୍ଗଳ ନାଶ । ଏ ଭବଜଳରେ ନ ଭାସ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ
ମଣିଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

# ଊନବିଂଶ ଅଧ୍ୟାୟ

## କୃଷ୍ଣଦାସ ସମ୍ବାଦ

### ଚୈତନ୍ୟ ଉବାଚ

ଶୁଣ ସୁମନ ଶୁଦ୍ଧଚିତ୍ତେ । ମୁଁ ଯାହା କହୁଅଛି ତୋତେ ॥
ଏ କଳି ଯୁଗଧର୍ମ କଥା । ଶୁଣି ଖଣ୍ଡିବ ଭବବ୍ୟଥା ॥
କେବଳ ଶ୍ରୀହରିଙ୍କର ତତ୍ତ୍ୱ । କହୁଛି ଦୁର୍ଲ୍ଲଭ ଚରିତ ॥
ପୁରୁଷୋତ୍ତମେ ତାର ବାସ । ନାମ ତାହାର କୃଷ୍ଣଦାସ ॥
ଜାତିରେ ଅଟଇ କରଣ । ପଣ୍ଡିତ ବିବେକ ସୁଜାଣ ॥
ଧୀର ଚତୁର ସର୍ବଂସହ । ନିସତେ ପରଲୋକ ସ୍ପୃହ ॥
ସକଳ ଲୋକେ ଦୟାକରେ । ଦାର୍ଢ୍ୟ ଭକତି ଶ୍ରୀବନାଥରେ ॥
ସକଳ ଗୁଣେ ସେ ନିପୁଣ । କବିତ୍ୱପଣେ ବିଚକ୍ଷଣ ॥
ବୋଲଇ ନିର୍ଦ୍ଦୋଷ କବିତ୍ୱ । ପ୍ରବନ୍ଧ କଲା ଅପ୍ରମିତ ॥
ଶ୍ରୀହରି ବିନା ଅନ୍ୟ କଥା । ଗୀତ ସେ ନ ବୋଲେ ସର୍ବଥା ॥
ଶ୍ରୀକୃଷ୍ଣ ଜନ୍ମ କର୍ମ ଗୁଣ । ସେ ସବୁ କରଇ ବଖାଣ ॥
ଭକତଜନେ ଅଧିକାର । ଯହିଁ ଯେମନ୍ତେ କରିବାର ॥
ଦୁଷ୍ଟ ନିବାରି ସନ୍ଥପାଳି । ଗୋପୀ ଗୋପାଳ ରାସକେଳି ॥
କେବଳ ଏହି କଥାମାନ । ପ୍ରବନ୍ଧେ କରିଣ ଗାୟନ ॥
ମାଗେ ଉତ୍ତମ ଜନଠାରେ । ନିଜ କୁଟୁମ୍ବ ପୋଷିବାରେ ॥
ଯେ ଅବା ମିଳେ ଭାଗ୍ୟତାର । ଭୋଜନ ଚଳଇ ନିଜପୁର ॥
ପ୍ରାଣ ପୋଷନ୍ତି ତାହା ଖାଇ । ଯାଚକ ଜନେ କିଛି ଦେଇ ॥
ଏମନ୍ତ ବଞ୍ଚୁଥାଇ ଦିନ । ନ ଜାଣେ ଅନ୍ୟ କଥାମାନ ॥
କେତେକ ଦିନର ଉତ୍ତାରେ । ତା କାର୍ତ୍ତି ଜଗତେ ପ୍ରସ୍ଥରେ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଏ କୃଷ୍ଣ ଦାସର ଜୀବନ ॥
ଶ୍ରୀକୃଷ୍ଣ କଥାମୃତ ପାନ । କେବଳ ଅମୃତ ସମାନ ॥
ତାହାକୁ ପାରେ ବନ୍ଦୀକରି । ଶ୍ରବଣେ ପାପୀ ପାପ ହରି ॥
ଏମାନେ ପ୍ରବନ୍ଧ ସେ ଯେତେ । କଲା ଅଶେଷ ପ୍ରାଣୀ ହିତେ ॥

ଧନ୍ୟ ହୋ କୃଷ୍ଣ ଦାସ ମତ । ବୋଲିଣ ପ୍ରଶଂସା କରନ୍ତି ।
ଏମନ୍ତ କେତେଦିନ ଅନ୍ତେ । ସେ ରାଜ୍ୟ ନୃପତି ଅଗ୍ରତେ ।
ଉତ୍ତମ ଲୋକମାନେ ଆସି । କହନ୍ତି ଉତ୍ତମ ପ୍ରଶଂସି ।
ଶୁଣ ନୃପତି ଚୂଡ଼ାମଣି । ଏ ବଡ଼ ଅପୂର୍ବ କାହାଣୀ ।
କରଣ ନାମେ କୃଷ୍ଣ ଦାସ । ଅଟଇ ଶ୍ରୀହରିର ଦାସ ।
ତାହା ସମାନେ କବିପଣେ । ରାଜ୍ୟେ ନ ଥିବ ଅନ୍ୟ ଜଣେ ।
ବୋଲଇ ଉତ୍ତମ କବିତ୍ୱ । ଶ୍ରବଣେ ହରୁଅଛି ଚିତ୍ତ ।
କୃଷ୍ଣ କଥାରୁ ନାହିଁ ଅନ୍ୟ । ଡକାଇ ବୁଝ ହୋ ରାଜନ ।
ତାହା ଶୁଣିଣ ନୃପରାଣ । ତକ୍ଷଣେ ଡଗର ପେଷିଣ ।
କୃଷ୍ଣ ଦାସଙ୍କୁ ଶୁଦ୍ଧଚିତ୍ତେ । ଡକାଇ ଅଣିଲେ ତ୍ୱରିତେ ॥
ପ୍ରବେଶହେଲେ ଯେତେବେଳେ । ଆଜ୍ଞା ଯେ କଲେ ମହୀପାଳେ ।
ସଭାର ମଧ୍ୟେ କଥାରସେ । ବୋଇଲେ ଶୁଣ କୃଷ୍ଣ ଦାସେ ।
ବୋଲୁଛ କି କି ଗୀତମାନ । ଶୁଣିମା କର ହେ ଶସ୍ତନ ।
ତାହା ଶୁଣିଣ କୃଷ୍ଣଦାସ । ଚିତ୍ତେ ଚିନ୍ତିଲେ ପୀତବାସ ।
ଧୀର ଗମ୍ଭୀର ମୃଦୁସ୍ୱରେ । କହିଲେ ନପତି ସ୍ମୁମୁରେ ।
ମୋ ସ୍ଥିର ନୁହଇ ଭଜନ । ବୋଇଲେ ଶୁଣ ହେ ରାଜନ ।
ଗୀତ ବୋଲିବା ତୁମ୍ଭ ପାଶେ । ଏ କଥା ମନକୁ ନ ଆସେ ।
ଯହିଁ ବିଜୟ ଦେବରାଜ । ସଭା ନୁହଇ ରବିତେଜ ।
ଏ ରାଜସଭାରେ କହିବି । ମୁଁ ନୁହ କଥନେ ସମର୍ଥ ।
ଶୁଣି ବୋଲନ୍ତି ନୃପବର । କହନ୍ତି ସଂଶୟ ନ କର ।
ବସ ହୃଦୟ କରି ଦୃଢ଼ । ଯାହା ଜାଣିଛ ତାହା ପଢ଼ ।
ତା ଶୁଣି କୃଷ୍ଣଦାସ ତୋଷେ । ବସିଲେ ନୃପତିଙ୍କ ପାଶେ ।
ପ୍ରବନ୍ଧ ଫିଟାଇ ପଢ଼ିଲେ । ଅର୍ଥହିଁ ବୁଝାଇ କହିଲେ ।
ଯେତେ କବିତ୍ୱ ଥିଲେ କରି । ସବୁ ଶୁଣିଲେ ଦଣ୍ଡଧାରୀ ।
ହୋଇଣ ପରମ ସନ୍ତୋଷ । ଦାସଙ୍କୁ କଲେ ପରିତୁଷ୍ଟ ।
ନଗାନ ଅଳଙ୍କାର ଭୂଲେ । ଅନେକ ଅନ୍ନ ବସ୍ତ୍ର ଦେଲେ ।

ସଭାରେ ଥିଲେ ଯେତେ ଜନ । ହରଷ ସବୁଙ୍କର ମନ ॥
ଏଥିଅନ୍ତରୁ ଶୁଣ ମନ । ବୋଇଲେ ସେ ମହାରାଜନ ॥
ଶୁଣ ହେ ଭକ୍ତ କୃଷ୍ଣଦାସ । ହୋଇଣ ଥିବ ଦିବ୍ୟ ବେଶ ॥
ସୁନ୍ଦର ମନ୍ଦିର କଠଣ । ଗୀତ କରଣ ନାମେ ଭଣ ॥
ତୁମ୍ଭଙ୍କୁ କରିବା ପୌରୁଷ । ତାହା ଶୁଣିଣ କୃଷ୍ଣଦାସ ॥
ପିଣ୍ଡରୁ ଉଡିଲା ସାହାସ । ମୁଣ୍ଡେ କି ପଡ଼ିଲା କୁଳଶ ॥
ହୃଦପଦ୍ମରେ କଲା ଖ୍ୟାତ । ବୋଇଲା ଶୁଣ ହେ ଶ୍ରୀପତି ॥
ଏଘୋର ସଙ୍କଟୁ ଉଦ୍ଧାର । କୋହିଲେ ଗତି ନାହିଁ ମୋର ॥
ତୁମ୍ଭେ ଯେ କାମୀ କାମଧେନୁ । ବୋଲି ଛାଡ଼ିଲା ଭୟ ମନୁ ॥
ବୋଇଲା ଶୁଣ ନୃପନାଥ । କେବଳ ତେବ ଜଗନ୍ନାଥ ॥
ଏ ପିଣ୍ଡ ବିକଅଛୁ ତାରେ । ଗୀତ ମୁଁ ନ ବୋଲେ ଅନ୍ୟରେ ॥
ଏ କଥା ଅନ୍ୟ ହେବ କାହୁଁ । ଦୁଃଖ ନ କର ଆଜ୍ଞା ଦେଉ ॥
ତାହା ଶୁଣିଣ ଦଣ୍ଡଧର । ପୁଣି ବୋଇଲେ ଗୀତକର ॥
ମୋ ନାମ ଭଣିଲେ ଅବଶ୍ୟ । ଅ ଦଳ ଦେବ ଗ୍ରାମଦେଶ ॥
ମୋ ରାଜ୍ୟ ଦେବ ଅଧିକାର । ଦେଖ ମୁଁ ଜଗତେ ଈଶ୍ୱର ॥
କୋହିଲେ ମରିବୁ ଅବଶ୍ୟ । ଛାଡ ତୋ ଜୀବନର ଆଶ ॥
କେ ଆସି ରଖିବଟି ତୋତେ । ଏହା ବୁ କହୁଅଛୁ ମୋତେ ॥
ଦାସେ ବୋଇଲେ ତାହା ଶୁଣି । ଶୁଣ ହେ ନୃପ ଚୂଡ଼ାମଣି ॥
ତୁମ୍ଭଙ୍କୁ ନାହିଁ ମୋର ଡର । ମୋ ପ୍ରଭୁ ଜନେ ବଳସ୍ତାର ॥
ଜଗତ ସୃଷ୍ଟି ଆନ ହେଲେ । ଗୀତ ମୁଁ ଆନକୁ ନ ବୋଲେ ॥
ଏ କଥା ଅଟଇ ପ୍ରମାଣ । ଶୁଣି ଚଳଲେ ନୃପରାଣ ॥
ବୋଇଲେ ଧର ହେ ଏହାକୁ । କେବଣ ବାପ ଆସି ରଖୁ ॥
ସଭରେ ଲୋକେ ଆଚମ୍ଭିତ । ଅନାଇଁଛନ୍ତି ସ୍ତମ୍ଭିଭୂତ ॥
ଜଙ୍ଗଳ କରି ବନ୍ଧାଇଲେ । ହାଡେ ଶାଙ୍କୋଳି ପିନ୍ଧାଇଲେ ॥
ଶ୍ରୀ ପୁରୁଷୋତ୍ତମ ମଧ୍ୟରେ । ରଖାଇଗଲେ ବନ୍ଦଘରେ ॥
ବନ୍ଦୀ ମନ୍ଦିରେ ଛନ୍ଦକରି । ଖଣା ଖୋଳାଇ ହାତଗୁଣ ॥

ତହିଁରେ ଦାସଙ୍କୁ ରଖାଇ । ଉପରେ କାଠ ପଟା ଦେଇ ॥
ସେ କାଠପଟା ପରେ ଭଲେ । ପଥରମାନ ମଣ୍ଡାଇଲେ ॥
ନିର୍ବନ୍ଧେ କବାଟ କଳାଇ । ଯେମନ୍ତେ ନ ଯିବ ପଳାଇ ॥
ଅନେକ ଲୋକଙ୍କୁ ହକାରି । ଜଗାଇଦେଲେ ଦଣ୍ଡଧାରୀ ॥
ଜାଗ୍ରତ ରଖି ଜଗୁଆଳ । ଗୃହ ଚଳିଲେ ମହୀପାଳ ॥
ଘୁମୁରେ ଥିଲେ ଯେତେ ନର । କହିବା ଶକ୍ତି ଅଛି କାର ॥
ମହାପ୍ରତାପୀ ନୃପବର । ଚଳଣ ଗଲେ ନିଜପୁର ॥
ଲୋକେ ଯେ ଗଲେ ଯେଝାଘର । ଦାସେ ରହିଲେ ବନ୍ଦିଘର ॥
ଖଣା ମଧ୍ୟରେ ଦାସ ପଡ଼ି । ଆରତେ ଶିରେ କରଯୋଡ଼ି ॥
ଚିତ୍ତେ ଚିନ୍ତିଲେ ବଳଦେବ । ମୋହର କଷ୍ଟରେ ଆଜ୍ଞା ହେବ ॥
ଯେଣୁ ତୋ କରୁଣା ଲଙ୍ଗଳ । ମୋ ଆଉଁ ହସ୍ତ ନାକୁ ଠାଣ ॥
ଜୟ ନୀଳାଦ୍ରି ସିଂହବର । ମୋର ଆରତ ବଳଆର ॥
ରଖନ୍ତେ କୃଷ୍ଣ ଦାସ ପ୍ରାଣ । ବାରଣ ଆଉଁ ନିବାରଣ ॥
ରଖ ସେବକ ଯଶକାଶୀ । ଜାନୁତନୟା ମନୋହାରୀ ॥
ଏ ମହାସଙ୍କଟ ବନ୍ଧନ । ଫେଡ଼ ହେ ଶ୍ରୀନନ୍ଦନନ୍ଦନ ॥
ରଖ କରଜ ଦୁଃଖ ହର । ଏ ଦୃଢ଼ ବନ୍ଧନୁ ଉଦ୍ଧାର ॥
ହେ ସୁଦର୍ଶନ ଚକ୍ରଧର । ମୋ ଆଉଁ ନକ୍ରକୁ ନିବାର ॥
ତୁମ୍ଭେ ନରଖିଲେ ଗୋସାଇଁ । ଏଠାରେ ମୋର ସାହା ନାହିଁ ॥
ତୋ ଯଶ ଚକ୍ର ଉଦେ କର । ମୋ ଆଉଁ ଅନ୍ଧାକାର ହର ॥
ତୁମ୍ଭେ ନ ରଖିଲେ ନିସ୍ତ । ମୋର ମରଣ ହେଲା ସତ ॥
ଦାସ ବିନାଶ ହେଲେ ସତେ । କ ବୋଲି ବୋଲିବେ ଜଗତେ ॥
ଏଥକୁ ହୃଦରେ ବିଚାର । ମୋର ମରଣେ ନାହିଁ ଡର ॥
ସଂସାର ମଧ୍ୟେ ମହାବାହୁ । ମହିମା ରଖ ଅସ୍ତ ନୋହୁ ॥
ଲୋକେ ବୋଲିବେ କୃଷ୍ଣଦାସ । କୃଷ୍ଣ ଚରଣେ କଲା ଆଶ ॥
ତାର ବିନାଶ କାଳେ ହରି । ଯାଇଲେ ନାହିଁ ରକ୍ଷାକରି ॥
ଆଉ ଜନ୍ମାଇ ଏ ସଂସାରେ । ଭଜିବେ ଶ୍ରୀହରି ପଦ୍ମରେ ॥

ଜଗତେ ଏହା ପ୍ରକାଶିବ । ମନ୍ତ୍ରମା ନନ୍ଦନ ଭଣିବ ॥
ଏଥିକୁ ଖଣ୍ଡିଁ ମୋର ଦୁଃଖ । ଖଣ୍ଡ ହେ ପୁଣ୍ଡରୀକ ମୁଖ ॥
ଏ କଣ୍ଠଧର ଦଣ୍ଡ ମୋତେ । ଉଦ୍ଧର ଧରି ତୋର ହସ୍ତେ ॥
ଏମନ୍ତ ବୋଲି ସ୍ତୁତି ଭଣି । ବେନି ନୟନୁ ବହେ ବାଷ୍ପ ॥
କୃଷ୍ଣଚରଣେ ଚିତ୍ତଦେଇ । ଏକାନ୍ତେ ସ୍ତୁତି ସେ କରଇ ॥
ତାହା ଜାଣିଲେ ଭଗବାନ । ଯେ ପ୍ରଭୁ ଜଗତଜୀବନ ॥
ଭକତ ଅଭିମାନ କଥା । ସେ ହରି ନ ସହେ ସର୍ବଥା ॥
ସମ୍ପୂର୍ଣ୍ଣ ଅର୍ଦ୍ଧେଁକ ସର୍ବସ୍ୱ । ଭୃତ୍ୟର ପାଦେଶ ବଜେକରି ॥
କରପଲ୍ଲବ ଶିରେ ଧରି । ସଙ୍ଗାତେଙ୍କ ବୁଲାଇଲେ ହରି ॥
ଶ୍ରୀଭୁଜ ଅଙ୍ଗେ ତାର ଲାଗି । ପାଦ ଶାଙ୍କୋଳି ଗଲା ଭାଙ୍ଗି ॥
ଫିଟିଲା ଅଶେଷ ବନ୍ଧନ । ବୋଇଲେ ପ୍ରଭୁ ଭଗବାନ ॥
ଭକ୍ତବତ୍ସଳ ନାମ ମୋର । ତୋ ମନେ ସଂଶୟ ନ କର ॥
ଏମନ୍ତ ବୋଲି ସ୍ୱକରାଗ୍ର । ଦିବ୍ୟ ଭୋଜନ ପାଶେ ଥୋଇ ॥
ଭୁଞ୍ଜ ବୋଲିଣ ଆଜ୍ଞାଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଏମନ୍ତବେଳେ କୃଷ୍ଣଦାସ । ନିଦ୍ରା ଚେତଣ ଚଉପାଶ ॥
ଅନାଇ ଦେଖେ କେହ୍ନ ନାହିଁ । ଅଦ୍ଭୁତେ ମନେ ବିସ୍ମରଇ ॥
ପାଦେ ଶାଙ୍କୋଳି ମୋରନାହିଁ । ବନ୍ଧନ ଦେ ଦେଲା ଫିଟାଇ ॥
କର ପଲ୍ଲବ ଶିରେ ଅଛି । ପ୍ରସାଦ ଥୋଇ ଦେ ଯାଇଛି ॥
ଏମନ୍ତ ବୋଲି କରେ ଧରି । ନେତ୍ରେ ଛୁଆଇଁ ଭକ୍ତେ ଭରି ॥
କୈବଲ୍ୟ ପାଇ ଅତି ତୋଷେ । ବୋଇଲେ ମନର ହରଷେ ॥
କଷ୍ଟେ ଏ ଗୋବିନ୍ଦର ମାୟା । ବୋଲି ପୁଲକ ଭଲ କାୟା ॥
ଆନନ୍ଦେ ବୋଲି ହରି ହରି । ମୁକୁନ୍ଦ ମାଧବ ମୁରାରି ॥
ଶ୍ରୀରାମ କୃଷ୍ଣ ବାସୁଦେବ । ପରମାନନ୍ଦ ପଦ୍ମନାଭ ॥
ଆନନ୍ଦ ଅଚ୍ୟୁତ ଗୋବିନ୍ଦ । ବ୍ରଜ ବୈଷ୍ଣବ ସଦାନନ୍ଦ ॥
ଶ୍ରୀ ନାରାୟଣ ଚକ୍ରପାଣି । ବ୍ରଜବଲ୍ଲଭୀ ପ୍ରାଣମଣି ॥
ଶ୍ରୀବନମାଳି ଶ୍ରୀପତି । ସନକ ଭବ ଦାଶରଥି ॥

| | |
|---|---|
| ଲକ୍ଷ୍ମୀବଲ୍ଲଭ ସୀତାପତି | । ଏମନ୍ତେ ପ୍ରଭୁ ନାମ ଚିନ୍ତି । |
| ଭଜନ କରି ନିଜ ମୁଖେ | । ରଜନୀ ବଞ୍ଚି ଥାଇ ସୁଖେ । |
| ଭକ୍ତବତ୍ସଳ ହଳପାଣି | । ଭକତ ଚିନ୍ତା ମନେ ଜାଣି । |
| ସେ ରାଜ୍ୟ ରାଜାପାଶେ ଗଲେ | । ହଳ ଲଙ୍ଗଳ ଦେଖାଇଲେ । |
| ବୋଇଲେ ପ୍ରାଣେ ଯେବେ ଆଶ | । ଛାଡ଼ି ତୁ ଦିଅ କୃଷ୍ଣ ଦାସ । |
| ନୋହିଲେ ତୁ ନିଶ୍ଚେ ମରିବୁ | । ଭୃତ୍ୟକୁ କି କରିପାରିବୁ । |
| ଏମନ୍ତ ଆଜ୍ଞା ତାକୁ ଦେଲେ | । ଫଣି ମଣ୍ଡଳ ବିଜେକଲେ । |
| ସେ ଦିବ୍ୟସିଂହ ମହାରଥୀ | । ସ୍ୱପନେ ଦେଖି ଏହୁ କଥା । |
| ହୃଦ ପଦ୍ମରେ କଲା ଖ୍ୟାତି | । ଚିନ୍ତିଲା ବଳଦେବ ମୂର୍ତ୍ତି । |
| ଏମନ୍ତେ ରଜନୀ ପାହିଲା | । ନୃପତି ବିଜେ କରିଗଲା ॥ |
| ବନ୍ଦୀମନ୍ଦିରେ ବିଜେକଲେ | । କବାଟ ଫିଟାଇଣ ଦେଲେ ॥ |
| ପଥର କାଢ଼ି କାଠ ପେଲି | । ଦାସଙ୍କୁ ଦେଲେକ ଅନାଇ ॥ |
| ବନ୍ଧନ ଅଛୁ ଫିଟା ହୋଇ | । ପାଦେ ଶାଙ୍କୋଳି ତାର ନାହିଁ ॥ |
| ପ୍ରଭୁଙ୍କ ଅଙ୍ଗ ଉପହାର | । ତା ଅଙ୍ଗେ ଦିଶଇ ସୁନ୍ଦର ॥ |
| ବସିଣ ଭଜୁ ଅଛୁ ହରି | । ଦେଖି ଚୋଳଲେ ଦଣ୍ଡଧାରୀ ॥ |
| ଏମନ୍ତ ସମସ୍ତେ ସେବକେ | । ଆସି ମିଳିଲେ ରାଜା ପାଖେ ॥ |
| ବୋଇଲେ ଶୁଣ ନରନାଥ | । ଆମ୍ଭେ ଦେଖିଲୁ ବିପରୀତ ॥ |
| କବାଟ ଫିଟା ଅବକାଶେ | । ଯାଇଁ ମିଳିଲୁ ପ୍ରଭୁ ପାଶେ ॥ |
| କର ପଲ୍ଲବ କରେ ନାହିଁ | । ଶ୍ରୀ ଅଙ୍ଗ ଅଛୁ ଭୁକ୍ତାହୋଇ ॥ |
| ଦେଖି ଅଇଲୁଁ ଏଇକ୍ଷଣି | । ବୁଝିବା ହେଉ ନୃପମଣି ॥ |
| ତାହା ଶୁଣିଣ ନୃପରାୟେ | । ତହୁଁ ଦେଖିଲେ ଭୃତ୍ୟଠାଏ ॥ |
| ସ୍ୱପନ କଥା ମନେ ଚିନ୍ତି | । ଅତି ଆନନ୍ଦେ ସେ ନୃପତି ॥ |
| କୃଷ୍ଣ ଦାସଙ୍କୁ ଧରି କୋଳେ | । ମୁଖେ ଚୁମ୍ବନ ଦେଲେ ସ୍ନେହେ ॥ |
| ବୋଇଲେ ଧନ୍ୟ ତୋ ଜୀବନ | । ତୋତେ ଦେଖିଲି ମୁହିଁ ଧନ୍ୟ ॥ |
| ଧନ୍ୟ ତୋ କର୍ଣ୍ଣ ମୁଖ ନାସା | । ଧନ୍ୟ ଜିହ୍ୱା ତୋର ଭାଷା ॥ |
| ଧନ୍ୟ ତୋ ମନ ବୁଦ୍ଧି ଯେତେ | । ପ୍ରଭୁଙ୍କ ଏତେ ଦୟା ତୋତେ ॥ |

ସଂସାରେ ହରିଭକ୍ତି ସାର । ଧିକ ମୋ ନୃପତ୍ତ ହେବାର ॥
ଧିକ ଏ ଅନ୍ୟ କର୍ମ ଯେତେ । ଧନ୍ୟ ସଂସାରେ ହରିଭକ୍ତେ ॥
ଦେଖ ମୋହର ମୂଢ଼ପଣ । ସାଧୁଙ୍କୁ ଦେଲି ମୁଁ କଷଣ ॥
ଏଥେଁ ଅପ୍ରାଧ ମୋର ଯେତେ । କେବେହେଁ ନ ଘେନବ ଚିତ୍ତେ ॥
ତୁମ୍ଭର ନାହିଁ ପରାପର । ମୋହର ଦୋଷ କ୍ଷମାକର ॥
ଏମନ୍ତ ବୋଲି ନୃପମଣି । ଅନେକ ଧନ ବସ୍ତ୍ର ଆଣି ॥
କୃଷ୍ଣ ଦାସଙ୍କୁ ଛାଡ଼ି ଦେଲେ । ନୃପତ୍ତି ତହୁଁ ଚଳିଗଲେ ॥
ସମସ୍ତେ ଜୟ ଜୟ କଲେ । ଶ୍ରୀକୃଷ୍ଣ ଦାସ ବିଜେକଲେ ॥
ପ୍ରଭୁଙ୍କ ଦରଶନ କରି । ଚଳିଣଗଲେ ନିଜ ପୁରୀ ॥
ଶୁଣ ସୁମନ ଏକଚିତ୍ତେ । ପ୍ରଭୁଙ୍କ ମହିମା ଏମନ୍ତେ ॥
ଭକତଜନେ ଏତେ ଦୟା । ନ ଥିବ ନିଜ ପୁତ୍ରେ ତାହା ॥
ହରି ଭକତ ମାନଙ୍କର । ମହିମା ଅପା ଅପାର ॥
କେ ମୁଖେ କହିବାକୁ କ୍ଷମ । ଏ କଥା ନୁହଇ ସୁଗମ ॥
ସଂସାରେ ପ୍ରାଣୀ ଜନ୍ତୁ ଯେତେ । ଯେ ଏହା ଶୁଣେ ଶ୍ରଦ୍ଧାଚିତ୍ତେ ॥
ଯେବା ପଢ଼ିବ ଶୁଦ୍ଧମନେ । ନ ଯିବ ସମନ ଦର୍ଶନେ ॥
ଅଶେଷ ଭବବନ୍ଧ ଫାଶ । ଲଗିବ ନାହିଁଟି ଅବଶ୍ୟ ॥
ନରପତିଙ୍କ ଦଣ୍ଡ ଯେତେ । ଲଗିବ ନାହିଁ କଦାଚିତ୍ତେ ॥
କହଇ ଦୀନ ରାମଦାସ । ମନରେ ଅଛଇ ବିଶ୍ୱାସ ॥
ଏଣୁଟି ରାମ କୃଷ୍ଣପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥
ସାଧୁଜନଙ୍କ ପାଦଧୂଳି । ବନ୍ଦେ ନ ଗୁଣ୍ଡ଼ି ମୋ ମଉଳି ॥
ସୁଜନେ ଏହି ରସେ ରସ । ଏଣୁ ଅନ୍ୟରେ ନାହିଁ ଆଶ ॥
ସାଧୁ ଶ୍ରୀକୃଷ୍ଣ ନାମ ବନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ କୃଷ୍ଣ ଦାସ ଦାର୍ଢ୍ୟଭାବ ମୋକ୍ଷଣେ
ନାମ ଉନବିଂଶୋଽଧ୍ୟାୟଃ ।

# ବିଂଶ ଅଧ୍ୟାୟ

## ତିଳକ୍ଷ୍ଣ ମହାପାତ୍ର ସମ୍ବାଦ

### ଚୈତନ୍ୟ ଉବାଚ

ଏବେ ହୋ ଶୁଣ ମନସ୍ଥେ । କହିବା ଦୁର୍ଲ୍ଲଭ କଥାଏ ॥
ଦାର୍ଢ୍ୟତାଭକ୍ତି ଉପଜ୍ଞାନ । ଭକତ ମଧ୍ୟେ ମୋକ୍ଷପାନ ॥
ପୁରୁଷୋତ୍ତମେ ତାର ଘର । ଜାତିରେ ଅଟେ ବିପ୍ରବର ॥
ସେବକ ମଧ୍ୟେ ଅଧିକାର । ଶୁଣ ମହିମା ଏତେ ତାର ॥
ତିଳକ୍ଷ ମହାପାତ୍ର ଘର । ଗୋପବନ୍ଧୁ ଯେ ନାମ ତାର ॥
ଏହାଙ୍କ ଉପର ବଂଶରେ । ପ୍ରତାପରୁଦ୍ର ଅମଳରେ ॥
ଯେ ଜଗବନ୍ଧୁ ମହାପାତ୍ର । ଶୁଣ କହିବା ତା ଚରିତ୍ର ॥
ସକଳ ପାଠ ଶାସ୍ତ୍ରେ ଜତା । ଜାଣଇ ସର୍ବ ଧର୍ମ କଥା ॥
ସର୍ବଦା କାଳେ ଶୁଚିମନ୍ତ । ଭଜନ ମାର୍ଗେ ବାସ୍ତୁତନ୍ତ ॥
ଶାନ୍ତ ସୁଶୀଳ ସର୍ବଂସହ । ସୁଜନ ସଙ୍ଗଙ୍କର ପ୍ରିୟ ॥
ଦୁଃଖୀ ଲୋକନ ଦୟା ନଟ୍ଟୋ । ସ୍ନେହ ତା ଥାଏ କଥାମୃତେ ॥
ଶ୍ରୀନୀଳାଚଳ ପୁରବାସୀ । ପ୍ରଭୁ ପରମ ବ୍ରହ୍ମବସି ॥
ଅଶେଷ ପ୍ରାଣିଙ୍କର ଗତି । କମଳା ଦେବୀ ପ୍ରାଣପତି ॥
ଯେ ସଙ୍କର୍ଷଣ ହଳପାଣି । ରେବତୀଦେବୀ ପ୍ରାଣମଣି ॥
ରୋହିଣୀ ଦେବୀଙ୍କ ନନ୍ଦନ । ଅଶେଷ ମୁନିଙ୍କ ବନ୍ଦନ ॥
ସୁଭଦ୍ରା ଦେବୀ ଜଗନ୍ମାତା । ଅଶେଷ ପ୍ରାଣୀ ପଣ୍ଡଦାତା ॥
ଏ ତିନ ଦେବ ସେବା ଦିନେ । ଅନ୍ୟ ନ ଜାଣେ ତାର ମନେ ॥
ପାହାନ୍ତି ଅବକାଶଠାରୁ । ପ୍ରଭୁଙ୍କ ପହଣ୍ଡ ସେବାରୁ ॥
ଏଥି ମଧ୍ୟରେ ସେବା ଯେତେ । କରୁ ଯେଥାଇ କଂଚ୍ଚୋ ନଚ୍ଚ୍ୟେ ॥
କଣ୍ଠି କର୍ଣ୍ଣାଞ୍ଜଳ ତଳ । ହାର କେୟୁର ଧଣ୍ଡାମାଳ ॥
ହସ୍ତପଦ୍ମରେ ପଦ୍ମହାର । ଗାଉଦ ହସ୍ତି ବଞ୍ଚିବାର ॥
ନାନାକୁସୁମେ ହାର ଯେତେ । ତୁଳସୀ ଧଣ୍ଡାର ସହିତେ ॥
ଯେ ଅଷ୍ଟରତ୍ନ ଅଳଙ୍କାର । ଭୂଷଣ ପ୍ରଭୁମାନଙ୍କର ॥

ଯେତେ ଦେଉଳର ସେବା ଯେତେ । ସବୁ ସେ କରୁଥାଇ ହସ୍ତେ ।।
ଶ୍ରୀମୁଖ ସିଂହାର କରିବା । ଯେ ବସ୍ତ୍ରମାନ ପିନ୍ଧାଇବା ।।
ଗନ୍ଧ ଚନ୍ଦନ ଯେ କସ୍ତୁରୀ । ତିଳକ ସେବା ଆଦି କରି ।।
ଧୂପ ଆଳତି କରିବାର । କର୍ପୂର ଦୀପ ଜାଳିବାର ।।
ତାହାର ବିନା ଅନ୍ୟ ନରେ । ସମ ନୁହନ୍ତି କରିବାରେ ।।
ସେ ପୁଣି ଜଣି ଅବସରେ । ମନବଚନ କର୍ତ୍ତବ୍ୟରେ ।।
କେବଳ ସେବୁଥାଇ ତାଙ୍କୁ । ନ ଜାଣେ ଅନ୍ୟ ଦେବତାଙ୍କୁ ।।
ଦେବ ବଇଦ ଗୁରୁଜନ । ଇଷ୍ଟଦେବତା ବନ୍ଧୁଜନ ।।
କେବଳ ପ୍ରଭୁ ଦାରୁବ୍ରହ୍ମ । ଏଥି ନ ଜାଣେ ଅନ୍ୟ କର୍ମ ।।
ସୁତ ସମ୍ପତ୍ତି ଦାରା ପ୍ରାଣ । ସମର୍ପି ଶ୍ରୀହରି ଚରଣ ।।
ଆନନ୍ଦେ ବଞ୍ଚୁଥାନ୍ତି ଦିନ । କରନ୍ତି ସେ ପ୍ରଭୁ ଭଜନ ।।
ଏମନ୍ତ କେତେଦିନ ଅନ୍ତେ । ଶୁଣ ସୁମନ ଏକଚିତ୍ତେ ।।
ଦିନେକେ ସେ ମହାରାଜନ । ପ୍ରଭୁଦର୍ଶନେ ଆଗମନ ।।
ଅନେକ ସୈନ୍ୟ ସଙ୍ଗେ ଧରି । ପ୍ରତାପରୁଦ୍ର ଗଜେଶ୍ୱରି ।।
ବଜାଇ ବୀର ତୂରମାନ । ଆଗେ ଶୁଭଇ କମ୍ବୁସ୍ୱନ ।।
ଅନେକ ବାଦ୍ୟ ଘୋରନାଦ । ଘେନାଇ ଅନେକ ସମ୍ପଦ ।।
ବିଜୟ ଅନେକ ସମ୍ଭାରେ । ପ୍ରବେଶ ହେଲେ କ୍ଷେତ୍ରବରେ ।।
କହୁଁ କହୁଁ ସେ ନରପତି । ପ୍ରବେଶ ସିଂହଦ୍ୱାର ଗତି ।।
ରାଜାଙ୍କୁ ଦେଖିଣ ସେବକେ । ବେଗଳେ ଧାଇଁଗଲେ ଥୋକେ ।।
କହିଲେ ମହାପାତ୍ର ପାଶେ । ନୃପତି ଭଳେ କଣ ଆସେ ।।
ଦେଉଳେ ପଶିଲେଣି ଆସି । କହୁଁ କହୁଁ ସେ ରାଜା ଋଷି ।।
ସେ ମହାପାତ୍ର ଦେଖି ତାଙ୍କୁ । ଧାଇଁଲେ ପ୍ରଭୁଙ୍କ ଶ୍ରୀମୁଖୁ ।।
ଅତ୍ୟନ୍ତ ଛନ୍ଦ ହୋଇ ମନେ । ଉଠିଲେ ରତ୍ନ ସିଂହାସନେ ।।
ଦେଖିଲେ ପ୍ରଭୁଙ୍କ ମଉଳି । କୁସୁମ ନାହିଁ ମନେ ଭାଳି ।।
କି ବୁଦ୍ଧି କରିବି ମୁଁ ଏବେ । ନୃପତି ଆସିଲେଣି ଯେବେ ।।
ପ୍ରଭୁଙ୍କ ମସ୍ତକର ଫୁଲ । ଯେ ରାଜ ପ୍ରସାଦ ଅମୂଲ୍ୟ ।।

ମୁଁ କି ଏ ରଜାଙ୍କୁ ଦେବାର । ନ ଦେଲେ ମହତ୍ୱ ମୋହର ॥
ଏଠାରେ ଆଜ ନ ରହିବ । ମୁଣ୍ଡରେ ହାତ ଦେଲେ ଯିବ ॥
ନିଜ ମସ୍ତକୁ ଫୁଲ ଦେଲେ । ପ୍ରଭୁଙ୍କ ମସ୍ତକେ ଥୋଇଲେ ॥
ଏମନ୍ତେ ଯାଇ ନୃପବର । ମିଳିଲେ ପ୍ରଭୁଙ୍କ ସମ୍ମୁର ॥
ସେ ବିଧିମତରେ ଦର୍ଶନ । ସମସ୍ତ ସାରିଲେ ରାଜନ ॥
ପ୍ରଭୁ ସମ୍ମୁରେ ମହାବଳୀ । ପ୍ରସାଦ ଅର୍ଥେ କର ତୋଳି ॥
ତାହା ଦେଖିଣ ମହାପାତ୍ର । ଜଳେ ଧୋଇଲେ କରପତ୍ର ॥
ପ୍ରଭୁ ମସ୍ତକୁ ପୁଷ୍ପ ନେଇ । ନୃପତି ହସ୍ତ ତାହା ଦେଇ ॥
ରଜା ପ୍ରସାଦ ଆଣିଦେଲେ । ସେନ ନୃପତି ଚଳିଗଲେ ॥
ନଗରେ ହୋଇଲେ ପ୍ରବେଶ । ଏମନ୍ତେ ଦିନ ହେଲା ଶେଷ ॥
ଦିବ୍ୟଆସନେ ରଜା ବସି । ପ୍ରସାଦଫୁଲ ଧରି ତୋଷି ॥
ଏକେତ ଯାଇ ଫୁଲ ଗନ୍ଧ । ଶୁକ୍ଳେ ଦିଶଇ ଅତି ଶୋଦ୍ଧ ॥
ତହିଁ ଦେଖିଲେ ବିପରୀତେ । ଦିଶିଲା ବାଳ ଗୋଟିକେତେ ॥
ଦେଖି ବିସ୍ମରେ ନୃପବଣ । ଏତ ଅଟଇ ବିଡମ୍ବନ ॥
ପ୍ରଭୁଙ୍କ ମଥାର ଫୁଲରୁ । ବାଳ ଅଇଲା କେଉଁଠାରୁ ॥
ନଷ୍ଟେ ଏ କଥା ହେଲା ନାଶ । ବ୍ରାହ୍ମଣ ମୁଣ୍ଡ ଛଡ଼ା ପୁଷ୍ପ ॥
ପ୍ରଭୁଙ୍କ ଶିରରେ ଥୋଇଲା । ପ୍ରସାଦ ବୋଲି ମୋତେ ଦେଲା ॥
ଏମନ୍ତ ବୋଲି ଦଣ୍ଡଧାରୀ । ପେଷିଲେ ଲୋକ ଜଣ ଗୃହ ॥
ତୁମ୍ଭେ ରେ ଯାଅ ବେଗହୋଇ । ଡକନ୍ତୁ ମହାପାତ୍ର ଠାଇଁ ॥
ବହନ ହୋଇ ଘେନିଆସ । ବିଳମ୍ବ କଲେ ଯିବ ନାଶ ॥
ଆଜ୍ଞାପ୍ରମାଣେ ବେଗେ ଗଲେ । ଦେଉଳେ ପ୍ରବେଶ ହୋଇଲେ ॥
ମହାପାତ୍ରଙ୍କୁ ଘେନିଗଲେ । ନୃପତି ଆଗେ ଉଭାକଲେ ॥
ଦେଖି କୋପିଲେ ନୃପସାଇଁ । କାଳଭୁଜଙ୍ଗ ପ୍ରାୟେ ହୋଇ ॥
ବୋଇଲେ ଶୁଣ ମହାପାତ୍ର । ଆମ୍ଭେ ଦେଖିଲୁ ବିପରୀତ ॥
ପ୍ରଭୁଙ୍କ ମଉଳରେ ବାଳ । ଉଠିବା ହେଲା କେତେ କାଳ ॥
ବେଗେଗୁ କହ ମୋର ସାଣ । ଯେବେ ଜୀବନେ ତୋର ଆଣ ॥

ନୋହିଲେ ମରିବୁ ଅବଶ୍ୟ । କେଖ ପ୍ରସାଦ ଫୁଲେ କେଶ ॥
ତା ଶୁଣି ଶ୍ରୀହରି ସେବକ । ମନେ ଚିନ୍ତିଲେ ପ୍ରଭୁ ରଖ ॥
ନିଶ୍ଚେ ମରଣ ହେଲା ମୋର । ଏଡେ ପ୍ରତାପୀ ଦଣ୍ଡଧର ॥
କି ଦଣ୍ଡ ଦଣ୍ଡିବ ଏ ମୋତେ । ଏଠାରୁ ବଞ୍ଚିବ କେମନ୍ତେ ॥
ମିଥ୍ୟା ମୁଁ କହିବି କଥାଏ । ଏଠାରୁ ବଞ୍ଚିଯିବା ଯାଏ ॥
ପଛକେ ଯାହା ହେବ ହେଉ । ଏ ରାଜଦଣ୍ଡ ଆଗେ ନୋହୁ ॥
ଏମନ୍ତ ବୋଲି ମହାପାତ୍ର । କାଖେ ଉଭଣ କରପତ୍ର ॥
ବୋଇଲେ ଶୁଣ ହେ ନରେଶ । ହେଲାଣି ପ୍ରଭୁ ମୁଣ୍ଡେ କେଶ ॥
ଆଜଯାଏ କି ଦଣ୍ଡଧର । ତୁମ୍ଭଙ୍କୁ ନୋହିଛି ଗୋଚର ॥
ଶୁଣି ବୋଇଲେ ନରନାଥେ । ଦେଖାଇ ଦେବୁକ ମୋତେ ॥
'ତା ଶୁଣି ମହାପାତ୍ର କହି । ନିଶ୍ଚେ ଦେଖାଇ ଦେବି ମୁହିଁ ॥
ଯେବେ ଦେଖାଇ ନ ପାରିବ  ଦଣ୍ଡକୁ କାରଣ ହୋଇବ ॥
ଶୁଣି ବୋଇଲେ ମହାରଥୀ । କାଲି ବୁଝିବା ତୁମ୍ଭ କଥା ॥
ଯେବେ ପ୍ରଭୁଙ୍କ ଶିରେ କେଶ । ଦେଖାଇ ଦେବୁଟି ଅବଶ୍ୟ ॥
ତେବେଟି ତୁମ୍ଭର କୁଶଳ । ନୋହିଲେ ରାଜ୍ୟ ଛାଡ଼ ଚଳ ॥
ଅଧିକ କି କହିବି ତୋତେ । ତୁମ୍ଭେତ ଜାଣିଅଛ ଯେତେ ॥
ଏମନ୍ତ ବୋଲି ଦଣ୍ଡପାଣି । ତାହାଙ୍କୁ ଦେଲେ ସେ ମେଲାଣି ॥
କର୍ତ୍ତୁଁ ଚଳିଲେ ଦ୍ୱିଜବର । ମିଳିଲେ ପ୍ରଭୁଙ୍କ ଛାମୁର ॥
ସେ ରାଜା ଧୂପ ଅବକାଶ । ଶ୍ରୀହରି ଫୁଲଲାଗି ବେଶ ॥
ଆଳତି ବନ୍ଦାପନା ସେବା । ଚଢାଇଲାଗି ବେଶ ଅବା ॥
ପ୍ରଭୁ ମଣୋହି ଆଦି କରି । ବଡ ସିଂହାର ବେଶ ସାରି ॥
ଯେ ନିତ୍ୟକର୍ମ ବିଧି ଯେତେ । ପ୍ରଭୁଙ୍କ ପହଡ଼ ସହିତେ ॥
ସକଳ ସେବା ବଢ଼ାଇଲେ । ଛାମୁରେ ଜଗି ହୋଇ ରଲେ ॥
ସର୍ବାଙ୍ଗେ ବସ୍ତ୍ରବତ କରି । ଉଠି କପାଳେ କର ଭରି ॥
ବୋଇଲେ ଆହେ ମହାବାହୁ । ଛାମୁରେ କି କହିବ ଆଜ ॥
ଉତରଲେକେ ବଡପଣ । ଦେଲଟି ପ୍ରଭୁ ନାସ୍ତୁଣ ॥

କାନେ ଏ ହୁଅଇ ଏମନ୍ତ । ସରଇ ପ୍ରଭୁର ମହତ୍ତ୍ୱ ॥
ଶ୍ୱାନକୁ ଆଶ୍ୱାସନା କଲେ । ମୁଖେ ଚୁମ୍ବନ ଦେଇ ଲଲେ ॥
ସର୍ପକୁ ଦେଲେଟି ପୀୟୂଷ । କାଳେ ସେ ଜବ୍ ଗାରଲ ଦନ୍ତ ॥
ଏଣୁ ମୋ ଗୁରୁ ପାପୀଜନ । ଯମୁଖୁ ନୁହଇ ଖଞ୍ଜନ ॥
ଯେବଣ ପାଦପଦ୍ମ ତଳେ । ବ୍ରହ୍ମା ଇନ୍ଦ୍ରାଦି ଶିର ଲୁଳେ ॥
ସେ ପାଦ ପଙ୍କଜର ମୂଳେ । କମଳା ସେବେ ନିରନ୍ତରେ ॥
ଯେବଣ ପାଦପଦ୍ମ ବାସି । ଶଙ୍କର ମଣ୍ଡଳରେ ଧରି ॥
ସେ ପଦଅରବିନ୍ଦ ବାସି । ପବିତ୍ର କଲ ତ୍ରିପୁରୀ ॥
ଶୁକ ସନକ ସନାତନ । ଯେ ପାଦେ ନୁହଇ ଖଞ୍ଜନ ॥
ଶାରଦା ଆଦି ସୁର ଦେବେ । ଯେ ପାଦେ ନିରନ୍ତରେ ସେବେ ॥
ଯେବଣ ପାଦପଦ୍ମ ଧ୍ୟାୟି । ଯୋଗୀଏ ଯୋଗ ମାର୍ଗେ ଥାଇ ॥
ସେ ପାଦପଦ୍ମ ସେବାକରି । ମୋ ଗୁରୁ ନରଦେହ ଧରି ॥
କୋଟିଏ କଣ୍ଠରୁ ନିନ୍ଦନ । ମୁଁ ନୋହେ ତର୍ଣ୍ଣି କ ଖଣ୍ଡନ ॥
ଯେଣୁ ଦେଲୁ ଜ୍ଞାନଗ୍ରାହ୍ୟ । ତେଣୁ ମୁଁ ମଉଗର୍ବ କଷ୍ଟ ॥
ପ୍ରଭୁଙ୍କୁ ଚିହ୍ନି ନ ପାରିଲି । ମୁଁ ମୂଢ଼ ମନ୍ଦକର୍ମ କଲି ॥
ମୋ ମୁଣ୍ଡ ଛଡ଼ାଇଲ ନେଇ । ତୋ ମୁଣ୍ଡେ ଥୋଇଲ ଗୋସାଇଁ ॥
ଏହା କହୁଛି ମୋର ତୁଣ୍ଡ । ତହେଁ ବିନାଶ ମୋରମୁଣ୍ଡ ॥
ସଜାର ଦଣ୍ଡଯାଏ ନୋହୁ । ଏ ପାପୀ ଶରୀର ନ ଥାଉ ॥
ଅଧିକ କ କହିବ ତୋତେ । ତୁ ଯେ ଭକତଜନ ହିତେ ॥
ଅନେକ ପାଇଛୁ ଲକ୍ଷଣ । ଏହା ମୁଁ ଶୁଣିଛୁ ଶ୍ରବଣ ॥
ଅଦ୍ୟାପି ଶ୍ରୀବତ୍ସ ପଦୁର । କହିଛୁ ହୃଦପଦ୍ମେ ତୋର ॥
ତାହା ମୁଁ ନୟନେ ଦେଖୁଛି । ତେଣୁ ମୋ ଉପୁଁନାହିଁ କଛୁ ॥
ତୁ ନାଥ ପରମ ଦୟାଳୁ । ଭୃତ୍ୟ ଦଣ୍ଡକୁ ନାହିଁ ଛଳୁ ॥
ଏଣୁ ମୁଁ କହୁଅଛି ତୋତେ । କହୁଛି ନୃସିଂହ ଅଗ୍ରତେ ॥
କହି ଅଇଲ ଯାବନ୍ତସ୍ଥ । ତାହାତ ଜାଣିଥିବୁ ତୁହି ॥
ତୁ ଅନ୍ତର୍ଯ୍ୟାମୀ ଏ ଜଗତେ । କିସ କହିବାର ଅଛି ତୋତେ ॥

ରାତ୍ର ପାହିଲେ ନରନାଥେ | ଧରାଇ ଦେବେ ଯିବେ ମୋତେ ||
ଅନେକ ଦଣ୍ଡ ସେ କରିବ | ସେ ଦଣ୍ଡ କେ ସହିପାରିବ ||
ଏଣୁ ତୋ ଦଣ୍ଡକୁ ନ ଥିବ | ଗରଳ ଖାଇଣ ମରିବ ||
ଏକଥା ଅଟଇ ପ୍ରମାଣ | ଶ୍ରୀମୁଖରେ କଲି ନିବେଦନ ||
ଏମନ୍ତ ଚିନ୍ତି ବେଗ ହୋଇ | ଲେଉଟି ପ୍ରାସ୍ତେ ପଡ଼ି ଶୋଇ ||
ଉଠି ବହନ ଚାଲିଗଲେ | ଦେଉଳେ କବାଟ କିଳିଲେ ||
ବେଢ଼ା ନିଶୋଧ କରିଲେ | ସେବକେ ଯେ ଯାହାର ଗଲେ ||
ସେ ମହାପାତ୍ର ଗଲେ ଘରେ | ଅତ୍ୟନ୍ତ ସନ୍ତାପ ମନରେ ||
ଗରଳ ଆଣି ରଖାଇଲେ | ଭୁଞ୍ଜିବ ରଜନୀ ପାଇଲେ ||
ଯଦି ଶ୍ରୀହରି କୃପା କରୁ | କରିବେ ବୋଲି ମନେ ଅଛୁ ||
ତେଣୁ ଶୋଇଲ ଉପବାସ | ଚିତ୍ତ ବୁଡ଼ାଇ ପ୍ରଭୁ ପାଶ ||
ଦେନି ନୟନୁ ଅଶ୍ରୁଧାର | ଗଳି ପଡ଼ଇ ବସୁନ୍ଧର ||
ଏମନ୍ତେ ନିଦ୍ରାରେ ମୋହିତ | ତାହା ଜାଣିଲେ ଜଗନ୍ନାଥ ||
ସେବକ ମନ ପ୍ରଭୁ ଜାଣି | ବିଜୟ କଲେ ଚକ୍ରପାଣି ||
ଭିକାରି ମହାପାତ୍ର ଘରେ | ଉଭତ ଶୟନ ସ୍ଥାନରେ ||
ଉଭା ହୋଇଣ ଶଙ୍ଖଗ୍ରାହୀ | ସ୍ୱପନେ ଆଜ୍ଞା ତାଙ୍କୁ ଦେଇ ||
ବୋଇଲେ ଶୁଣରେ ଭକତ | ତୁ କିମ୍ପା ଚିନ୍ତାକରୁ ଚିତ୍ତ ||
ମୋ ପଦ ପ୍ରଭୁ ସେବାକର | ଆନ ଗ୍ରାରକୁ କିମ୍ପା ଡ଼ର ||
ମୁଁ ଥିଲେ ମନାତନେ କସି | କି କରିପାରେ ରଜା ଆସି ||
କୋଟିଏ ନୃପତି ଅଇଲେ | କି କରିପାରେ ତୋତେ ଭଲେ ||
ଆବର କହୁଅଛୁ ତୋତେ | ତୁ ଡ଼ରୁ ଯନ୍ତିର ନିମନ୍ତେ ||
ମୁଁ ତ ତେମନ୍ତ ଲଣ୍ଡା ନୋହେ | ତୋ ମନେ କିମ୍ପା ଲୁଭୟେ ||
କେଶ କି ନାହିଁ ମୋର ମାଥେ | ଢଣଇ ନାହିଁ କନା ତୋତେ ||
ଏବେ ନ ଡର ମନେ କିଛି | ନିଶ୍ଚେ ମୋ ମୁଣ୍ଡେ କେଶ ଅଛି ||
କାଲି ତୁ ପ୍ରତ୍ୟକ୍ଷ ଦେଖିବୁ | ରଜାକୁ ଦେଖାଇଣ ଦେବୁ ||
ରାତ୍ର ଥାଉ ମୋ ପାଶେ ଆସ | କହି ଚଳିଲେ ପୀତବାସ ||

ବିଚିତ୍ର ସୁବର୍ଣ୍ଣ ପଲଙ୍କେ । କମଳା ଦେବୀଙ୍କର ଅଙ୍କେ ॥
ଏଣେ ଯେ ବିପ୍ର ନିଦ୍ରା ତେଜି । ଉଠିଲା ପ୍ରଭୁ ନାମ ଭଜି ॥
ଦେଖିଲା ପାଶେ କେହି ନାହିଁ । ଜାଣିଲା ନିଜେ ଭକ୍ତଗ୍ରାହୀ ॥
କରୁଣା କରିଗଲେ ମୋତେ । ଏହା ମୁଁ ଜାଣିବି କେମନ୍ତେ ॥
ଏମନ୍ତ ବୋଲି ବେଗ କରି । ସ୍ନାନାଦି କର୍ମମାନ ସାରି ॥
ରାଜ ଦ୍ୱାରରେ ଥାଇ ଗଲେ । ଦେଉଳେ ପ୍ରବେଶ ହୋଇଲେ ॥
କବାଟମାନଙ୍କୁ ଫିଟାଇ । ସେ ବେଗେ ପଶିଲେ ଧସାଇ ॥
ଜାଳି ଅନେକ ଦୀପମାଳୀ । ପ୍ରଭୁ ଶ୍ରୀମୁଖରେ ଯାଇଁମିଳି ॥
ଓଳକ୍ଷ ମହାପାତ୍ର ଯାଇ । ଉଠିଲେ ସିଂହାସନ ଠାଇଁ ॥
ମନରେ ଭୟଅଛି ଭଲେ । ପ୍ରଭୁ ଶ୍ରୀମୁଖକୁ ଚାହିଁଦେଲେ ॥
ଦେଖିଲେ ମସ୍ତକରେ କେଶ । ଦିଶଇ ଭ୍ରମର ସଦୃଶ ॥
ନାନା କୁସୁମରେ ସୁବେଶ । ପଡ଼ି ଅଛଇ ପୃଷ୍ଠଦେଶ ॥
ଜଟା ପଡ଼ିଛି କଟିଭାଗେ । ସେ ରତ୍ନ ସିଂହାସନେ ଲାଗେ ॥
ଦେଖିଣ ଏମନ୍ତ ଚରିତ୍ର । ଅତି ଆନନ୍ଦ ମହାପାତ୍ର ॥
ଅଶେଷ ଭରସା ପାଇଲେ । ପ୍ରଭୁଙ୍କ ସେବାରେ ରହିଲେ ॥
ଏଣିକଉତ୍ତାରୁ ଶୁଣ ମନ । ସେ ମହାପ୍ରତାପୀ ରାଜନ ॥
ସେ କଥା ଅଛି ମନେଧରି । ବେଗେ ଅଇଲେ ବଳେକରି ॥
ଦେଉଳେ ପ୍ରବେଶ ହୋଇଲେ । ପ୍ରଭୁଙ୍କୁ ଦରଶନ କଲେ ॥
ବିପ୍ରଙ୍କୁ ବୋଇଲେ ନରେଶ । ଦେଖାଅ ପ୍ରଭୁମୁଣ୍ଡେ କେଶ ॥
ତା ଶୁଣି ବୋଲେ ବିପ୍ରବର । ହେ ରାଜା ମୋତେ କି ପଚାର ॥
ମୁଁ କିସ ଦେଖାଇବି ସ୍ୱୟେ । ଦେଖ ହେ ଆପଣା ଇଛାଏ ॥
ଶୁଣି ନୃପତି ଚଳିଗଲେ । ପ୍ରଭୁ ପଛକୁ ଚାହିଁ ଦେଲେ ॥
ଦେଖିଲେ ପ୍ରଭୁ ମସ୍ତକର । ସୁନ୍ଦର ଦିଶେ କେଶଭାର ॥
ଅତ୍ୟନ୍ତ କଳା ଅତି ଲମ୍ବ । ଜୁଡ଼ା ଯେ ପଡ଼ିଛି ନିତମ୍ବ ॥
ତା ଦେଖି ବୋଲେ ଦଣ୍ଡଧାରୀ । ସ୍ୱରୂପ କଚ ନଷ୍ଟେ କରି ॥
ଜଉ ମହଣ ବଳବଳ । କାହୁଁ ଖଞ୍ଜିଲ ଏତେ ବାଳ ॥

ଏ କଥା ବଡ଼ଇ ଅଚର | ଶୁଣି ବୋଇଲେ ମହାପାତ୍ର ||
ହେ ରାଜା ଅପ୍ରତେ ହୋଇଲେ | ଆପଣେ ବୁଝି କଲା ଭଲେ ||
ତାହା ଶୁଣିଣ ନରନାଥ | ବଢ଼ାଇ ଦେଲେ ନିଜ ହସ୍ତ ||
ପ୍ରଭୁ ମସ୍ତକେ କେଶଧରି | ଝିଙ୍କିଣ ନେଲେ ଗୋଟାକ୍ଷର ||
ତକ୍ଷଣେ ରୁଧିର ବାହାର | ହୋଇଲା ପ୍ରଭୁ ମସ୍ତକର ||
ତାହା ଦେଖିଣ ନୃପମଣି | ଢଳିଣ ପଡ଼ିଲା ଧରଣୀ ||
ଉଠି ବ୍ରାହ୍ମଣ ପାଦେ ପଡ଼ି | କହଇ ଶିରେ କର ଯୋଡ଼ି ||
ହେ ଦ୍ୱିଜବର ମୋତେ ରଖ | ମୁଁ ମୂଢ଼ ବଡ଼ଇ ମୂରୁଖ ||
ପ୍ରଭୁରେ ଅପରାଧି ହେଲି | ଏବେ ସାକ୍ଷାତେ ନାଶ ଗଲି ||
ପ୍ରଭୁଙ୍କୁ ବସ୍ୱା ଏତେ ତୋତେ | ବୋଲି ମୁଁ ଜାଣିବି କେମନ୍ତେ ||
ଏବେ ଜାଣିଲି ଭଗବାନ | ଭକତ ନୋହେ ଭିନ୍ନାଭିନ୍ନ ||
ଭକତ ଅଭିମାନ ଯେତେ | ପ୍ରଭୁଙ୍କୁ ଲାଗଇ ସାକ୍ଷାତେ ||
ମୁଁ ମୂଢ଼ ମନ୍ଦକୃତ୍ୟ କଲି | ଭକତେ ଅପରାଧି ହେଲି ||
ଡେଇଁଲି ଜଳନ୍ତା ହୁତାଶ | ଖାଇଲି କାଳକୂଟ ବିଷ ||
କେମନ୍ତେ ହେବି ଏଥୁ ପାର | ହେ ବିପ୍ରବର ରକ୍ଷାକର ||
ଏମନ୍ତ ବୋଲି ବିପ୍ରପାଦେ | ରାଜା ପଡ଼ିଲେ ଅପ୍ରମାଦେ ||
ତୋଳି ଧଇଲେ ବିପ୍ରବର | କଲ୍ୟାଣ ହେଉ ଦଣ୍ଡଧର ||
ତୁମ୍ଭର ନାହିଁ କିଛି ଦୋଷ | ସେ ହରି ମହିମା ବିଶେଷ ||
ମୋ ଅପରାଧ କ୍ଷମା କର | ବସ୍ୱା ଯେ କଲେ ବାରୁହର ||
ଏମନ୍ତ ବୋଲି ଦୁହେଁ ଗଲେ | ପ୍ରଭୁଙ୍କ ପଛକୁ ବୁହିଁରେ ||
ଦେଖିଲେ ମୁଣ୍ଡେ କେଶ ନାହିଁ | ନୃପତି ବୋଇଲେ ଗୋସାଇଁ ||
କୁହ ସେ ସବୁ କରିପାରୁ | ଏଣୁ ବୋଲାଉ ମହାମେରୁ ||
ମହିମା ଦେବଙ୍କ ଦୁର୍ଲ୍ଲଭ | ମୁଁ କି ଜାଣିବି ତୁମ୍ଭ ଭାବ ||
ଏବେ ଅପ୍ରାଧ ମୋର ଯେତେ | ପ୍ରଭୁ ନ ଧର କଦାଚିତେ ||
ପର ଅପର ତୋର ନାହିଁ | ସକଳ ଜୀବର ଗୋସାଇଁ ||
ଏମନ୍ତ ବୋଲି ରାଜା ଧନ | ଅନେକ କଲା ଦାନ ପୁଣ୍ୟ ||

ବିପ୍ରକୁ କୋଟି ଧନ ଦେଇ । ପ୍ରଭୁଙ୍କୁ ମଣୋହି କରାଇ ॥
ଆନନ୍ଦେ ଗଲେ ନୃପବର । ଶୁଣ ସୁମନ କଥା ସାର ॥
ଦେଖି ଏମନ୍ତ ଆଚମ୍ବିତ । ଲୋକେ ହୋଇଲେ ଆଲୋକିତ ॥
ତଳଛ ମହାପାତ୍ର ଭଲେ । ପ୍ରଭୁଙ୍କ ସେବାରେ ଲାଗିଲେ ॥
ସେ ହରି ମହିମା ଏସନ । ଭକତଜନଙ୍କ ଜୀବନ ॥
ଭକତଅଧୀନ ଆଦ୍ୟମୂଳ । ଭକତସବେ ହେଲେ ଭୋଳ ॥
ଅଶେଷ ପ୍ରାଣୀଙ୍କର ହିତେ । କହଇ ରାମ ଦାସ ଗୀତେ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେ ଅବା ଶ୍ରଦ୍ଧା ମନେଶୁଣେ । କି ଅବା ବଦନରେ ଗୁଣେ ॥
କାଟିଣ ଭବବନ୍ଧ ପାଶ । କାଳେ ଲଭିବ ସ୍ୱର୍ଗବାସ ॥
କହଇ ଲଛମନ ସୁତ । ମୋ ପ୍ରଭୁ ନୀଳଗିରିନାଥ ॥
ସେ ଦାରୁବ୍ରହ୍ମଙ୍କ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ସୁଜନେ ଏହି ପିବେ ରସ । ମୁଁ ତୁମ୍ଭ ଚରଣର ଦାସ ॥

ଇତି ଶ୍ରୀ ବାର୍ଦ୍ଧ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ତଳଛ ମହାପାତ୍ର ବାର୍ଦ୍ଧ୍ୟଭାବ ବର୍ଣ୍ଣନେ
ନାମ ବିଂଶୋଽଧ୍ୟାୟଃ ।



## ଏକବିଂଶ ଅଧ୍ୟାୟ

### ଅଙ୍କନା ଓ ମାଧନା ସମ୍ବାଦ

ଚୈତନ ଉବାଚ

କହେ ଚୈତନ୍ୟ ମହାଜ୍ଞାତା । ବାର୍ଦ୍ଧ୍ୟତାଭକ୍ତି ରସ କଥା ॥
ଶୁଣ ସୁମନ ହେତୁ ଦେଇ । ମୁଁ ଯାହା କହୁଛି ବୁଝାଇ ॥
ଏ ବଡ଼ ଦୁର୍ଲ୍ଲଭ ଚରିତ । ଶୁଣିଲେ ହୋଇବ ପବିତ୍ର ॥
କଳିଙ୍ଗ ବୋଲି ଏକ ଦେଶ । ସକଳ ଦେଶର ନରେଶ ॥
ନଦୀର ନାମ ଗୋଦାବରୀ । ସ୍ନାନମାତ୍ରକେ ପାପହରି ॥
ସେ ମହା ପୁଣ୍ୟ ନଦୀକୂଳ । ଯୋଗେଅଯୋଗେ ଏକାବେଳେ ॥

ସ୍ନାନ କରନ୍ତି ଯେଉଁ ନର । ବସନ୍ତି ଯାଇ ସ୍ୱର୍ଗପୁର ॥
ସେ ମହା ପୁଣ୍ୟ ନଦୀତୀର । ସେ ରାଜମନ୍ଦର ସହର ॥
ସେହି ନଗରେ ତାର ଘର । ଜାତିରେ ଅଟେ ଦ୍ୱିଜବର ॥
ଯୋଗେ ସେ କର୍ମଚନ୍ଦ୍ର ସିନା । ନାମ ଯେ ଅଞ୍ଜନା ସାଧନା ॥
ସେ ବେନି ଭାଇ କଥା ଯେତେ । କହିବା ଶୁଣ ଏକଚିତ୍ତେ ॥
ସୁନ୍ଦରପଣେ ଜବା ସାର । ଲକତ ବସ୍ତ୍ରାଦ୍ୟ ତାର ॥
ସହିଷ୍ଣୁ ପଣେ ବସୁମତୀ । ପଣ୍ଡିତପଣେ ବୃହସ୍ପତି ॥
ଧୀରପଣରେ ମେରୁ ସମ । ବୀରପଣରେ ଦ୍ୱିତୀଯମ ॥
ବୁଦ୍ଧିରେ କବା ଗଣେଶ୍ୱର । ବାଞ୍ଛପଣେ ଶିବ ଶଂକର ॥
କୁବେର ସମ ଧନବନ୍ତ । ସକଳ ଜୀବେ ଦୟାଚିତ୍ତ ॥
ନ ଜାଣେ ପର ନାଶ କଥା । ନିତ୍ୟେ ଶୁଣଇ ବିଷ୍ଣୁଗାଥା ॥
ଧନ ସଞ୍ଚୟେ ନାହିଁ ମନ । ନିରନ୍ତେ କରେ ଦାନ ପୁଣ୍ୟ ॥
କ୍ଷୀପୁର କାଞ୍ଚି କାଶୀ ତିନ । ଅଯୋଧ୍ୟା ମଥୁରା ଏ ବେନି ॥
ବଦ୍ରି ଦ୍ୱାରକା ରାମେଶ୍ୱର । ଯେ ଜଦ୍ରନାଥ ପୁଣ୍ୟପୁର ॥
ଏ ଆଦି ପୁଣ୍ୟ ପୁର ଯେତେ । ଅଛି ସଂସାର ମଧ୍ୟଗତେ ॥
ବସାଇ ସଦା ବର୍ତ୍ତମାନ । ଦେଉଥାଇ ଯେ ଅନ୍ନଦାନ ॥
ଯେତେ ସେ ଧନ ତର୍ଚ୍ଚି ସାର । ସେ ପୁରୁଥାଇ ନିରନ୍ତର ॥
ନିଜ ଦ୍ୱାରରେ ଦୁଃଖିଜନ । କି ଅବା ଭିକ୍ଷୁକ ଦେଖିଣ ॥
ମନ ସନ୍ତୋଷେ ଧନ ଦେଇ । ବାକ୍ୟ କହଇ ସ୍ତୁତି ଥାଇ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ସାଧୁ ବୈଷ୍ଣବ ଆଦି କରି ॥
ପ୍ରବେଶ ହେଲେ ତା ଭୁବନେ । ତାହାଙ୍କୁ ତୋଷେ ଅନ୍ନଦାନେ ॥
ବନ୍ଧୁ ସୋଦର ମିତ୍ରଜନ । ନିତ୍ୟ ସେ କରଏ ଭୋଜନ ॥
ଏଥିଉତ୍ତାରୁ ବେନି ଭ୍ରାତ । କରି ଅଛନ୍ତି ସତ୍ୟବ୍ରତ ॥
ବ୍ରାହ୍ମଣେ ନିତେ ଅଷ୍ଟଜଣ । କରିଣ ଥାଆନ୍ତି ବରଣ ॥
ନିତ୍ୟେ ଏ ଭୋଜନରବେଳେ । ବସନ୍ତି ଯାଇ ଏକମେଳେ ॥
ପଙ୍ଗତ ହୋଇଣ ବସନ୍ତି । ଯେବେ ସେ ଭୋଜନ କରନ୍ତି ॥

ତିନଶ ଷାଠିଏ ଦିନରେ । ଭୁଞ୍ଜନ୍ତି ଏହି ପରକାରେ ॥
ଗୋଟିଏ ଦିନ ଊଣାହେଲେ । ତାହା ଯେ ପୂରଣ ହୋନ୍ତିଲେ ॥
ଭୁଞ୍ଜନ୍ତି ନାହିଁ କେନ ଘାଇ । ରହନ୍ତି ଉପବାସ ହୋଇ ॥
ଏଥିଉତ୍ତାରୁ ଚତୁର୍ଦ୍ଦଶୀ । କିବା ସଂକ୍ରାନ୍ତି ପୂର୍ଣ୍ଣମାସୀ ॥
ଶୁକ୍ଳପକ୍ଷର ଆଦି ଯେତେ । ବୈଷ୍ଣବ ଲୋକ ଅନୁମିତେ ॥
ଦିଅନ୍ତି ଅନ୍ନ ବସ୍ତ୍ରମାନ । ସନ୍ତୋଷ କରାଇ ଭୋଜନ ॥
ଅନେକ ବନସ୍ତ୍ରୀ ଲଭନ୍ତି । କଷଣ ଦସ୍ତପାଙ୍କେ ଭକ୍ତି ॥
ତାହା ଦେଖିଣ ଦ୍ୱିଜ ଯେତେ । ବୈଷ୍ଣବ ଆଦି ଅନୁମିତେ ॥
ଅନେକ ପ୍ରଶଂସା କରନ୍ତି । ଯେ ଯାହା ପୁରେ ଚଳଯାନ୍ତି ॥
ଏହିପ୍ରକାରେ ବଞ୍ଚେ ଦିନ । ନ ଜାଣେ ଅନ୍ୟ କଥାମାନ ॥
ଏମନ୍ତେ କେତେଦିନ ଅନ୍ତେ । ତା କୀର୍ତ୍ତି ପୂରିଲା ଜଗତେ ॥
ସ୍ୱର୍ଗନଗରେ ତାର ଯଶ । ଏମନ୍ତ ହୋଇଲା ପ୍ରକାଶ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଅଜ୍ଞନା ମାଧନା ଜୀବନ ॥
ତାଙ୍କ ସମାନ ଦାମାପଣେ । କେହି ନ ଥିବ ଏ ଭୁବନେ ॥
ଏମନ୍ତ ବୋଲିଣ ସମସ୍ତେ । ପ୍ରଶଂସା କରନ୍ତି ଜଗତେ ॥
ତାହା ଜାଣିଲେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ଛଡ଼ିବା ପାଇଁ ତାର ମନ । ବିଜୟ କଲେ ସେହି ସ୍ଥାନ ॥
ଛଦ୍ମ ଛଯ କଲେ ନରହରି । ବୃଦ୍ଧବ୍ରାହ୍ମଣର ରୂପ ଧରି ॥
ବୃଦ୍ଧବିପ୍ରର ରୂପ ବହି । ଚାଲନ୍ତି ଧୀର ଧୀର ହୋଇ ॥
ଶିରେ ଶୋଭିତ ପକ୍ୱକେଶ । ଶୁଭ୍ର ଚାମର ପ୍ରାୟ ଦୃଶ୍ୟ ॥
ଅତ ପାଚିଲା ଓଷ୍ଠ ଦାଢ଼ୀ । ଧବ ପଙ୍କ୍ତିରେ ଅଛି ପଡ଼ି ॥
ଭାଲେ ତିଳକଶୋଭା ଦିଶି । ଈଷତ ମନ୍ଦେ ମନ୍ଦେ ହସି ॥
କର୍ଣ୍ଣେ କୁଣ୍ଡଳ ବିରାଜଇ । ତେଜେ ମାରତଣ୍ଡ ଗଞ୍ଜଇ ॥
ଯଜ୍ଞୋପବୀତ କନ୍ଧେ ଶୋହେ । ସ୍ୱରୂପେ ଜଗଜ୍ଜନ ମୋହେ ॥
ଡୋର କୌପୀନ କଟିମାଝେ । ପୃଷ୍ଠରେ ବ୍ୟାଘ୍ରଚର୍ମ ସାଜେ ॥
ତ୍ରିଦଣ୍ଡ କମଣ୍ଡଳ ପାଣି । ଏମନ୍ତ ବେଶେ ଚକ୍ରପାଣି ॥

ଅଙ୍କନା ମାଧନା ସକଳେ । ପ୍ରବେଶ ହେଲେ ଶ୍ରଦ୍ଧାମନେ ॥
ବଇଦ ଯୋଗେ ସେ ଧନର । ଉତ୍ସବ ହୋଇଛି ତା ପୁର ॥
ବନ୍ଧୁ ସୋଦର ମିତ୍ରଜନେ । ଯେ ପରିସ୍ଥର ଲୋକମାନେ ॥
ଆସି ଆଛନ୍ତି ଅପ୍ରମିତେ । ଗଣନା ନୁହନ୍ତି ତା କେତେ ॥
ସକଳ ଜନମାନେ ଆସି । ଧର୍ମଶାଳାରେ ଛନ୍ତି ବସି ॥
ତହିଁ ମଧ୍ୟରେ ବେନ ଭ୍ରାତ । ଧରିଣ ଜଳପାତ୍ର ହସ୍ତ ॥
ଯେତେକ ବିପ୍ର ଆସୁଛନ୍ତି । ସବୁର ପାଦ ଧୋଇଦ୍ୟନ୍ତି ॥
ପାଣିରେ ପାଣି ଅବଶଣତ । ଧରି କରନ୍ତି କଣ୍ଠ ଗ୍ରାସ ॥
ବିପ୍ରେ ଆସନ ଦେଇ ପୁଣି । କହନ୍ତି ସୁମଧୁର ବାଣୀ ॥
ଏମନ୍ତବେଳେ ଭାବଗ୍ରାହୀ । ମିଳିଲେ ସେହି ସ୍ଥାନେ ଯାଇ ॥
ସର୍ବଜନଙ୍କୁ ଚାହିଁ ହରି । ଧୀରେ ପୁଚ୍ଛନ୍ତି ବ୍ରହ୍ମବଷ ॥
ଅଙ୍କନା ମାଧନା ଏ ଦୁଇ । ଭାଇ ଅଛନ୍ତି କେଉଁଠାଇ ॥
ଶୁଣି ସମସ୍ତେ ଲୋକେ ଭଲେ । ତାହାଙ୍କୁ ଦେଖାଇଣ ଦେଲେ ॥
ଦେଖି ଦୁହିଁଙ୍କୁ ବ୍ରହ୍ମବଷ । ଅନେକ ଆଶୀର୍ବାଦ କରି ॥
ବୋଲନ୍ତି ଧନ୍ୟରେ ତୋହର । ଅଟନ୍ତି ଜନନୀ ପିଅର ॥
ଧନ୍ୟ ହୋ ତୁମ୍ଭେ ବେନି ଭାଇ । ସଂସାରେ ଅଛ ଖ୍ୟାତ ହୋଇ ॥
ହୋଇଲ ଅପାରୁ ଅପାର । ଜଗତେ ଖ୍ୟାତି ତୁମ୍ଭର ॥
ଏମନ୍ତ ବୋଲିଣ ପ୍ରଶଂସି । ଶୁଣିଣ ବେନଭାଇ ହସି ॥
ସେ ବ୍ରହ୍ମବଷ ପାଦ ଧୋଇ । ଉଦକ ପାଇ ବେନଭାଇ ॥
ଉଚିତେ ବସାଇ ଆସନେ । ପୁଚ୍ଛନ୍ତି କୋମଳ ବଚନେ ॥
ହେ ବ୍ରହ୍ମବଷ କହ ସତ । କର୍ମା ମୋ ପୁରେ ଉପଗତ ॥
କହ ହେ ସ୍ୱରୂପ ବଚନ । ଶୁଣି ସନ୍ତୋଷ ହେଉ ମନ ॥
ତା ଶୁଣି ପ୍ରଭୁ ବ୍ରହ୍ମବଷି । ତାଙ୍କ ମୁଖକୁ ଚାହିଁ ହସି ॥
ଆମ୍ଭେତ ଆଜନ୍ମ ସନ୍ନ୍ୟାସୀ । ନଚେହେ ଅଟୁ ଘରବାସୀ ॥
ନିଶ୍ଚଳ ନୋହୁ କେଉଁଠାରେ । ଭରତେ ଭ୍ରମୁଁ ଏ ସଂସାରେ ॥
ଯେ ଗତାଗତ ପଥ ମୋର । ମୋତେ ତ ନ ହୋଇ ଗୋଚର ॥

କେବଳ ଅନ୍ତର କଥାଏ । ଭକତ ଦେଖ ଯେଉଁଠାଏ ॥
ନିର୍ଦ୍ଦୋଷ ସତ୍ୟବାଦୀଜନ । ଅକ୍ରୋଧୀ ମଧୁର ବଚନ ॥
ନିର୍ଭୟ ଶୋକ ମୋହ ନାହିଁ । ବସ୍ତୁ ଭକତ ଦେଖ ଯହିଁ ॥
ବସ୍ତାକୁ ପରଲୋକ ପ୍ରିୟ । ସତ୍ୟ ଧାର୍ମିକ ସଦ୍‌ସଙ୍ଗ ॥
ନାମ ଭଜନ ଯେତ୍ନକରେ । ସେବଇ ଗୁରୁ ବିପ୍ରଠାରେ ॥
ସକଳ ମିଥ୍ୟା ବୋଲି ଜାଣେ । ସେବଇ ସାଧୁଙ୍କ ଚରଣେ ॥
ପର ଆପଣା ଏକ ମଣି । ସଂସାର ବସ୍ତୁ ମାୟାଜାଣି ॥
ଏମନ୍ତ ଲୋକ ଦେଖ ଯହିଁ । ଭୋଜନ କରୁ ଆମ୍ଭେ ତହିଁ ॥
ନ ପୁଚ୍ଛୁଜାତି ଗୋତ୍ର ତାର । ହେଉ ଅକୁଳ ଅବେଭାର ॥
ତା ହାତେ ଭୁଞ୍ଜିବା ପ୍ରମାଣ । ସେ ମୋର ବନ୍ଧୁ ବୋଲି ଜାଣ ॥
ନ ଦେଲେ ମାଗିଣ ଭୁଞ୍ଜଇ । ତହିଁ ମୋ ଅଭାବ ନ ଥାଇ ॥
ଏହା ନ ଦେଖ ଯାହାଘରେ । ସେ ଯେତେଦ୍ରବ୍ୟ ଦେଲେମୋରେ ॥
ତହିଁ ନ କରେ ମୁଁ ଭୋଜନ । ସେ ମୋତେ କୋଟିଏ ଯୋଜନ ॥
ଏବେ ହୋ କହୁଅଛୁ ତୋତେ । ତୁ ଏବେ ଶୁଣ ଶୁଦ୍ଧଚିତ୍ତେ ॥
ଆମ୍ଭେ ଯେ ଅଟୁ ବ୍ରହ୍ମଋଷି । ତୋହର ଅଟୁ ଉପବାସୀ ॥
ଅଇଲୁ ତୋହର ନିକଟେ । ତୋର ମହିମା ପୂର୍ଣ୍ଣ ଘଟେ ॥
ଏଥକୁ ଅଇଲୁ ଯେ ଥରେ । ତୁମ୍ଭ ଦୁହିଁଙ୍କୁ ଦେଖିବାରେ ॥
ଏବେ ହୋ ଯାଉଅଛୁ ଆମ୍ଭେ । ଏହି ଭାବରେ ଥାଅ ତୁମ୍ଭେ ॥
ଏମନ୍ତ ବାକ୍ୟ ଦୁହେଁ ଶୁଣି । କପୋଳେ ନବେଶିଲେ ପାଣି ॥
ବୋଇଲେ ଶୁଣ ହୋ ଗୋସାଇଁ । ଆଜକ ମାତ୍ର ଏଥେଁ ରହ ॥
ଆମ୍ଭର ହେଉଛି ଉତ୍ସବ । ଭୋଜନ କରି ତୁମ୍ଭେ ଯିବ ॥
ଏତେ ସୁକୃତ ଅଛି ହୋଇ । ନାନାଦ୍ଧ ସନ୍ନ୍ୟାସୀ ଗୋସାଇଁ ॥
ତା ଶୁଣି ବ୍ରହ୍ମଋଷି କହି । ଶୁଣ ହେ ତୁମ୍ଭେ ଦୁଇଭାଇ ॥
ମୁଁ ଏଥେ ରହିଲେ ଅବଶ୍ୟ । ଦେଇ ନ ପାର ମୋତେ ଗ୍ରାସ ॥
ବଇବେ ଦେବ ଅବା ଯେବେ । ଅନେକ ଲୋକେ ଭୋକେ ଯିବେ ॥
ଶୁଣି ବୋଇଲେ ସଙ୍ଗେ ହେଉ । ଆମ୍ଭେ ପଛକେ ଭୋକେ ଯାଉ ॥

ତୁମ୍ଭେ ଭୋଜନ ବେଗେ କର । ଦେଖିବା ତୁମ୍ଭ ଭୁଞ୍ଜିବାର ॥
ସେ ବେଳ ଭାଇ ନାନାମତେ । ପଡ଼ ସନ୍ନ୍ୟାସୀ ପାବଗତେ ॥
ରଖିଲେ ଅନ୍ତ ବଳକର । ନମନ୍ତ କରି ବ୍ରହ୍ମଗ୍ରସ ॥
ଏଥିଉତ୍ତାରୁ ବେନଭାଇ । ରନ୍ଧନ କରାଇଲେ ଯାଇଁ ॥
ଛିସା ଖେଚଡ଼ି ଶାଳ ଅନ୍ନ । ନାନାଦ ପ୍ରକାରେ ବ୍ୟଞ୍ଜନ ॥
ଅଶେଷ ବର୍ଣ୍ଣେ ପିଠାମାନ । ଘୃତରେ କଲେକ ରନ୍ଧନ ॥
ଦଧି ଯେ ଅନେକ ପ୍ରକାର । ଘୃତ ନବାତ ଦୁଧସର ॥
ପଇଡ଼ ପାଣି ସରପଣା । ସ୍ୱାଦୁରେ ଏକୁଁ ଏକ ଜଣା ॥
ଷଡ଼ରସରେ ଦ୍ରବ୍ୟଯେତେ । ରନ୍ଧନ କଲେ ବଧିମତେ ॥
ଶତକ ଜଣେ ଘନ୍ଦ୍ରଣିଆ । ରନ୍ଧନ କଲେ ଅମଣିଆ ॥
ବେଳ ପ୍ରହରେ ଅଛୁ ହୋଇ । ସମସ୍ତ ନର୍ଣ୍ଣ କରି ଥୋଇ ॥
ଦଶସହସ ମନୁଷ୍ୟଙ୍କୁ । ଭୋଜନ ବାଣ୍ଟିବେ ସବୁଙ୍କୁ ॥
ଏତେ ଯେ ଦ୍ରବ୍ୟ ନିର୍ମାଣ କରି । ଡାକ ଆଣିଲେ ବ୍ରହ୍ମଗ୍ରସ ॥
ଅତ୍ୟନ୍ତ ବସ୍ତ୍ରାଭ ମନ୍ଦର । ଯେସନ ଚନ୍ଦ୍ରଶାଳାପୁର ॥
ତହିଁ ବସାଇ ବ୍ୟାସନେ । କହନ୍ତି ବଚନ ବଚନେ ॥
ଅନେକ ଲୋକେ ଛନ୍ତି ବେଢ଼ି । ସେ ବେଳ ଭାଇ କରଯୋଡ଼ି ॥
ବୋଲନ୍ତି ଶୁଣହେ ଅତିଥ । କର ଭୋଜନ ବଧିମତ ॥
ତୁମ୍ଭ ବଚନ ଯେବେ ଶୁଣି । ତା ପୁଣି ପରହିବୁ ଆଣି ॥
କର ହେ ବିଳମ୍ବ ନ କର । ଶୁଣି ବୋଲନ୍ତି ବ୍ରହ୍ମଗ୍ରସ ॥
ଶୁଣହେ ବାତା ବେଦଭ୍ରାତେ । ସ୍ୱରୂପ କହୁଅଛୁଁ ତୋତେ ॥
ମୋତେ ଯେ ଅନ୍ନ ଇଚ୍ଛାଦଅ । ପଚେ ନସତ ଅବା ମୁହ ॥
ଅତିଥି ବୁଝାଇ ବସାଇ । ଅଧା କରି ଯେ ନ ଉଠଇ ॥
ଏଥକୁ ବର୍ଣ୍ଣଭଣ କହ । ଦେବା ଦୋଇଦେ ଝଣିଦଅ ॥
ନୋହିଲେ ଲେଉଟି ଯାଉଛୁ । ଏଥେ ଶୋଚନା ନାହିଁ କରୁ ॥
ସମସ୍ତ ଲୋକେ ତାହାଶୁଣି । ମନୁଷ୍ୟ ପ୍ରାପ୍ୟେ ତାଙ୍କୁ ମଣି ॥
ବୋଇଲେ ଭୁଞ୍ଜ ହେ ଅତିଥ । କମାଇ ହୋଇବୁ ନସତ ॥

ଯେତେ ପାଇଲେ ବ୍ୟଞ୍ଜନା । ବଳିଲେ ଆମ୍ଭେ ଭୁଞ୍ଜି ସିନା ।
ତା ଶୁଣି ବୋଇଲେ ସନ୍ନ୍ୟାସ । ଯେତେ ରନ୍ଧିଛ ଘେନ ଆସ ।
ଇକ୍ଷଣ ମୋହର ଅଗ୍ରତେ । ପକାଅ ପତ୍ର ଗୋଟି କେତେ ।
ସକଳ ଦ୍ରବ୍ୟ ଭର୍ତ୍ତି କରି । ଗୋପାଳ ମୁଦ୍ରା ବେଗେ କରି ।
ନୃସିଂହ ଦେବ ଚିନ୍ତ ଚିତ୍ତେ । ବଢ଼ାଇ ଦେଉଥାଅ ମୋତେ ।
ଯହୁଁ ଶୁଣିଲେ ଏ ବଚନ । ଆନନ୍ଦ ସମସ୍ତଙ୍କ ମନ ।
ସେ ବେନି ଭ୍ରାତ ଚଳିଗଲେ । ଯେ ବା ରନ୍ଧନ କରିଥିଲେ ।
ତହୁଁ ଅନେକ ଦ୍ରବ୍ୟ ଧରି । ବୁହାଇ ବୋଝ ଭାର କରି ।
ଅଣ୍ଡଥି ସ୍ମୁମୁରେ ଥୋଇଲେ । ଅନେକ ପତ୍ର ପକାଇଲେ ।
ସକଳ ଦ୍ରବ୍ୟ ଭର୍ତ୍ତି କରି । ଅନ୍ନ ବ୍ୟଞ୍ଜନ ଆଦି କରି ।
ନାନାଦି ପିଠାମାନ ଯେତେ । ଯେ ଖିରି ଖେଚଡ଼ ସହିତେ ।
ସକଳ ସାମଗ୍ରୀ ପରଶି । ଅନେକ ଲୋକ ବେଢ଼ି ବସି ।
କୁଣ୍ଡେ ନୃସିଂହ ନାମ ଧରି । ବଳିଲେ ମୁଦା ମୁଦା କରି ।
ତାହା ଦେଖିଣ ସେ ସନ୍ନ୍ୟାସୀ । ସନ୍ତୋଷେ ପୂର୍ଣ୍ଣାସନେ ବସି ।
ନୃସିଂହ ନାମ ଗୋଟି ଧରି । ବସିଲେ ଊର୍ଦ୍ଧ୍ୱ ମୁଖ କରି ।
ଶ୍ରୀ କରେ ମୁଦ୍ରାମାନ ଧରି । ମୁଖ ବିସ୍ତାରି ଦ୍ୟନ୍ତ ହରି ।
ମୁଦ୍ରାକୁ ମୁଦ୍ରା ଧରି କରେ । ଢାଳିଁ ଦିଅନ୍ତ କୁଣ୍ଡରେ ।
ଯେତେକ ସମ୍ପାଦଣ ଥିଲେ । ଦଣ୍ଡକମାନେ ଭୁଞ୍ଜିଦେଲେ ।
ବୋଇଲେ ଆଉ ଘେନଆସ । କ୍ଷଣେହେଁ ନ କର ଅଳସ ।
ଶୁଣି ଅନେକ ଲୋକେ ଯାଇଁ । ଆଣନ୍ତି ଗୋପଘରୁ ବହି ॥
ପତ୍ରରେ ଦିଅନ୍ତି କୁଢ଼ାଇ । ମୁଦା ବଳନ୍ତ ଲୋକେ ଯାଇ ॥
ସେ ମାସ୍ଥାଯନ୍ତ ସବୁ ଧରି । ମୁଖରେ ଦେଉଥାନ୍ତି ଭରି ॥
ଯେସନେ ଗୋବର୍ଦ୍ଧନଗିରି । ପୂଜାରେ ଭୁଞ୍ଜିଲେ ଶ୍ରୀହରି ॥
ଅନଳେ ଘୃତ ଯେବେ ପଶି । ସେ ଯେସନ୍ତେ ହୋଏ ଉସ୍ୱରଣି ॥
ଅଶେଷ ନଦୀଜଳମାନ । ଯେସନ୍ତେ ସାଗର ହୋଏ ଲୀନ ॥
ସେହି ପ୍ରକାରେ ବ୍ରହ୍ମଋଷି । ଦିଅନ୍ତି ବସ୍ତୁ ଉଦରେ ଭରି ॥

ବୋଲନ୍ତି ଯୋଗଆସ୍ତ ଆଜି । କେବା କଥାରେ ହେଲାଜୋତ୍ତୁ ॥
କ୍ଷୁଧାରେ ଜଳୁଛି ଉଦର । ବହୁତ ଲୋକେ ମୁହାକର ॥
ତାହା ଶୁଣିଣ ବେଣ ସ୍ୱାଇ । ଅନେକ ଜଗର ପେଶାଇ ॥
ସ୍ୱନ୍ଧବା ଲୋକେ ସ୍ୱନ୍ଧ ଛନ୍ତି । ବନ୍ଧିବା ଲୋକେ ବନ୍ଧୁଛନ୍ତି ॥
କୁଡ଼ାନ୍ତି ଏକଠାକେ ନେଇ । ସହସ୍ରେ ଲୋକ ବସିଥାଇ ॥
ଦଅନ୍ତି ମୁଖେ ମୁଦାବଳି । ବସି ଭୁଞ୍ଜନ୍ତି ମହାବଳୀ ॥
ଏମନ୍ତ ଦଣ୍ଡଘଣ୍ଟ ଯାଏ । ସବୁ ଭୁଞ୍ଜିଲେ ବେଳସପ୍ତେ ॥
ଯେତେ ପଦାର୍ଥ ଥିଲେ କରି । ସବୁ ଭୁଞ୍ଜିଲେ ବେଗକରି ॥
ଲକ୍ଷ ସହସ୍ର ଲୋକ ଗ୍ରାସ । ସବୁ ସାରିଲେ ସେ ସନ୍ନ୍ୟାସ ।
ବୋଇଲେ ଆଉ ଆଣ କନା । ଆଣ ହୋ ଅଙ୍କନା ମାଧନା ॥
ତାହା ଶୁଣିଣ ବେଣ ସ୍ୱାଇ । ସନ୍ନ୍ୟାସୀ ପାଦତଳେ ଶୋଇ ॥
ବୋଇଲେ ବନ୍ଦେ ମଠ ହେଉ । ରନ୍ଧନ ହେଉଅଛି ଆଉ ॥
ମୋ ଘର କେତେକ ମାତର । ତୁମ୍ଭଙ୍କୁ ଦେବାକୁ ଆହାର ॥
ମଉଗଙ୍କରେ ଦେବ ବୋଲି । ଏବେ ମୁଁ ଅପରାଧ କଲି ॥
ଏଥିର ଦୋଷ କ୍ଷମାକର । ଦଣ୍ଡକେ ବସ ବ୍ରହ୍ମଋଷି ॥
ଆଉ ଯା ହେଉଛନ୍ତି ହରି । ଘୁମ୍ଭରେ ଦେବ ଅଣିକରି ॥
ପୂରୁ ନ ପୂରୁ ତୋ ଉଦର । ମୋର ଅପ୍ରାଧ କ୍ଷମାକର ॥
ଏମନ୍ତ ବାକ୍ୟ ତାର ଶୁଣି । ହସି ବୋଲନ୍ତି ଚକ୍ରପାଣି ॥
ଏବେ ମୁଁ ହୋଇଲି ସନ୍ତୋଷ । ଦଅ ତୁ ବିପ୍ରଜନେ ଗ୍ରାସ ॥
ଏମନ୍ତ ବୋଲି ଉଠିଗଲେ । ସେ ବେଣ ଭ୍ରାତ ଗୋଡ଼ାଇଲେ ॥
ଅନେକ ବିପ୍ର ତାଙ୍କ ପାଖେ । ଗୋଡ଼ାଇ ଅଛନ୍ତି ପ୍ରତ୍ୟକ୍ଷେ ॥
ଅଭୁତେ ଜାହ୍ନୁ ଏ ଅଇଲେ । ଅଗ୍ନି ତ ଅଗୋଚର କଲେ ॥
ଏମନ୍ତ ବୋଲି ଯେତ୍ସାମତେ । ଗୋଡ଼ାଇ ଅଛନ୍ତି ସମସ୍ତେ ॥
ପ୍ରବେଶ ଗୋଦାବରୀ କୂଳେ । ପ୍ରଭୁ ପଶିଲେ ଯାଇଁ ଜଳେ ॥
ଉଚ୍ଛିଷ୍ଟମୁଖ ଜଳେ ଧୋଇ । ଜଳ ପିଇଲେ ମୁଖ ଦେଇ ॥
ଅନେକ ଶୁଖିଗଲା ବାରି । ଦୃଷ୍ଟିଣ ଗଲା ଗୋଦାବରୀ ॥

ତାହା ଦେଖିଣ ବେନ ଭାଇ । ରହିଲେ ସ୍ତମ୍ଭୀଭୂତ ହୋଇ ।
ବଦନୁ ନ ସ୍ଫୁରେ ବଚନ । ଦେଖି ବୋଇଲେ ଭଗବାନ ।
ତୁମ୍ଭେ ଯେ ଯାଅ ବେନଭାଇ । ଅମ୍ଭ ବଚନ ଶିରେ ଦେଇ ।
ଆଜ ଅଳପ ଦିନେ ପୁଣ । ଲଭିବ ପରମ କାରଣ ।
ଏ ପିଣ୍ଡ ଛାଡ଼ି ବେନି ଭାଇ । ବସିବ ସ୍ୱର୍ଗ ଲୋକେ ଯାଇ ।
ଏଥେ ସଂଶୟ ନାହିଁ କିଛି । ଆଜ ମୁଁ ଅନ୍ତର ହେଉଛି ।
ମୂର୍ତ୍ତିଟି ପ୍ରଭୁ ନାରାୟଣ । ଦେଖ ମୋ ଶଙ୍ଖ ଚକ୍ର ଚିହ୍ନ ।
ଏମନ୍ତ ବୋଲି ବ୍ରହ୍ମଶଶି । ଅନ୍ତର ହେଲେ ଜଳେ ପଶି ।
ଶ୍ରୀଭୁଜ ଦୁଇ ତୋଳିଦେଲେ । ସେ ଶଙ୍ଖ ଚକ୍ର ଦେଖାଇଲେ ।
ତାହା ଦେଖିଲେ ବେନି ଭାଇ । ଆନ କାହାକୁ ଦୃଶ୍ୟ ନୋହି ।
ସେ ବେନ ଭାଇଙ୍କର ଭାବ । ଶତେ ଜନମେ କେ ପାଇବ ।
ସଙ୍ଗତେ ଘେନ ବିପ୍ର ଯେତେ । ଲେଉଟିଗଲେ ସେ ସମସ୍ତେ ।
ମଠରେ ହୋଇଲେ ପ୍ରବେଶ । ସବୁଙ୍କୁ ଦେଲେ ଅନ୍ନଗ୍ରାସ ।
ଅନେକ ଧନ ବସ୍ତ୍ର ଦେଲେ । ମେଲାଣି କଲେ ତାଙ୍କୁ ଭଲେ ।
ଆନନ୍ଦେ ଶୁଣ ହେ ସୁମନ । ପ୍ରଭୁଙ୍କ ମହିମା ଏସନ ।
ଏ କଳିଯୁଗେ ଭକ୍ତଙ୍କର । ମହିମା ଅପାରୁ ଅପାର ।
ସାଧୁଜନଙ୍କୁ ଦୃଶ୍ୟହୋଇ । ମୂର୍ଖଜନଙ୍କୁ ପ୍ରତେ ନାହିଁ ।
ଏମନ୍ତ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲଭେ ପ୍ରମାଦ ।
କହଇ ବିପ୍ର ରାମ ଦାସ । ସେ ନାରାୟଣ ପାଦେ ଆଶ ।
ସୁଜନେ ଏହି ରସେ ରସ । ମୋହର ନ ଘେନିବ ଦୋଷ ।

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ-ଚୈତନ୍ୟ ସମ୍ବାଦେ ।
ଅଙ୍କନ ଓ ମାଧବା ଅନ୍ନଦାନ କଥା ବର୍ଣ୍ଣନେ
ନାମ ଏକବିଂଶୋଽଧ୍ୟାୟଃ

—*—

# ଦ୍ୱାବିଂଶ ଅଧ୍ୟାୟ
## କୀର୍ତ୍ତିଚନ୍ଦ୍ର ସମ୍ବାଦ

### ଚୈତନ୍ୟ ଉବାଚ

ଏଥି ଉତ୍ତାରୁ ଶୁଣମନ । କହିବା ଅପୂର୍ବ୍ବ ବିଧାନ ।
ଏ କଳିଯୁଗର ଚରିତ । ଶ୍ରବଣେ ହୋଇବ ମୁକତ ।
ଯେ ଜମ୍ବୁଦ୍ୱୀପ ମହାଦେଶ । ପୁଣ୍ୟ ସଲୀଳା ଗଙ୍ଗାପାଶେ ।
ରାଜ୍ୟ ପଞ୍ଚାଶ ଯୋଜନରେ । ସେ ରାଜ୍ୟ ରାଜପଣ୍ଡଟରେ ।
ନାମ ତାହାର କୀର୍ତ୍ତିଚନ୍ଦ୍ର । ଶ୍ରୀକୃଷ୍ଣେ ଭକତ ନରେନ୍ଦ୍ର ।
ଅତି ନିର୍ମଳ ତାର ମତି । ଅଚଳାଚଳ ତା ସମ୍ପତ୍ତି ।
ପ୍ରଜାଙ୍କୁ କରି ପୁତ୍ର ପ୍ରାୟେ । ସେ ରାଜା ପ୍ରତିପାଳିଥାଏ ।
ତାହାର ଭାର୍ଯ୍ୟା ପ୍ରିୟବତୀ । ଅତି ସୁନ୍ଦରୀ ମହାସତୀ ।
ପଦ୍ମିନୀ ନାମ ତା ବିଦିତ । ସ୍ୱାମୀର ଆଜ୍ଞା ଅଲଙ୍ଘିତ ।
ନିରତେ ପତି ସେବା କରେ । ରାଜାଙ୍କି ଅତି ସ୍ନେହକରେ ।
ଏମନ୍ତ ରାଜାରାଣୀ ଥାନ୍ତି । ଶ୍ରୀକୃଷ୍ଣ ପାଦେ ଦେଇ ମତି ।
ନିରତେ କୃଷ୍ଣ ଚିନ୍ତା ହୃଦେ । ସେବା କରନ୍ତି ଅପ୍ରମାଦେ ।
ଜୀବହତ୍ୟାକୁ ମହାଭୟ । ଦୁଃଖିଜନର ସେ ସହାୟ ।
ନିରତେ ପର ନିନ୍ଦାକଥା । ଖତ ନ ଶୁଣଇ ସର୍ବଥା ।
ରାଜ୍ୟେ ତା କୀର୍ତ୍ତି ଅପାର । ଜଳ ଦେଉଳେ ଯେ ସ୍ଥାବର ।
ପଞ୍ଚକୋଶରେ ସଦାବର୍ତ୍ତ । ରଖାଇ ଅଛି ଅପ୍ରମିତ ।
ରାଜ୍ୟେ ଘୋଷଣା ଦେଇ ତାର । କହୁ ଯେ ଥାଇ ନିରନ୍ତର ।
ଯେବଣ ଗ୍ରାମରେ ଅତିଥି । ଆସି ହୋଇବେ ଉପଗତ ।
ତାହାଙ୍କ ଚରଣ୍ଣ କରିବ । ମନ ସନ୍ତୋଷେ ଅନ୍ନ ଦେବ ।
ଯେତେ ପଦାର୍ଥ ବ୍ୟୟ ହେବ । ଲେଖି ମୋ ଭଣ୍ଡାରରୁ ନେବ ।
ମୋ ରାଜ୍ୟ ଯେଉଁ ଗ୍ରାମଦେଶ । ଅତିଥି ଗଲେ ଉପବାସ ।
ତାଙ୍କ ସକଳ ଧନ ହରି । ରାଜ୍ୟରୁ ଦେବ ଦୂରକରି ।
ଏମନ୍ତ ବୋଲିଣ ଠମକ । ବଜାଉଥାଆନ୍ତି ରାଜ୍ୟସାକ ।

ସେ ରାଜ୍ୟ ପରଜାଙ୍କୁ ରଖି । ଶଞ୍ଚାରୁ ଥାଇ ନୃପସାଇଁ ॥
ସାଧୁମାନଙ୍କୁ ସେବାକରି । ଶ୍ରୀହରି ଭଜି ନିରନ୍ତର ॥
ବହୁ ବୈଷ୍ଣବ କରି ପ୍ରୀତି । ଦୃଢ଼ଭକତି କରି ନିତି ॥
ଏମନ୍ତ ବୋଲଣି ଶଞ୍ଚାରି । ସେ ରାଜା ନଗ୍ରଦଣ୍ଡଧାରୀ ॥
ପୁରି ତା କଣରୁ ପବନ୍ଧ । ସବୁଠି ରାଧାକୃଷ୍ଣ ଛନ୍ଦ ॥
ଯେଉଁଣେ ଗ୍ରହିଁଲେ ସେହିରୂପ । ବର୍ଣ୍ଣନ କରୁଥାଇ ନୃପ ॥
ଦ୍ୱାରେ ତା ଧର୍ମଧ୍ୱଜା ପୋତି । ନେତ ଚମର ବାନ୍ଧିଛନ୍ତି ॥
ଅନେକ ଧର୍ମଶାଳାମାନ । ତୋଳାଇ ଅଛନ୍ତି ରାଜନ ॥
ପାନ୍ଥଶାଳାର ପ୍ରତିଦ୍ୱାରେ । ତୁଳସୀ ଆରୋପଣ କରେ ॥
ଠାବ ଠାବରେ ସଂକୀର୍ତ୍ତନ । କରାଇ ଶ୍ରୀହରି ଭଜନ ॥
ଅନେକ ଶୁଆ ଶାରୀ ବଣି । ପୋଷିଅଛନ୍ତି ଗୃହେ ଆଣି ॥
ତାହାଙ୍କ ମୁଖୁ ନାମ ଶୁଣି । ଅତି ଆନନ୍ଦ ନୃପମଣି ॥
ଅନେକ ଧନ ବସ୍ତ୍ର ରତ୍ନେ । ପ୍ରଜାମାନଙ୍କୁ ଦେଉଥାଏ ॥
ଶ୍ରୀରାଧାକୃଷ୍ଣ ଗୁଣ କୀର୍ତ୍ତି । ସେ ରାଜା ଶୁଣୁଥାଇ ନିତି ॥
ଧର୍ମହିଁ ଅଟେ ମୂଳ ତାର । ସତ୍ୟ ବଚନ ନିରାଧାର ॥
ଗ୍ରାମ ବାହାରେ ଦୂତ ପେଷ । ଅତିଥି ଦରି ଲୋକଆସି ॥
କନ୍ଥା ଭୋଜନ ଦେଉଥାନ୍ତି । ଯେବା ଯନ୍ତିରେ କରେ ମତି ॥
କରନ୍ତି ଦେଖି ନ ସହଇ । ଯେ ଯାହା ମାଗିଲେ ଦିଅଇ ॥
ଏମନ୍ତ କେତେଦିନ ଗଲା । ତା ଯଶ ଜଗତେ ପ୍ରକାଶିଲା ॥
ତାହା ଜାଣିଲେ ଦୟାନିଧି । ପରଖିବାପାଇଁ ରାଜା ବୁଦ୍ଧି ॥
ସେ ଅନ୍ତର୍ଯ୍ୟାମୀ ବ୍ରହ୍ମରାଶି । ସକଳ ଘଟେ ଛନ୍ତି ବସି ॥
ତାହାଙ୍କୁ କସ ଅଗୋଚର । ନାହିଁ ନିକଟେ ତାଙ୍କୁ ଦୂର ॥
ମାୟାରେ ହୋଇଣ ତପସ୍ୱୀ । ମିଳିଲେ ରାଜାପାଖେ ଆସି ॥
ଅଖଣ୍ଡ ନଖ ଦାଢ଼ୀ କେଶ । କି ବ୍ରହ୍ମ ତେଜ ସତୁଷ ॥
ତୁଳସୀ ମାଳ ଶୋଭେ ଗଳେ । କର୍ଣ୍ଣେ କୁଣ୍ଡଳ ଦେନ ଲୁଲେ ॥
ଜଟା ମୁକୁଟ ମାଳ ଶୋଭା । ଭକ୍ତ ଜନଙ୍କ ମନଲୋଭା ॥

ଡୋର କୌପୀନ କଟିମାଝେ । ସର୍ବାଙ୍ଗେ ବିଭୂତି ବିରାଜେ ॥
ଯଜ୍ଞୋପବୀତ କଣ୍ଠେ ଶୋଭେ । ରୂପେ କି ଜଗଜ୍ଜନ ମୋହେ ॥
ଏମନ୍ତ ବେଶେ ଚକ୍ରପାଣି । ନୃପତି ଆଗେ ଦେବ ଭଣି ॥
କହି ଅନେକ କୃଷ୍ଣ ରସ । ରାଜାର ମନ କଲେ ତୋଷ ॥
ତାହାଙ୍କୁ ଦେଖି ମହାରାଜା । କଲେ ଆନନ୍ଦେ ପାଦପଜା ॥
ବେଗେ ଚରଣ ଦୁଇ ଧୋଇ । ଚରଣାମୃତ ଆପେ ଖାଇ ॥
ଧୀର କହନ୍ତି ଦଣ୍ଡଧର । ଆଜ ପବିତ୍ର ମୋର ପୁର ॥
ତୁମ୍ଭର ପାଦରଜ ପଡ଼ି । ଅଶେଷ ପାପ ଗଲା ଛାଡ଼ି ॥
ହେ ସ୍ୱାମୀ ! କମ୍ପାଇ ଆଗତ । ମିଥ୍ୟା ନ କହ କହ ସତ ॥
ତା ଶୁଣି ପ୍ରଭୁ ଚକ୍ରପାଣି । ବୋଇଲେ ଶୁଣ ନୃପମଣି ॥
ଆମ୍ଭେ ଯେ ଆଜନ୍ମ ସନ୍ନ୍ୟାସୀ । ବନରେ ତପ କରୁଁ ବସି ॥
ବନର ଫଳ ମୂଳ ଖାଇ । ଦିନ ବଞ୍ଚିଲୁ ଦୁଃଖ ସହି ॥
ଯାହା ଚିନ୍ତୁଥିଲୁ ମନେ । ଦୃଷ୍ଟେ ହୋଇଲା ଏତେଦିନେ ॥
ତେଣୁଟି ବନରୁ ବାହାର । ତୋ କୀର୍ତ୍ତି ଶୁଣି ଦଣ୍ଡଧାରୀ ॥
ଯହୁଁ ତୋ କୀରତି ଶୁଣିଲୁଁ । ତେଣୁ ତୋ ପୁରକୁ ଆଇଲୁଁ ॥
କିଛିହିଁ ମାଗିବାର ପାଇଁ । ଦେବୁ କି ନାହିଁ ନୃପସାଇଁ ॥
ତା ଶୁଣି ବୋଲନ୍ତି ରାଜନ । ଯାଇଛା ମାଗ ହେ ବହନ ॥
ଯାହା ମାଗିବ ତାହା ଦେବ । ନ ଦେଲେ ଅପରାଧୀ ହେବ ॥
ଗଜ ତୁରଙ୍ଗ ଭୂମିଦାନ । ଧନ କାଞ୍ଚନ ବସ୍ତ୍ରମାନ ॥
ସ୍ୱରାଜ୍ୟ ପର୍ଯ୍ୟନ୍ତେ ସହିତେ । ମାଗ ହେ ଯାହା ତୁମ୍ଭ ଚିତ୍ତେ ॥
ଶୁଣି ବୋଇଲେ ବ୍ରହ୍ମଋଷି । ଏକାନ୍ତେ ଶୁଣ ଦଣ୍ଡଧାରୀ ॥
ଅନେକ ଦିନ ତପସ୍ୟା । ଥିଲୁ ହେ କାମ ପରିହରି ॥
ଏବେ ସେ କାମଦେବ ମୋତେ । ପୀଡ଼ା ଯେ ଦେଲା ନାନାମତେ ॥
ତାହା ମୁଁ ସହି ନ ପାରିଲି । କରତେ କାମ କଳାକଳି ॥
ତେଣୁ ଆଇଲି ତୋର ପାଶେ । ଦେବଳ ଏହି ପ୍ରୀତିଆଶେ ॥
ଶୁଣିଲି ତୋର ପ୍ରିୟବତୀ । ସ୍ୱାମୀଭକତ ମହାସତୀ ॥

ତାହାକୁ ଆଣି ମୋତେ ଦେବୁ । ଗନ୍ଧବ ସୁଖେ ବଳସିବୁ ॥
ଏତେକ ମାତ୍ର ମୋର ବାଞ୍ଛା । ଦଅ ନଦଅ ତୋର ଇଚ୍ଛା ॥
ଶୁଣି ନୃପତି ଅତି ତୋଷ । ବୋଇଲେ ଏହୁ ସ୍ଥିର କସ ॥
ପ୍ରାଣ ମାଗିଲେ ଦେଇପାରେ । ସଂଶୟ ନାହିଁଟି ଏଥିରେ ॥
ଏମନ୍ତ ବୋଲି ସେ ରାଜନ । ଆଣିଲେ ଉତ୍ତମ ଭୋଜନ ॥
ଭୁଞ୍ଜିଣ ସନ୍ତୋଷ ତପସ୍ୱୀ । ଏମନ୍ତ ସନ୍ଧ ହେଲା ଆସି ॥
ସେ ମହାରାଜା ଚଳିଗଲେ । ପତ୍ନୀର ପାରୁଶେ ମିଳିଲେ ॥
ଅନେକ କହିଲେ ତଥାଇ । ବୋଇଲେ ଶୁଣ ପ୍ରାଣେଶ୍ୱରୀ ॥
ଏକଇ ତପସ୍ୱୀ ଏ ଆସି । ବଚନେ ମନ ମୋର ତୋଷି ॥
ଦଶଇ ବ୍ରହ୍ମତେଜ ପ୍ରାୟେ । ସେ ମୋତେ ମାଗିଲେ କଥାଏ ॥
ତା ଶୁଣି ଦେବା ସତ୍ୟକଲି । ମାଗ ହୋ ବୋଲି ମୁଁ ବୋଇଲି ॥
ସେଯେ ମାଗିଲେ ମୋତେ ଯାହା । ଶୁଣ କହିବି ତୋତେ ତାହା ॥
ତୋହର ସଙ୍ଗେ ପ୍ରୀତିଭାବ । ଆଜକ ସନ୍ନ୍ୟାସୀ କରିବ ॥
ସତ୍ୟ ମୁଁ କରିଛି ଯୁକତେ । ଅବଶ୍ୟ ଦେବ ତାକୁ ତୋତେ ॥
ଏଥକୁ କହ କି ବିଚାରି । ତା ଶୁଣି ବୋଇଲେ ସୁନ୍ଦରୀ ॥
ଯେଉଁ ଦିନରୁ ପିତା ମୋତେ । ସମର୍ପି ଦେଲେ ତୁମ୍ଭ ହସ୍ତେ ॥
ସେ ଦିନୁ ହୋଇଛି ତୁମ୍ଭର । ତୁ ନାଥ ଯାହା ଇଚ୍ଛା କର ॥
ଏଥିକୁ ଯେ ତୋହର ଇଚ୍ଛା । ଏଥିରେ ନାହିଁ ମୋ ଅତ୍ୟଥା ॥
ରାଣୀ ବଚନୁ ଏହା ଶୁଣି । ଅତି ଆନନ୍ଦେ ନୃପମଣି ॥
ବୋଇଲେ ଶୁଣରେ ସୁନ୍ଦରୀ । ମୋ ଠାରୁ ଶତେଗୁଣ କରି ॥
ସେବା କରିବୁ ତପୀ ପାଖେ । କପଟ ନ ରଖି ତୋହ୍ମବେ ॥
ଏମନ୍ତ କହି ସେ ରାଜନ । ସନ୍ନ୍ୟାସୀ ନିକଟେ ଗମନ ॥
ସନ୍ନ୍ୟାସୀ ଯେଉଁଣ ସଙ୍ଗରେ । ପ୍ରବେଶ ହେଲେ ନିଜପୁରେ ॥
ରାଣୀ ସଙ୍ଗତେ କଲେ ଭେଟ । ନିର୍ବନ୍ଧେ କିଳିଲେ କବାଟ ॥
ଅନେକ ଦାସୀ ପରିବାରି । ଯୋଗାଇଦେଲେ ବସ୍ତ୍ରଧାରି ॥
ଅନ୍ତର ହୋଇଣ ରହିଲେ । ତପୀ ରହିଲେ ରାଣୀ ତୁଲେ ॥

ସେ ମହାସଣ୍ଢ ବେଳେ ଉଠି । ସନ୍ନ୍ୟାସୀ ପାଦତଳେ ଲୋଟି ॥
ଉଠିଣ ହୋଇଲେ ବନସ୍ତ୍ରୀ । ଆସନେ ବସାଇଲେ ନେଇ ॥
ହେ ପ୍ରଭୁ ଶରଣ ତୁମ୍ଭର । ପବିତ୍ର ହେଲା ମୋର ପୁର ॥
ଏମନ୍ତ ବୋଲନ୍ତେ ସେ ରାଣୀ । ହରଷ କଲେ ଚକ୍ରପାଣି ॥
ଧନ୍ୟଏ ତୁମ୍ଭଙ୍କର ଭାବ । ସଂସାର ମଧ୍ୟରେ ଦୁର୍ଲ୍ଲଭ ॥
ଯେତେକ ଛନ୍ଦ ମୁହିଁ କଲି । କେବେହେଁ ଯଶ ନ ପାଇଲି ॥
ଏବେ ମୁଁ ଏମନ୍ତ ଜାଣିବ । ଏ ରାଣୀ ଜୀବନ ହରିବ ॥
ତାହା ଜାଣିଲେ ବଣ୍ଡଧାରୀ । ଧର୍ମକୁ ଅବା ନନ୍ଦାକର ॥
କେବଳ କଳା ରଙ୍ଗ ଭାବ । ଏମନ୍ତ ବୋଲି ଯଦୁନାଥ ॥
ରାଣୀଙ୍କ ନଦ୍ରାଗତେ ମୋହ୍ନ । ସକଳ ଅଳଙ୍କାର ନେଇ ॥
ଆଜ୍ଞା ଯେ ଦେଲେ ମହାବାହୁ । ଏ ନାରୀ ପ୍ରାଣ ହାରିଥାଉଁ ॥
ଏମନ୍ତ କୁହାଇ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଏମନ୍ତେ ରଜନୀ ପାହିଲା । ଦେଢ ପ୍ରହରେ ଆସି ହେଲା ॥
ତା ଦେଖି ଦାସୀ ପରିବାରୀ । କେତେଣ ଗଲେ ଅନ୍ତଃପୁରୀ ॥
ଦେଖିଲେ କବାଟ ପିଟିଛୁ । ରାଣୀ ପଲଙ୍କେ ଶୋଇଅଛୁ ॥
ପାରୁତେ ମିଳଲେକ ଯାଇ । ଦେଖିଲେ ପିନ୍ଧେ ପ୍ରାଣ ନାହିଁ ॥
ତପସ୍ୱୀ ଯାଇଛନ୍ତି ଗୁଡ଼ । ତାହା ଦେଖିଣ ଭଡ଼ାପାଡ଼ ॥
କହିଲେ ନ ପଡ଼ିଙ୍କ ଯାଇଁ । ଦେଖିଲେ ପିନ୍ଧେ ପ୍ରାଣ ନାହିଁ ॥
ତପସ୍ୱୀ ରାଣୀଙ୍କି ମାଇଲା । ସକଳ ଅଳଙ୍କାର ନେଲା ॥
କେବଣ ବାଟେ ପଳାଇଲା । ଦେଖ ଯା ପଡ଼ୀ ଚୋର ମଲା ॥
ତାହା ଶୁଣିଣ ନ ଡ଼ପମଣି । ବୋଇଲେ ଶୁଣରେ ତରୁଣୀ ॥
ରାଣୀ ଅପ୍ରାଧ କରି ମଲା । ଜଡ ସନ୍ନ୍ୟାସୀ କେଣେଗଲା ॥
ଏମନ୍ତ ବୋଲି ନରନାଥ । ପେଶାଇ ବ୍ରହ୍ମଦାଟେ ଦୂତ ॥
ବୋଇଲେ ଶୁଭେ ଯୋଗଆସ । ଦେଖିଲେ ସେ ମହାସନ୍ନ୍ୟାସ ॥
ଯେବେ ମୁଁ ଦେଖିବ ନୟନେ । ଭେବେଟି ରହିବ ଜୀବନେ ॥
ନୋହିଲେ ମରିବ ଅବଶ୍ୟ । ଜୀବନେ ନାହିଁ ମୋର ଆଶ ॥

ତା ଶୁଣି ଚଳିଗଲେ ଦୂତେ । ତପୀ ଖୋଜନ୍ତି ଯେଉଁଆଡେ ॥
ସେ ଅନ୍ତର୍ଯାମୀ ଭଗବାନ । ଜାଣିଲେ ନୃପତିର ମନ ॥
ଅଭ୍ରତେ ପଥେଇଛନ୍ତି ବସି । ଦୂତେ ଭେଟିଲେ ତାଙ୍କୁ ଆସି ॥
ଅନେକ ବିନୟି କହିଲେ । ସଙ୍ଗତେ ଘେନି ଚଳିଗଲେ ॥
ରାଜା ଗୁମ୍ଫକୁ ଗଲେ ନେଇ । ଦେଖି ଉଠିଲେ ନୃପସାଇଁ ॥
ସେ ମହାଯତି ପାଦତଳେ । ନୃପତି ପୁଣ ପୁଣ ଲୁଟେ ॥
ଉଠି ଯୋଡ଼ିଲେ ଦେନି ପାଣି । କହିଲ ମଧୁରସେ ବାଣୀ ॥
ହେ ମହାଯୋଗୀ ଯୋଗେଶ୍ୱର । ଅପରାଧ କ୍ଷମ ସ୍ୱାମି ମୋର ॥
ତନ୍ୱିଙ୍କ ଦୁଃଖ ଦେଇନହବେ । ମୋତେତ ନ କହିଲ୍ ପଦେ ॥
ତା ଶୁଣି ବୋଲନ୍ତେ ସନ୍ନ୍ୟାସ । ଶୁଣ ନୃପତି ହୋଇ ତୋଷ ॥
ଏ ଆମ୍ଭ ପୂର୍ବର ସ୍ୱଭାବ । କେ ତାହା ଅନ୍ୟଥା କରିବ ॥
ସେ ଆମ୍ଭ ପାଦେ ସେବାକରେ । ଅତ୍ୟନ୍ତ ହରଷ ମନରେ ॥
ତାହାକୁ ଦେବା ଆମ୍ଭେ ଦୁଃଖ । ସେ ଯେବେ ହୋଇବ ବିମୁଖ ॥
ତାହାକୁ ଛାଡ଼ି ଆମ୍ଭେ ଯାଉ । ଲୋଡ଼ିଲେ ନ ପାଏ ସେ ଆଉ ॥
ଯେ ଦୁଃଖ ସୁଖ ପାଇ ହୁଟିବ । ସେବୁ ଯେ ଥାଇ ଆମ୍ଭପାଦେ ॥
ତାହାକୁ ଛାଡ଼ିଣ ନ ଯାଉ । ସେ କାହିଁ ଯିବ ମୋ ଆଗରୁ ॥
ସେ ମୋତେ ଛାଡ଼ିବ ବୋଇଲେ । ମୁଁ ତାକୁ ନ ଛାଡ଼ଇ ଭଲେ ॥
ସେ ମୋତେ ଛାଡ଼ିଲେ ଅବଶ୍ୟ । ମୁଁ ଯେ ନ ଛାଡ଼େ ତାରପାଶ ॥
ଯେତେବେଳେ ଦୂରେ ଥିଲେ ରହି । ଚିନ୍ତିଲେ ପାଖରେ ମିଳଇ ॥
ସେ ମୋର ଜନ୍ମର ପ୍ରକୃତି । ଯାହା ଲେଖିଛି ପ୍ରଜାପତି ॥
କେ ତାହା କରିବଟି ଆନ । ଏ କଥା ବୁଝ ହେ ରାଜନ ॥
ଏବେ ଅଇଲ ତୋ ଗୁମ୍ଫର । ତୁ ରାଜା ଯାହା କହେ କର ॥
ତାହା ଶୁଣିଣ ମହାରାଜା । ତପୀ ଚରଣେ କଲ ପୂଜା ॥
ସଙ୍ଗତେ ଘେନି ବେଗେ ଚଳି । ତପୀ ପାଖରେ ଯାଇ ମିଳି ॥
କନକଝରି ମାର ଭରି । ବେଗେ ଆଣିଣ ଦଣ୍ଡଧାରୀ ॥
ତପୀର ପାଦପଦ୍ମ ଧୋଇ । ରାଣୀ କବରେ ଦେଲ ନେଇ ॥

ବୋଇଲେ ଶୁଣରେ ସୁବଧୂ । କରୁଣା କଲେ କୃଷ୍ଣପକ୍ଷ ।
ସାଧୁଙ୍କ ପାଦରଜ ଲାଗି । ତୁ ଯେ ହୋଇଲୁ ମୋକ୍ଷଭାଗୀ ।
ଅଶେଷ ଜନ୍ମର କଳୁଷ । ଆଜ ହୋଇଲା ତୋର ନାଶ ।
ସେ ସାଧୁ ପାଦରଜ ବାରି । ପିଇ ମସ୍ତକେ କରୁ ଧରି ।
ଏପରି ଲେଖିଅଛୁ ଧର୍ମ । କେବଳ ଗଙ୍ଗାସ୍ନାନ ସମ ।
ଏ କଥା ସତ୍ୟ ଅଟେ ଯେବେ । ପ୍ରାଣ ତୁ ପାଇ ଉଠ ଏବେ ।
ରାଜା ବଚନରୁ ଏହା ଶୁଣି । ତକ୍ଷଣେ ପ୍ରାଣ ପାଇ ରାଣୀ ।
ନନ୍ଦୁ ଉଠିଲା ପ୍ରାପ୍ତ ହୋଇ । ବସିଲା ରାଜା ମୁଖ ଚାହିଁ ।
ତାହା ଦେଖିଣ ସେ ରାଜନ । ଅନେକ ଆଣି ଦେଲା ଧନ ।
ଛପି ଚରଣ ତଳେ ଥୋଇ । ବୋଇଲେ ନିଅ ହେ ଗୋସାଇଁ ।
ସେ ଅଳଙ୍କାର ଗ୍ରାର କେତେ । କେତେ ଧନକୁ ଦେବ ମୋତେ ।
ଏ ସବୁ ଧନ ଘେନଯାଅ । ମୋଠାରେ ଦୟା କରିଥାଅ ।
ଶୁଣି ବୋଇଲେ ଭଗବାନ । ଧନ୍ୟ ହୋ ରାଜା ତୋ ଜୀବନ ।
ଧନ୍ୟ ଅଟଇ ତୋର ରାଣୀ । ସ୍ତ୍ରୀ ଙ୍କ ମଧ୍ୟେ ତାକୁ ଗଣି ।
ସଂସାରେ ଯାହା କଲୁ ଭୁଞ୍ଜ । ଆନ କେ କରି ନ ପାରଇ ।
ଏତେ କଲ୍ୟାଣ ହୋଇଥାଉ । ସକଳ କର୍ମେ ଯଶ ହେଉ ।
ଜୀଅନ୍ତେ ସୁଖେ ଧନ ନିଅ । ମଲେ ବୈକୁଣ୍ଠେ ଗତ ପାଅ ।
ଏଥେ ସଂଶୟ କରୁ ନାହିଁ । ଏବେ ହୋ ଯାଉଅଛୁ ମୁହିଁ ।
ଆମ୍ଭେତ କମଳା ବଳାସ । ଦେଖ ଆମ୍ଭର ନଜ ବେଶ ।
ଏମନ୍ତ ବୋଲି ଦେବରାଜ । ଦେଖାଇ ଶଙ୍ଖ ଚକ୍ରଭୁଜ ।
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଗଗନେ ବିଜୁଳି ଯେସନ ।
ସେ ରାଜା ରାଣୀ ତାହା ଦେଖି । ସୁଫଳ କଲେ ଚର୍ମଆଖି ।
ଅନେକ କଲେ ଦାନ ପୁଣ୍ୟ । ଆନନ୍ଦେ ବଞ୍ଚାଇଲେ ଦିନ ।
କାଳେ ବୈକୁଣ୍ଠ ପଥଗତ । ଶୁଣ ହେ ମନ ନ ପ୍ରମାଦ ।
ହରି ଭକତ ଜନଙ୍କର । ମହିମା ଅପାରୁ ଅପାର ।
ଆବର ଶ୍ରୀହରି ମହିମା । ଜାଣି ନ ପାରେ ଦେବବ୍ରହ୍ମା ।

ମୋର ଶକତ ଅବା କେତେ । କହିବ ତୋହର ଅଗ୍ରତେ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ପବିତ୍ର ॥
କହଇ ରାମଦାସ ଗୀତେ । ଅଶେଷ ପ୍ରାଣୀଙ୍କର ହିତେ, ॥
ଶୁଣିଣ କ୍ଷମାକର ଦୋଷ । ମୁଁ କୃଷ୍ଣ ଦାସଙ୍କର ଦାସ ॥
ବୁଡ଼ି ମରୁଛୁ ଭବଜଳେ । ଉଦ୍ଧର ଥିଅ ନେଇ କୂଳେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ହରିଚନ୍ଦ୍ର ରାଜା ରାଣୀ ସନ୍ୟାସୀ ସେବା କଥନେ
ନାମ ଦ୍ୱାବିଂଶୋଽଧ୍ୟାୟଃ

—o—

## ତ୍ରୟୋବିଂଶ ଅଧ୍ୟାୟ
## ଗଣପତି ଭଟ୍ଟ ସମ୍ବାଦ
### ଚୈତନ୍ୟ ଉବାଚ

ଚୈତନ୍ୟ ରାଜା ଶ୍ରଦ୍ଧାଭାବେ । କହଇ ମନ ରାଜା ଆଗେ ॥
ହେ ରାଜା ସାବଧାନେ ଶୁଣ । ଏ ଦାର୍ଢ୍ୟଭକ୍ତିର ଲକ୍ଷଣ ॥
କେବଳ ସୁଧାସମ ବାଣୀ । ପବିତ୍ର ହେବୁ ଯାହା ଶୁଣି ॥
ଉତ୍ତର ଖଣ୍ଡ କଥା ରସ । କର୍ଣ୍ଣାଟ ନାମେ ଏକ ଦେଶ ॥
ଦଇବେ ନଯୋଜନା ଦଣ୍ଡ । ସେ ଗ୍ରାମେ ଅଛେ ଜାଣିଥାଅ ॥
ସେ ଗ୍ରାମେ ଅଛେ ତାର ଘର । ଜାତିରେ ଅଟେ ଦ୍ୱିଜବର ॥
ନାମ ତା ଗଣପତି ଭଟ୍ଟ । ଭକତଗଣେ ସେ ଗରିଷ୍ଠ ॥
ନଳେ୍ଶ ଧର୍ମୀ କୃପାଳୁ । ନରତେ ପରମ ଦୟାଳୁ ॥
ସକଳ ଶାସ୍ତ୍ର ଅଛି ପଢ଼ି । ବିଷୟ ରସ ଦୂରେ ଏଡ଼ି ॥
ଇନ୍ଦ୍ରିୟଙ୍କୁ କରି ହତ । ମନକୁ କରଣ ଆୟତ୍ତ ॥
କେବଳ କୃଷ୍ଣ ପାଦେ ଭକ୍ତି । ଜନା ନ ଜାଣେ ଅନ୍ୟଗତି ॥
ଏମନ୍ତେ ତାର ମନ ଜାଣି । ଅନ୍ୟ ଦେବଙ୍କୁ ସେ ନ ଗଣି ॥
କେବଳ ଜଗନ୍ନାଥ ବ୍ରହ୍ମ । ସଂସାରେ ଶୁଭାଶୁଭ କର୍ମ ॥
ସୁର ଅସୁର ଦିଗପାଳ । କରି ସମାଧି ଆଖଣ୍ଡଳ ॥

ଟେମରୁ ବସୁଧା ପାରାବାର । ସ୍ଥାବର ଆଦି ଚରାଚର ।
ସବୁ କରନ୍ତି ଆତଯାତ । କେବଳ ଦେବ ଜଗନ୍ନାଥ ।
ତାହାଙ୍କ ପାଦେ ଆଶ୍ରେକରି । ପ୍ରାଣୀ 'ସଂସାରୁ ଯାନ୍ତି ତରି ।
ସେ ପରଂ ବ୍ରହ୍ମ କୃପାବନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ।
ଏମନ୍ତ ଭାବ ସେ ମନରେ । ବୁଲୁଣ ଥାଇ ନିରନ୍ତରେ ।
କାଳେ ଦେଖିବ ବ୍ରହ୍ମ ମୂର୍ତ୍ତି । ସ୍ଥୂଳ ସ୍ୱରୂପ ଥିବ ରସ୍ତି ।
ବର୍ଣ୍ଣିନେ ମୁକତି ଲଭିବ । ଯାତନା ପଥ ନ ଦେଖିବ ।
ଏମନ୍ତ ବସ୍ତୁଣ ମନେ । ଶାସ୍ତ୍ର ଖୋଜଇ ପ୍ରତିଦିନେ ।
କେତେହେଁ ଦିନର ଅନ୍ତରେ । ଖୋଜଲେ ବ୍ରହ୍ମ ପୁରାଣରେ ।
ସ୍ଥୂଳସ୍ୱରୂପ ଗୋଟି ଧରି । ବ୍ରହ୍ମ ଅଛନ୍ତି ନୀଳଗିରି ।
ତାଙ୍କୁ ଦେଖନ୍ତି ଯେହୁଁମାନେ । ମୁକତି ହୁଅନ୍ତି ବର୍ଣ୍ଣନେ ।
ନ ଗମେ ଯମ ଦରଶନ । ସକଳ ଶାସ୍ତ୍ରେ ଏ ପ୍ରମାଣ ॥
ଏମନ୍ତେ ପୁରାଣରେ ଶୁଣି । ବ୍ରାହ୍ମଣ ହୃଦପଦେ ଗଣି ।
ବୋଇଲା ଧିକ ଏ ସଂସାର । ଧିକ ଏ ମାୟାଜାଲ ମୋର ।
ଧିକ ଏ ଦାରସୁତ ଧନ । ଧିକ ଅଟଇ ଏ ଜୀବନ ।
ଏ ମର୍ତ୍ତ୍ୟପୁରେ ଦେହଧରି । ବ୍ରହ୍ମ ଅଛଇ ନୀଳଗିରି ।
ଆଜହୁଁ ଯାଏ ମୁଁ ନ ଜାଣେ । ଭ୍ରମୁଅଛଇ ଅକାରଣେ ।
ଯାହାକୁ ନୟନେ ଦେଖିଲେ । ଜୀବ ନସ୍ତାର ହୋଏ ଭଲେ ।
ଯେ ଗତାଗତ ପଥ ଜାଣି । ରହେ ବ୍ରହ୍ମର ଦେହେ ମିଶି ।
ସେ ବ୍ରହ୍ମ ସ୍ଥୂଳ ମୂର୍ତ୍ତିପଣେ । ମୁଁ ଏଥି ଥିବ ଅକାରଣେ ।
ଦାର ତନୟ ଧନ ଯେତେ । କେ ଯିବ ମୋହର ସଙ୍ଗତେ ।
କେହେ ସମର୍ଥ ଥିବାଯାଏ । ସବୁରି ବନ୍ଧୁ ହୋଇଥାଏ ।
ବୟସ ହେବ ଯେବେ ଶେଷ । ଦାର ପୁତ୍ରକୁ ହେବ ଦ୍ୱେଷ ।
ଆଜ କେ ଅଟଇ କାହାର । କେହ ତ ନୋହେ ଆପଣାର ।
ଏତେ ଭାବିଣ ତାର ଚିତ୍ତ । ବୋଇଲା ଯିବ ମୁଁ ଭରିତ ।
ସେ ବ୍ରହ୍ମ ବର୍ଣ୍ଣନ କରିବ । ହେଲେ ମୁଁ ମୁକତି ଲଭିବ ।

ଏ କଥା ଅଟେ ମୋର ମୂଳ । ବୋଲଇଣ କଲ ଅନୁକୂଳ ।
ହୋଇଣ ପରମ ସନ୍ତୋଷ । ଗୁଢ଼ ସଂସାର ଦେହ ଆଶ ।
ସେ ବ୍ରହ୍ମପୁରଣ ଧଇଲ । ବ୍ରହ୍ମ ସୁମନ୍ତ୍ର ବାହାଣଲ ।
କେତେହେଁ ମାସ କେତେଦିନ । ପଥରେ କଲଭ ଗମନ ।
ଭିକ୍ଷା ସେ ମାଗିଣ ଖାଅଇ । ନ ମିଳେ ଉପବାସେ ଥାଇ ।
କୋମଳ ପତ୍ର ଫଳମୂଳ । ନଗ୍ନ ପୋଖରୀ କୂପଜଳ ।
ପାନ କରଣ ଚଳଯାଏ । ମନରେ ଚିନ୍ତା ଯେ ନ ଥାଏ ।
ବ୍ରହ୍ମରେ ଲଗିଅଛି ଲୟ । ଏଣୁ ତା କଛୁ ନାହିଁ ଭୟ ।
ଏମନ୍ତେ କେତେଦିନ ପରେ । ପ୍ରବେଶ ଅଠର ନଳାରେ ।
ଯହିଁ ପ୍ରବେଶ କଲେ ପ୍ରାଣୀ । ଯମ ଦଣ୍ଡକୁ ଯାନ୍ତି ଜିଣି ।
ସେ ଦିବ୍ୟସ୍ଥାନ ଗୋଟି ଦେଖି । ଜନ୍ମିଲ ଭଲ ଚର୍ମଆଖି ।
ବସିଲ ନିଷ୍ଠଳ ଆସନେ । ବ୍ରହ୍ମଙ୍କୁ ଚିନ୍ତାକରି ମନେ ।
ଏଥି ଉତ୍ତରୁ କଥା ଶୁଣ । ପ୍ରଭୁଙ୍କ ବର୍ଣ୍ଣନ ସାରଣ ।
କ୍ଷେତ୍ର ଆସନ୍ତି ଜଣକେତେ । ଅଳଙ୍କାମାନ ଧରି ହସ୍ତେ ।
ଗୀତ ଗାଇଣ ରଙ୍ଗେ ହସି । ମିଳିଲେ ବିପ୍ର ପାଶେ ଆସି ।
ଦେଖିଣ ତାହାଙ୍କର ଦୃଷ୍ଟି । ପୃଚ୍ଛଇ ଗଣପତି ଇଷ୍ଟ ।
ଶୁଣ ପଥୁକୀ ଜନମାନେ । ଏଡ଼େ ଆନନ୍ଦ କମ୍ପାମନେ ।
କେଉଁଣଠାରୁ ଆସୁଅଛ । କହନ୍ତି ନାହିଁ ପାଇଅଛ ।
ସଂଶୟ ନ କରଣ ମନେ । କହସି ସ୍ୱରୂପ ବଚନେ ।
ଶୁଣି ପଥିକଜନ ଭନ୍ତି । ଶୁଣ ହେ ବିପ୍ରବର ଭୁବି ।
ଆମ୍ଭେ ଯେ ଶ୍ରୀମନ୍ଦିର କନ୍ଦରେ । ଯାଇଣ ଥିଲୁ ବର୍ଣ୍ଣନରେ ।
ତହିଁ ରହିଣ ପାଞ୍ଚଦିନ । ବ୍ରହ୍ମକୁ କରଣ ବର୍ଣ୍ଣନ ।
ମେଲାଣି ହୋଇ ଯେତ୍ଥାମତେ । ତେଣୁଟି ଆସୁ ଶ୍ରଦ୍ଧାଚିତ୍ତେ ।
ଦେଖ ଏ ପରମ ଦୁର୍ଲ୍ଲଭ । ଏଥି ଉତ୍ତରୁ କସ ଲଭ ।
ତା ଶୁଣି ବିପ୍ର ଆଚେମ୍ବିତ । କଣ୍ଠେ ରହି ସ୍ତମ୍ଭିତେ ।
ପୁଚ୍ଛଇ ପୁଣ ପୁଣ ତାଙ୍କୁ । ଦେଖିଲଟିକ ସେ ବ୍ରହ୍ମକୁ ।

ହେନ୍ତ ବୋଲଣ ଗଲେ ଚଳି । ବସିଣ ବିପ୍ର ତହିଁ ଭଳି ।
ବ୍ରହ୍ମ ଥିବାରୁ ଏଥେ ମଝ । ଦେଖିତ ଅଇଲେ ପ୍ରତ୍ୟେହ ।
ଯାହାର ଦର୍ଶନେ ମୁକତ । ଏ କର୍ମା ଲେଉଟି ଆସନ୍ତ ।
ବ୍ରହ୍ମଶାରେ ନ ମିଶିଲେ । ତେମନ୍ତେ ଲେଉଟି ଆସିଲେ ।
ଏମନ୍ତ ବିଚାରିଣ ମନେ । ଲୋକେ ଆସନ୍ତି ହୋଇଛନ୍ତେ ।
ମାରତେ ଯିବା ଆସ ବାର । ବନ୍ତେ ନ ଦେଖି ଅବସର ।
ପୁଛିଲେ ସେହି କଥାକହି । ଶୁଣି ସଂଶୟ ମନେ ଘାଇ ।
ପୁରାଣ ପିଣ୍ଟାଇ ତତ୍‌କ୍ଷଣେ । ଲେଉଟି ପଡ଼ିଲେ ଆପଣେ ।
ବ୍ରହ୍ମ ଅଛନ୍ତି ମାନଗିର । ପଢ଼ାଇ ପୁଣ ପୁଣ କରି ।
ବିପ୍ରର କର୍ମ ତା ହୁଜର । ନ ବୁଦ୍ଧି କରନ୍ତି ଏଥିର ।
ଏହି ପ୍ରସଙ୍ଗେ ଲେଖିଛନ୍ତି । ଲୋକେତ ଏମନ୍ତ ବୋଲନ୍ତି ।
ଏକ ସାକ୍ଷାତ କଥାଗୋଟି । ଏତ ପୁରାଣ ଗ୍ରନ୍ଥ ସୃଷ୍ଟି ।
ଏଥିକୁ କି ବୁଦ୍ଧି କରିବ । କେଣିକି ଯାଇ ନ ପାରିବ ।
ଖାଇବ କାଳକୂଟ ବିଷ । ଲଗିବ ଆତ୍ମହତ୍ୟା ଦୋଷ ।
ଏମନ୍ତ ବିପ୍ରରୁ ତା ମନ । ଜାଣିଲେ ପ୍ରଭୁ ଭଗବାନ ।
ସେ ସର୍ବ ଅନ୍ତର୍ଯ୍ୟାମୀ ହରି । ସକଳ ଘଟେ ଛନ୍ତି ପୂରି ।
ଭକତ ମନେ ଯାଇ ଘର । ତାହାକୁ କସ ଅଗୋଚର ।
ତତ୍‌କ୍ଷଣେ ଭକ୍ତ ମନ ଜାଣି । ବିଜୟ କଲେ ଚକ୍ରପାଣି ।
ବିପ୍ର ସ୍ୱରୂପ ଗୋଟି ହୋଇ । ମିଳିଲେ ବିପ୍ର ପାଶେ ଯାଇ ।
ଭୃତ୍ୟ ଯେ ବସିଅଛି ଦୁଃଖେ । ପ୍ରଭୁ ମିଳିଲେ ତାରପାଖେ ।
ପୃଚ୍ଛନ୍ତି ବିପ୍ରମୁଖ ଚାହିଁ । ହରଷେ ବ୍ରହ୍ମାଣ୍ଡ ଗୋସାଇଁ ।
କାହିଁ ଅଇଲେ ବିପ୍ରବର । କର୍ମା ବସିଛ ଏ ଠାବର ।
କହ କେଣିକି ଏବେ ଯିବ । କର୍ମାଇ ମନେ ଦୁଃଖଭାବ ।
ସଂଶୟ ନ ଧୋଇଣ ଚିତ୍ତେ । ହେ ବିପ୍ର କହ କିନା ମୋତେ ।
ପ୍ରଭୁ ଶ୍ରୀମୁଖେଁ ଏହା ଶୁଣି । ସେ ଗଣପତି ଭଟ୍ଟ ମଣି ।
ହେ ବିପ୍ର ପଚାରିଲ ଯେବେ । ଶ୍ରୁଣ କହିବା ଯଥା ଭାବେ ।

ଆମ୍ଭେ ଯେ ବ୍ରହ୍ମପୁରାଣରେ । ଶୁଣିଲୁ ଏମନ୍ତ ପ୍ରକାରେ ।
ବ୍ରହ୍ମ ବଚସ୍ତୁ ମାଳଗିର । ଦର୍ଶନମାତ୍ରେ ଦୁଃଖ ହର ।
ଏକଥା ଜାଣି ମୋର ମନେ । ଅଇଲି ବ୍ରହ୍ମଦରଶନେ ।
ଏବେ ଶୁଣିଲି ବ୍ରହ୍ମ ନାହିଁ । ଯେଣୁ ମୁଁ ଅଛୁ ଏଥେ ରହି ।
ତା ଶୁଣି ପ୍ରଭୁ ଭାବଗ୍ରାହୀ । କହନ୍ତି ଭକ୍ତ ମୁଖ ଚାହିଁ ।
ବ୍ରହ୍ମ ନାହାନ୍ତି ବୋଲି ଏଥେଁ । ତା ତୁମ୍ଭେ ଜାଣିଲ କେମନ୍ତେ ।
ବିପ୍ର ବୋଇଲେ ତାହା ଶୁଣି । ଶୁଣ ହେ ବିପ୍ର ଚୂଡ଼ାମଣି ।
ସେ ବ୍ରହ୍ମ ସ୍ୱରୂପେ ମିଶାଇ । ଜୀବ ଲେଉଟି ନ ଆସଇ ।
ତାହାଙ୍କୁ କରି ଦରଶନ । ଲେଉଟି ଆସୁଛନ୍ତି ଜନ ।
ଏହା ମୁଁ ଦେଖିଲି ପ୍ରତ୍ୟକ୍ଷ । ତେଣୁଟି ବ୍ରହ୍ମ ଥିବା ମିଛ ।
ତାହା ଶୁଣିଣ ବ୍ରହ୍ମଋଷି । ଅଳପ ମନେ ମନେ ହସି ।
ବୋଇଲେ ଶୁଣ ବିପ୍ରବର । ତୋ ମନେ ସଂଶୟ ନକର ।
ବ୍ରହ୍ମ ନ ଥିବା ଏ ପ୍ରମାଣ । ତାହା କହିବା ଏବେ ଶୁଣ ।
ସେ ଆମ୍ଭ କଳ୍ପତରୁ ହରି । ଯେ ଯାହା ମନେ ବାଞ୍ଛା କରି ।
ତାହାଙ୍କୁ ସେହିଫଳ ଦେଇ । ତେଣୁଟି ବାଞ୍ଛାନିଧି ସେହି ।
ଯେବଣ ପ୍ରାଣୀ ଏଥେ ଆସି । ଦର୍ଶନ କରେ ବ୍ରହ୍ମଋଷି ।
କଳ୍ପନା କରି ତାଙ୍କ ମନେ । ଲେଉଟି ଯିବାକୁ ସଦନେ ।
ତାହାଙ୍କୁ ଯଦ୍ୟପି ରଖିଲେ । କି ବାଞ୍ଛାନିଧି ବୋଲାଇଲେ ।
ଏଣୁ ଯେ ଯାହା କଳ୍ପି ଥାଇ । ତାହାକୁ ସେହି ଫଳ ଦେଇ ।।
ତୋଷନ୍ତି ପ୍ରଭୁ ମହାମେରୁ । ତେଣୁଟି ବାଞ୍ଛା କଳ୍ପତରୁ ।
ଯେବଣ ଲୋକ ମୁକ୍ତି ଅର୍ଥେ । ନିଶ୍ଚୟ ଆସିଥିବେ ଏଥେ ।
ତାହାଙ୍କୁ ମୁକ୍ତିପଥ ଦେବେ । ତୁ ବିପ୍ର ବେଗେ ଯାଅ ଏବେ ।
ମନେ ତୁ ସଂଶୟ ନ କର । ବ୍ରହ୍ମକୁ ଦରଶନ କର ।।
ଏମନ୍ତେ କହନ୍ତେ ହରି । ବିପ୍ର ଚଳିଲା ମାଳ ଚିରି ।
ପ୍ରବେଶ ହେଲା ସିଂହଦ୍ୱାରେ । ପତିତପାବନ ଛାମୁରେ ।
ବଇବ ଯୋଗେ ଯେହ୍ନେ ଦିନ । ହୋଇ ଅଛଇ ଦେବସ୍ନାନ ।

ଦେଉଳ ତେଜ ଦେବରାୟେ । ସ୍ନାନମଣ୍ଡପେ ବିଜୟେ ॥
ସ୍ନାହାନ କରିବା ନିମନ୍ତେ । ତଳାରେ ବିଜେ ଜଗନ୍ନାଥେ ॥
ଅଶେଷ ତୀର୍ଥ ଜଳ ଧରି । ସେବକେ ଜୟ ଜୟ କରି ॥
ବେଢ଼ି ଅଛନ୍ତି ଚଉପାଶେ । ପ୍ରଭୁଙ୍କ ଦେବାର୍ଚ୍ଚନେ ଆଶେ ॥
ସ୍ୱର୍ଗ ଦେବତାମାନେ ଆସି । ମାୟାରେ ନରଲୋକେ ମିଶି ॥
ବର୍ଣ୍ଣନ କରୁଛନ୍ତି ରହି । ଅନେକ ସ୍ତୁତିକ କହଇ ॥
ଏମନ୍ତ ବେଳେ ଗଣଭଟ୍ଟ । ମିଳିଲେ ପ୍ରଭୁଙ୍କ ନିକଟ ॥
ଦେଖିଲେ ଦାରୁବ୍ରହ୍ମ ମୂର୍ତ୍ତି । ମଣ୍ଡପେ ବିଜେ କରିଛନ୍ତି ॥
ନିରେଖି ଅନାଇଣ ଦେଲେ । ଗଜବଦନ ନ ଦେଖିଲେ ॥
ଥୋର ବଚନେ ମୁଖ ଶୂନ୍ୟ । ଦେଖି ବିସ୍ମର କଲା ମନ ॥
ଗଜବଦନ ନାହିଁ ଏଥେ । ବ୍ରହ୍ମ ନୁହଇ କଦାଚିତେ ॥
ଏମନ୍ତ ବୋଲି ଲେଉଟିଲା । ସେ ପ୍ରଭୁ ପାଦେ ନ ନମିଲା ॥
ଅତ୍ୟନ୍ତ ମନ ଦୁଃଖ ହୋଇ । ବାହୁଡ଼ି ଗଲାକ ପଳାଇ ॥
ଦେଖି ତାହାର କାର୍ଯ୍ୟମନ । କେବଳ ବ୍ରହ୍ମ ଗଜାନନ ॥
ବୋଲି ଜାଣଇ ତାର ମନେ । ଅନ୍ୟ ଦେବଙ୍କୁ ସେ ନ ଗଣେ ॥
ତେଣୁଟି ଲେଉଟିଣ ଗଲା । ମସ୍ତକେ ହସ୍ତହିଁ ନ ଦେଲା ॥
ଏଥିଉତ୍ତାରୁ ଶୁଣ ମନ । ସେ ଅନ୍ତର୍ଯ୍ୟାମୀ ନାରାୟଣ ॥
ଭକତଜନ ବାଞ୍ଛା ଜାଣି । ତକ୍ଷଣେ ଶଙ୍ଖ ଚକ୍ରପାଣି ॥
ମୁଦ୍ଗରଥ ଯେ ଗହଯାକେ । ଅନ୍ତର୍ଦ୍ଧେ ଥିଲେ ପ୍ରଭୁ ପାଖେ ॥
ତେଣୁଟି ନିଦ୍ରାଳସ ହୋଇ । ଜଗମୋହନ ଥିଲା ଶୋଇ ॥
ତାର ପାରୁଶେ ବିଜେ କଲେ । ସ୍ୱପନ ମାର୍ଗେ ଆଜ୍ଞା ଦେଲେ ॥
ବୋଇଲେ ଶୁଣ ମୁଦ୍ଗରଥ । ଉତ୍ତର ଦେଶୁ ମୋ ଭକତ ॥
ଆସିଣ ଅଛି ଅତି ତୋଷେ । ମୋହର ଦରଶନ ଆଶେ ॥
ତେଣୁ ମୋ ସ୍ଥାନକୁ ଅଇଲା । ମୋର ମୁଖଙ୍କୁ ଚାହିଁ ଦେଲା ॥
ଗଜବଦନ ମୋ ନ ଦେଖି । ମନରେ ହୋଇ ମହା ଦୁଃଖୀ ॥
ବାହୁଡ଼ି ଯାଉଅଛି ସେହି । ବେଗେ ତୁ ଘେନ ଆସ ଯାଇ ॥

ବୋଲବୁ କମ୍ପା ଯାଉବନ୍ତ । ବର୍ଣ୍ଣନ କର ବ୍ରହ୍ମଗିରି ॥
ନିଶ୍ଚଳ କରି ତୋ ନୟନ । ଯହିଁ ଦେଖିବୁ ଗଜାନନ ॥
ଏମନ୍ତ ବୋଲି ବେଦଆସ । ଅନ୍ତ ଚଳିଲେ ପୀତବାସ ॥
ସେ ମୁଦ୍ଗଲଋଷି ବେଗେ ଉଠି । ଭଜଣ ହରିନାମ ଗୋଟି ॥
ଧାଇଁଣ ଗଲ ଅତି ବେଗେ । ମିଳିଲେ ଗଣଭକ୍ତ ଆଗେ ॥
ବୋଇଲ ଶୁଣ ବିପ୍ର ଗୋଟି । କମ୍ପା ତୁ ଯାଉଛୁ ଲେଉଟି ॥
ବ୍ରହ୍ମଙ୍କୁ ଦର୍ଶନ କର । ବାଞ୍ଛା ସମ୍ପୂର୍ଣ୍ଣ ହେଉ ତୋର ॥
ଯେ ଚତୁର୍ବର୍ଗ ଫଳଦାତା । ଅଶେଷ ଜୀବର କରତା ॥
ଯେ ଚତୁର୍ବର୍ଗ ଫଳଦାତା । ଅଶେଷ ଜୀବର କରତା ॥
ଭକତଜନ ପ୍ରାଣବନ୍ଧୁ । ନାମ କରୁଣାମୟ ସିନ୍ଧୁ ॥
ଯେ ଯାହା ବାଞ୍ଛାକରେ ଚିତ୍ତେ । ତାହାକୁ ତାହା ଦେବା ଅର୍ଥେ ॥
ବଳସ୍ତୁ ସେହୁ ନୀଳଗିରି । ଶ୍ରୀଦାରୁବ୍ରହ୍ମ ରୂପଧରି ॥
ତାହାଙ୍କୁ ଦୃଢ଼ ମୂଢ଼ପଣେ । ଲେଉଟି ଯାଉ କ କାରଣେ ॥
ସେ ଗଣପତି ଭକ୍ତ ଶୁଣି । କ୍ରୋଧେ ବୋଲଇ କଟୁବାଣୀ ॥
ବ୍ରହ୍ମ ଅଛଇ କେଉଁଠାରେ । କମ୍ପାଇ ଭଣ୍ଡ ତୁ ମୋହରେ ॥
ଯାହାରେ ଗଜାନନ ନାହିଁ । ସେ ବ୍ରହ୍ମ ବୋଲାଇବ କାହିଁ ॥
ଶୁଣୁ ନ ଦେଖୁ ଯାହାଠାରେ । ବ୍ରହ୍ମ ନ ବୋଲୁ ଆମ୍ଭେ ତାରେ ॥
ଏଣୁ ତୁ ଯାଅ ହୋ ବାହୁଡ଼ି । ମୁକ୍ତିର ନାହିଁ ତୋତେ ଲେଢ଼ି ॥
ତୁ କମ୍ପା ଲେଉଟାଉ ମୋତେ । ଶୁଣି ବୋଇଲେ ମୁଦ୍ଗଲଋଷେ ॥
ଏବେ ତୁ ଗୁଢ଼ ମତିଭ୍ରମ । ସାକ୍ଷାତେ ଦେଖେ ଦାରୁବ୍ରହ୍ମ ॥
ନିଶ୍ଚଳ କରି ତୋ ନୟନ । ଯହିଁ ଦେଖିବେ ଗଜାନନ ॥
ଏଥେ ସଂଶୟ କିଛି ନାହିଁ । ବୋଲିଣ ନେଲ ଲେଉଟାଇ ॥
ବିପ୍ରବରନୁ ଏହା ଶୁଣି । ଆନନ୍ଦେ ଭକ୍ତ ଚୂଡ଼ାମଣି ॥
ଲେଉଟି ଗଲ ଅତି ତୋଷେ । ମିଳିଲ ଦାରୁବ୍ରହ୍ମ ପାଶେ ॥
ସକଳ ଦୁଃଖ ପରିହରି । ଚଞ୍ଚଳ ମନ ସ୍ଥିର କରି ॥
ସର୍ଣ୍ଣିକମସ୍ତ ଦିବ୍ୟଜ୍ଞାନେ । ରହିଲ ନିଶ୍ଚଳ ନୟନେ ॥
ଦେଖିଲ ପ୍ରଭୁ ଭଗବାନ । ହୋଇ ଅଛନ୍ତି ଗଜାନନ ॥

ଲମ୍ବି ଅଛଇ ଥୋର ହସ୍ତ । ଶୋଭା ବଶଇ ଏକଦନ୍ତ ॥
ଅଦ୍ଭୁତ ବିଶ୍ୱରୂପ ଧର । ଭୃତ୍ୟଙ୍କୁ ଡାକୁଛନ୍ତି ହର ॥
ତାହା ଶୁଣିଣ ମହାମତି । ବୋଲେ ନମସ୍ତେ ଗଣପତି ॥
ନମୋ ନମସ୍ତେ ଗଜାନନ । ନମସ୍ତେ କପିଳ ବଦନ ॥
ନମସ୍ତେ ଦାରୁ ବ୍ରହ୍ମରାଶି । ନମୋ ନମସ୍ତେ ବିଶ୍ୱବାସୀ ॥
ତବ ଦର୍ଶନେ ଦାରୁବ୍ରହ୍ମ । ଛୁଟିଲା ମୋର ମତିଭ୍ରମ ॥
ଲଭିଲୁ ପରମ କାରଣ । ଏବେ ଯା ମାଗୁଅଛୁ ଶୁଣ ॥
ଆଜଁ ଦେବ ସ୍ନାନ ଯାତ । ଯେବେ ହୋଇବ ଜଗନ୍ନାଥ ॥
କେବଳ ହସ୍ତୀ ବେଶ ହୋଇ । ଭଜେ କରିବ ଭାବଗ୍ରାହୀ ॥
ଏତେକ ମାତ୍ର ଅଙ୍ଗୀକରିଉ । ଏ କଥା ଯୁଗେ ଯୁଗେ ଥାଉ ॥
ଏତେକ କହି ପାଦେ ପଡ଼ି । ଉଠିଲେ ଶିରେ କର ଯୋଡ଼ି ॥
ବ୍ରହ୍ମସ୍ୱରୂପ କରି ଧ୍ୟାନ । ତକ୍ଷଣେ ଛାଡ଼ିଲା ଜୀବନ ॥
ଝଟକ ବିଦ୍ୟୁ ପ୍ରାୟେ ହିଶି । ବ୍ରହ୍ମ ଶରୀରେ ଗଲା ମିଶି ॥
ସମସ୍ତେ ଜୟ ଜୟ କଲେ । ପ୍ରଭୁଙ୍କ ସେବାରେ ଲାଗିଲେ ॥
ଦେଖ ଏ ପ୍ରଭୁଙ୍କ ମହିମା । ଯାହାକୁ ଭଜେ ବେଦବ୍ରହ୍ମା ॥
ଏଣୁ ଏ ଭକତ ଛଳରେ । ଏବେ ହୋ ହସ୍ତୀ ବେଶଧରେ ॥
ତେଣୁଟି ପ୍ରଭୁ ଭାବଗ୍ରାହୀ । ଭକତ ଜୀବନ ବୋଲାଇ ॥
ଦେଖି ସେ ଭକତଙ୍କ ହୃଦ । ଭାବେ ଲଭିଲେ ଏଡ଼େ ପଦ ॥
ଆନ କେ ଭାଜନ ହୋଇବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ॥
ଏଣୁ ସେ ସଂସାର ମଧ୍ୟେଣ । ପ୍ରଭୁ ଭକତ ବଡ଼ପଣ ॥
ଭକ୍ତଙ୍କୁ ନ କରିବ ସାନ । ଭକ୍ତ ହିଁଶିସୁ ଭଗବାନ ॥
ଶୁଣ ସୁମନ ହେଉ ଦେଇ । ଏ ଦାର୍ଢ୍ୟଭକ୍ତି ଅଟଇ ॥
ଏଥେ ନିର୍ମଳ ଯାର ହୃଦ । ନିଶ୍ଚେ ଲଭିବ ମୁକ୍ତି ପଦ ॥
ପଠନେ ଶ୍ରବଣେ ଯା ଆଶ । ସେ ପ୍ରାଣୀ ଯିବେ ସ୍ୱର୍ଗବାସ ॥
କହଇ ବିପ୍ର ରାମ ଦାସ । ସେ ଦାରୁବ୍ରହ୍ମ ପାଦେଆଶ ॥
ସାଧୁଜନଙ୍କ ପଦୁପାଦ । ମୋ ମନ ଭୃଙ୍ଗ କରେ ସାଧ ॥

ସୁଜନେ ଏହି ଭାବେ ଭାବ । ହେଲେ ସଂସାରୁ ତରିଯିବ ॥

· ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ
ଗଣପତିଭେଦେ ଦାର୍ଢ୍ୟଭାବ ମୋକ୍ଷଣେ
ନାମ ତ୍ରୟୋବିଂଶୋଽଧ୍ୟାୟଃ ।

—*—

## ଚତୁର୍ବିଂଶ ଅଧ୍ୟାୟ
## ଅନନ୍ତା ଶବର ସମ୍ବାଦ
### ମନ ଉବାଚ

ଅତି ଆନନ୍ଦ ମନ ରାଜା । ଚୈତନ୍ୟ ପାଦେ କଲେ ପୂଜା ॥
ବୋଇଲେ ଶୁଣ ବୀର ମଣି । ତୁମ ବଚନ ସୁଧାବାଣୀ ॥
ଶୁଣିଲି ଭକତଙ୍କ କଥା । ଛାଡ଼ିଲି ଭବ ଭୟବ୍ୟଥା ॥
ଏ ଭାବେ କରି ଦାନ ପୁଣ୍ୟ । ନାମଙ୍କି କରଣ ଭଜନ ॥
ତରଣ ଗଲେ ପ୍ରାଣୀମନେ । ଶୁଣିଲି ତୁମ୍ଭର ବଚନେ ॥
ଏ ଭାବେ ନାମ ଭଜିକରି । କେ ଏଠି ଯାଇଛନ୍ତି ତରି ॥
ଜାଣିଣ ଥିଲେ ମୋତେ କହ । ଶୁଣି ପବିତ୍ର ହେଉ ଦେହ ॥
କହେ ଚୈତନ୍ୟ ତାହା ଶୁଣି । ଶୁଣ ହେ ମନୁ ନୃପମଣି ॥
ତୁ ଯାହା କଲୁ ହେ ପ୍ରଶନ । କେ ତାହା କରିବ ଭଜନ ॥
ନାମର ଅଶେଷ ମହିମା । ଜାଣି ନ ପାରେ ବେଦବ୍ରହ୍ମା ॥
ଶେଷ ଅଶେଷ ମୁଖେ ଭଣି । ସେ ପୁଣି ନ ପାରିଲେ ଜାଣି ॥
ପଞ୍ଚ ଆନନେ ସେ ଧୂର୍ଜଟି । ନାମ ମହିମା ମୁଖେ ରଟି ॥
ସେ ଅବା ଜାଣିଛନ୍ତି କେତେ । ଅନ୍ୟ ନ ଜାଣେ କଦାଚିତେ ॥
ନାମର ଆଦି ଅନ୍ତ ନାହିଁ । ଅଳପ ବହୁତ ନୁହଇ ॥
ରୂପ ଅରୂପରୁ ବାହାର । ଏତେ ଅଲେଖ ଅଗୋଚର ॥
ସଭାରେ ଅଛି କାହିଁ ନାହିଁ । ମନ ଗୋଚର ଭେଦ କାହିଁ ॥
ସ୍ଥୁଳ ସୂକ୍ଷ୍ମରୁ ସେ ବାହାର । ଅଶେଷ ·ଲକ ଅଗୋଚର · ॥
ସେ ଯେ ଅନନ୍ତ ରୂପବଶି । କାହାରି ନୟନେ ନ ଦିଶି ॥

ତାହା କହିବା ସାଧ କାର । ଶୁଣ ହୋ ମନୁ ନୃପବର ॥
ଯେବଣ ରାମନାମ ଗୋଟି । ଭୁଷଣ୍ଡି ହୃଦେ କରି ଚିନ୍ତି ॥
କୋଟିଏ କୋଟି ଯୁଗ ଗଲେ । ଗୋଟିଏ ରୋମ ତାର ଢୁଳେ ॥
ରହିଲ ଅଜରମର ହୋଇ । ଏକା ଅକ୍ଷର ବ୍ରହ୍ମଧ୍ୟାୟି ॥
ଆବର କହୁଅଛୁ ଶୁଣ । ରାବଣ ଭାଇ ବିଭୀଷଣ ॥
ଭଜଣ ରାମ ନାମ ଗୋଟି । ହେଲେ ମରଣ ଗଲା କାଟି ॥
ପବନ ସୁତ ହନୁମାନ । ସେ ରାମ ନାମକୁ ଭଜନ ॥
ହେଲେ ତରିଲ ସିନ୍ଧୁ ବାରି । ଗୋଷ୍ପଦ ଜଳ ପ୍ରାୟେ କରି ॥
ହୋଇଲ ଅଜାମର କାୟେ । ଯାବତ ଚନ୍ଦ୍ର ସୂର୍ଯ୍ୟ ଥାଏ ॥
ଅନନ୍ତ ରାମ ନାମ ଧ୍ୟାୟି । ଧ୍ୟାରା ମଉଡ଼ି ଅଛୁ ବନ୍ଧି ॥
ବିଶେଷ ମୁନିବୃନ୍ଦ ଯେତେ । ସେ ନାମ ଭଜି ହୃଦଗତେ ॥
ସଂସାର ମାୟାରଜ୍ଜୁ କାଟି । ଜନ୍ମ ମରଣ ଗଲେ ମେଣ୍ଟି ॥
ଆବର କହୁଅଛୁ ତାତେ । ବ୍ରହ୍ମା ଇନ୍ଦ୍ରାଦି ସୁର ଯେତେ ॥
ଯକ୍ଷ ଗନ୍ଧର୍ବ ସେ କିନ୍ନର । ଚନ୍ଦ୍ର ବରୁଣ ଦିବାକର ॥
ପୃଥିବୀ ପବନ ଅନଳ । ଯେ ଅପସରା ଦିଗପାଳ ॥
ନର ଅସୁର ଆଦି ଯେତେ । ସ୍ୱରୂପ କହୁଅଛୁ ତୋତେ ॥
ସେ ନାମ ଭଜନ ନ କରି । ସଂସାରେ ନୋହିବ ଅଧିକାରୀ ॥
ଶ୍ରୀରାମ ନାମ ଆଶ୍ରା ବିନେ । ଜୀବ ଉଦ୍ଧାର ନ ହିଁ ଅନ୍ୟେ ॥
ଏ ନାମ ଅକ୍ଷର ଯୁଗଳ । ଅଶେଷ ପ୍ରାଣୀଙ୍କ ମଙ୍ଗଳ ॥
କଳି କଲ୍ମଷ ଅନ୍ଧକାର । ନାଶଇ ଚନ୍ଦ୍ର ଦିବାକର ॥
ଏ ନାମ ଭଜନର ବିନା । ଅନ୍ୟେକ ଧର୍ମ ଭ୍ରମ ସିନା ।
ତୁ ଯେ ବୋଲିଲୁ ଏ ସଂସାରେ । ଏ ଦେହ ନର ଗୁଣ୍ଡେ ଭଲେ ॥
ଅଭାବେ ନାମ ଭଜକରି । କେ ଅବା ଯାଉଛନ୍ତି ତରି ॥
ତାହା କହିବା ଏବେ ତୋତେ । କେବଳ ଶୁଣ ଶୁଦ୍ଧଚିତ୍ତେ ॥
ପୂର୍ବେ ହୋ ବିଷ୍ଣୁ ପୁରାଣରେ । ନାରଦ ମୁନିଙ୍କ ବାକ୍ୟରେ ॥
ଯାହା ମୁଁ ଶୁଣିଛି ଶ୍ରବଣେ । ତାହା କହିବା ଏବେ ଶୁଣ ॥

ଅନନ୍ତା ନାମେଣ ଶବର । ଶବର ପଲ୍ଲୀରେ ତା ଘର ॥
ଅଠାକାଣ୍ଡିଆ ବେଣ୍ଟକର । ପକ୍ଷୀ ଆଣଇ ନିତ୍ୟେ ମାରି ॥
କପୋତ ପାରୁଆ ଗୁଣ୍ଡୁରି । କାରି ଟେଗାବରି ଆଦିକରି ॥
ବକ ସାରସ ଯେ ଡାହୁକ । କାକ କୋକିଳ ଶାରୀ ଶୁକ ॥
ଏ ଆଦି ଯେତେ ପକ୍ଷୀମାନ । ମାରଇ ନିତ୍ୟ ପଶି ବନ ॥
ସେ ପକ୍ଷୀ ମାରେ ଘେନି ଆସେ । ବିକଇ ପୁର ଗ୍ରାମଦେଶେ ॥
ଯେ ଅବା ମୂଲ ତହିଁ ପାଇ । ପ୍ରାଣ ପୋଷଇ ତାହା ଖାଇ ॥
ଥୋକାଏ ପକ୍ଷୀମାଂସ କରି । ଭକ୍ଷଇ ସୁରା ସଙ୍ଗେ ଭରି ॥
ଏମନ୍ତେ ବଞ୍ଚିଥାଇ ଜନ । ନ ଜାଣେ ଅନ୍ୟ କଥାମାନ ॥
ଦାନ ଧର୍ମାଦି ବୋଲି ଯାହା । ଶ୍ରବଣେ ଶୁଣି ନାହିଁ ତାହା ॥
ଆବର ତପ ତୀର୍ଥ ଯେତେ । ତାହା ସେ ଜାଣିବ କେମନ୍ତେ ॥
ନାମ ଭଜନ କରିବାର । ସ୍ୱପନେ ନ ଜାଣେ ଶବର ॥
ଦେବ ବାହ୍ମଣ ସେ ନ ଜାଣେ । ବଞ୍ଚଇ ମୂର୍ଖ ମୂଢ଼ପଣେ ॥
ଏମନ୍ତେ କେତେଦିନ ଅନ୍ତେ । ଜନେକ ବୁଲନ୍ତେ ବନସ୍ତେ ॥
କାହାର ପୋଷା ଶୁଆଗୋଟି । ଲୁହା ଶାଙ୍କୋଳି ଅଣ୍ଟେ କାଟି ॥
ମନ୍ଦିରୁ ପଳାଇଣ ଆସି । ବୃକ୍ଷଉପରେ ଥିଲା ବସି ।
ସେ ପକ୍ଷୀ ଦେଖିଣ ଶବର । ସଧୀରେ କଡ଼ାଇ ପୟୂର ॥
ଧରିଲା ଅଠାଲଗା ହାତେ । ପକ୍ଷିକି ଲଗାଇ ତ୍ୱରିତେ ॥
ସେ ପକ୍ଷୀ ପ୍ରାଣର ବିକଳେ । ପଡ଼ିଲା ଶବର ହସ୍ତରେ ।
ବଦନେ ରାମ ନାମ ଭଣି । ଶବର କର୍ଣ୍ଣେ ତାହା ଶୁଣି ।
ଶୁଣ ସୁମନ ତୋଷମନେ । ପକ୍ଷୀକି ଆଣିଲା ବନ୍ଧନେ ॥
ଆଜ ବା କେତେ ପକ୍ଷୀ ମାରି । ଚଳିଣ ଗଲା ନିଜପୁରୀ ।
ସେ ଶୁଆ ଗୋଟି ଘେନିଗଲା । ଗ୍ରାମ ଦେଶରେ ବୁଲାଇଲା ॥
ଉତ୍ତମ ଲୋକ ମୁଖ ଚାହିଁ । ଅନନ୍ତା ଶବର ବୋଲଇ ॥
ଶୁଣ ହେ ଆଚମ୍ବିତ ବାଣୀ । ଏ ଶୁଆ ରାମନାମ ଭଣି ॥
ଏ ବଡ଼ ଆଚମ୍ବିତ କଥା । ଶୁଣି ଲାଗିଲା ମୋତେ ବ୍ୟଥା ॥

କେତେହେଁ ପକ୍ଷୀ ମୁଁ ମାଇଲି । ଏହାତ ଶ୍ରବଣେ ନ ଶୁଣିଲି ॥
ଏହି ସଂଶୟ ଫେଡ ମୋର । ସେ ଭଲଲୋକ କହେ ଗୀର ॥
ଏ କାହା ପୋଷା ଶୁଆଗୋଟି । ତେଣୁ ରାମ ନାମ ରଟି ॥
ଏମନ୍ତ ବୋଲି ଧନ ଦେଲା । ସେ ଶୁଆଗୋଟି କିଣିନେଲା ॥
ଶବର ଧନ ଘେନି ଚଳି । ନିଜ ଭୁବନେ ଯାଇ ମିଳି ॥
ଏମନ୍ତେ କେତେଦିନ ଗଲା । ଶବର ଜୀବନ ହାରିଲା ॥
ତକ୍ଷଣେ ମୃତ୍ୟୁକାଳ ଜାଣି । ଦୂତ ପେଷିଲା ଦଣ୍ଡପାଣି ॥
ସେ ଯମଦୂତମାନେ ଆସି । ଗଳେ ଲଗାଇ କାଳପାଶୀ ॥
ନିବନ୍ଧ କରିଣ ଧଇଲେ । ଅନେକ ମାଡ଼ହିଁ ମାଇଲେ ॥
ଧରିଣ ଘେନିଯାନ୍ତେ ପଥେ । ଆସି ମିଳିଲେ ବିଷ୍ଣୁ ଦୂତେ ॥
ଯମଦୂତଙ୍କୁ ହୋ ଭରେ । ବୋଇଲେ ଶୁଣରେ ପାମରେ ॥
ଏ ପୁଣ୍ୟ ଶବରକୁ କେଣେ । ବାନ୍ଧିଣ ଅଛୁ କି କାରଣେ ॥
ତୁମ୍ଭେ ବା କେଉଁ ପାପବଳେ । ପାଶ ଲଗାଇ ଏହା ଗଳେ ॥
ଝିଙ୍କି ନେଉଛ ଅନ୍ତରୀକ୍ଷେ । ଆମ୍ଭେ ତ ଦେଖିଛୁ ପ୍ରତ୍ୟକ୍ଷେ ॥
ସାମାନ୍ୟ ଭରସା ତୁମ୍ଭର । ବିଷ୍ଣୁ ଭକ୍ତକୁ ନାହିଁ ଡର ॥
ଏବେଟିରେ ପ୍ରାଣେ ଥିଲେ ଆଶ । ବେଗେ ଫିଟାଅ କାଳପାଶ ॥
ଛାଡ଼ିଣ ପଳାଅ ତ୍ୱରିତେ । ଶୁଣି ବୋଇଲେ ଯମଦୂତେ ॥
ଶୁଣ ହେ ବିଷ୍ଣୁ ଦୂତମାନେ । ଏହା ଯେ କହିଲ ବଚନେ ॥
ଏ ମହା ପାପିଷ୍ଠ ଚଣ୍ଡାଳ । ପାପ ଆଗ୍ରହେ ଗଲା କାଳ ॥
ଅନେକ ଜୀବହତ୍ୟା କରି । ଅଛି ଏ ପାପକୁ ନ ଡରି ॥
ପୁଣ୍ୟ ଏହାର ଲେଶ ନାହିଁ । ଏହାକୁ ଛାଡ଼ିବୁ କିପାଇଁ ॥
ଶୁଣି ବୋଲନ୍ତି ବିଷ୍ଣୁଚର । ଶୁଣ ହେ ଯମର କିଙ୍କର ॥
ନାମ ମହିମା ପ୍ରଭୁଙ୍କର । ଶୁଣିଲ ନାହିଁକି ତୁମ୍ଭର ॥
ହବେ ଅଶୁଚେ ଯେଉଁ ପ୍ରାଣୀ । ବଦନେ ରାମନାମ ଭଣି ॥
ଯେ ଅବା ଶୁଣିଥାଇ କର୍ଣ୍ଣେ । ନୋହିଲେ ଚିନ୍ତୁଥାଇ ମନେ ॥
ଅଶେଷ କୋଟି ଜନ୍ମଯାଏ । ଯେ ଯେବେ ପାପ କରିଥାଏ ॥

ଦଣ୍ଡକେ ହୋଇ ଭସ୍ମରାଶି । ସେହ୍ନ ସେ ବିଷ୍ଣୁଲୋକେ ବସି ॥
ତେଣୁଟି ଏ ପୁଣ୍ୟ ଶବର । ପାତକ ନାହିଁଟି ଏହାର ॥
ତେଣୁଟି ହେଲା ବିଷ୍ଣୁଦାସ । ବେଗେ ଫିଟାଅ କାଳପାଶ ॥
ବୋଲନ୍ତେ ମରିବ ସମସ୍ତେ । ରଖି ନ ପାରେ ଜନ୍ତୁନାଥେ ॥
ତା ଶୁଣି ଯମଗଣେ ଆସି । ଫିଟାଇ ଦେଲେ କାଳପାଶୀ ॥
ନମିଲେ ତାହାଙ୍କ ଚରଣ । ପଳାଇଗଲେ ତତକ୍ଷଣ ॥
ଭେଟିଲେ ଯମର ଅଗ୍ରତେ । ସବୁ କହିଲେ ବିଧିମତେ ॥
ଶୁଣ ହେ ଜନ୍ତୁଙ୍କର ନାଥ । ଆମ୍ଭେ ଦେଖିଲୁ ବିପରୀତ ॥
ମର୍ତ୍ତ୍ୟମଣ୍ଡଳେ ଦେହବନ୍ଧି । ଜାତିରେ ଶବର ଅଟଇ ॥
ଅନେକ ଜୀବହତ୍ୟା ତାର । ପାତକ କରିଛି ଅପାର ॥
କିଞ୍ଚିତ ପୁଣ୍ୟ ତାର ନାହିଁ । କେବଳ ଶୁଣ ଜନ୍ତୁସାଇଁ ॥
ଶୁଆ ମୁଖରୁ ରାମବାଣୀ । ଥରେ ତା କର୍ଣ୍ଣେ ଥିଲା ଶୁଣି ॥
ଏମନ୍ତେ ପାତକୀକୁ ଧରି । ଆଣୁ ଯେ ଥିଲୁ ବନ୍ଧକରି ॥
ତହିଁକି ବିଷ୍ଣୁଦୂତେ ଆସି । ଆମ୍ଭଙ୍କୁ ଅନେକ ଝିଙ୍ଗାସି ॥
ଫିଟାଇଦେଲେ କାଳପାଶୀ । ତାହାକୁ ନେଲେ ସ୍ୱର୍ଗବାସୀ ॥
ତେଣୁଟି ଆଇଲୁ ପଳାଇ । ଏ କଥା ବୁଝ ହେ ଗୋସାଇଁ ॥
ଯମ ନୃପତି ତାହା ଶୁଣି । ଦୂତଙ୍କ ମୁଖ ଚାହିଁ ଭଣି ॥
ବୋଇଲେ ଶୁଣ ଆରେ ମୂର୍ଖ । ଆଜ ଏ କଥା ମନେ ରଖ ॥
ଜାବେ ଅଜାବେ ଯେଉଁ ପ୍ରାଣୀ । କର୍ଣ୍ଣରେ ରାମ ନାମ ଶୁଣି ॥
କି ଅବା ମୁଖେ ଘୋଷୁଥିବ । ତାହାର ପାଖକୁ ନ ଯିବ ॥
ଯଦ୍ୟପି ଯିବ ତାର ପାଶ । ନିଶ୍ଚେ ମୋ ଯମପଣ ନାଶ ॥
ଆଉର କହୁଅଛୁ ତୋତେ । ଶୁଣିଣ ଥାଅରେ ସମସ୍ତେ ॥
ଯା ମୁଣ୍ଡେ ତୁଳସୀ ମଞ୍ଜରୀ । ତୁଣ୍ଡେ ନିର୍ମାଲ୍ୟ ଥିବ ଭରି ॥
ଗଳେ ତୁଳସୀମାଳ ଥିବ । ହୃଦେ ଶ୍ରୀରାମ ଜପୁଥିବ ॥
ଯେ ଅବା ସାଧୁଙ୍କ ସଙ୍ଗରେ । ସେ ସ୍ନାନ କରେ ଗଙ୍ଗାନୀରେ ॥
ଯେ ଅବା କରେ କ୍ଷେତ୍ରେ ବାସ । ଯେ କରିଥିବେ ହରି ବଶ ॥

ଯେ ଅବା ଗୁରୁପାଦଗତେ । ସେବା କରନ୍ତି ଅବିରତେ ॥
ଯେ ଅବା ଦେବା ଦୟାକରେ । କ ଅବା ପର ଉପକାରେ ॥
ଏମନ୍ତ ଲୋକଙ୍କର କତି । ଗଲେ ମୋ ସରିବ ସମ୍ପତ୍ତି ॥
ଏତେ ଭିଆରି ଜନୁଘରେ । ନଜଭୁବନେ କଲେ ବରେ ।
ଏବେ ହେ ଶୁଣ ଶୁଦ୍ଧମନେ । ସେ ଯେତେ ବଷ୍ଣୁ ଗଣମାନେ ॥
ଅନନ୍ତ ଶବରକୁ ଧରି । ଅନେକ ଅଳଙ୍କାର ଭରି ॥
ଦ୍ରବ୍ୟ ବସନ ପିନ୍ଧାଇଲେ । କୁସୁମ ଗନ୍ଧବାସ ଭୁଲେ ।
ରଥରେ ବସାଇଲେ ନେଇ । ଜୟ ଶବଦ ତୁଣ୍ଡେ ଗାଇ ।
ବଜାଇ ଜୟ କମ୍ବୁସ୍ୱନ । ରଥ ବାହିଲେ ଘନ ଘନ ।
ପୁଷ୍ପବିମାନେ ବସାଇଲେ । ବଷ୍ଣୁ ଲୋକକୁ ଘେନିଗଲେ ॥
ଶୁଣ ସୁମନ ଏ ଚରିତ । ନାମର ମହିମା ଏମନ୍ତ ।
କୋଟିଏ ଦାନ ପୁଣ୍ୟକରି । ନାମ ଗୋଟିଏ ନୋହେ ସରି ।
ଏଣୁ ତୁ ନାମ ଆଶ୍ରେ କରି । ଏଭବ ଜଳୁ ହୁଅ ପାରି ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣ ଅମୃତ ॥
କହଇ ବିପ୍ର ରାମଦାସ । ଶ୍ରୀରାମପଦେ ମୋର ଆଶ ॥
ଜାନକୀ ବଲ୍ଲଭ ଚରଣେ । ମେ ଚିତ୍ତ ରହୁ ଅନୁକ୍ଷଣେ ॥
ସେ ରାମ ନାମ ଗୋଟି ଚିତ୍ତେ । ନିରତେ ରହୁ ହୃଦଗତେ ॥
ଦଣ୍ଡେ ନ ଛାଡ଼ୁ ମୋର ମନ । ଏ ଆଜ୍ଞା କର ସାଧୁଜନ ।
ସୁଜନେ ନାମ ଆଶ୍ରେକରି । ଜନ୍ମ ମରଣକୁ ନ ଡରି ॥
ଏମନ୍ତ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲଗେ ପ୍ରମାଦ ॥
ଯେବଣ ପ୍ରାଣୀ ଏହା ହେଳେ । ଶ୍ରବଣ କରୁଛନ୍ତି ବେଳେ ॥
ନୋହିଲେ ନିର୍ମଳ ଭବରେ । ଟାପୁନ କରେ ଏକାଥରେ ।
ସକଳ କର୍ମେ ଯଶ ହେବ । ଗ୍ରହପୀଡ଼ାହିଁ ନ ଲାଗିବ ॥
ସକଳ ଚିନ୍ତା ହେବ କ୍ଷୟ । ଯେଣିକି ଗଲେ ହେବ ଜୟ ।
ନିଶ୍ଚେ ଯେ ଯିବ ସ୍ୱର୍ଗବାସ । ଯମ ଦଣ୍ଡକୁ ନାହିଁ ତ୍ରାଶ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ-ଚୈତନ୍ୟ ସମ୍ବାଦେ
ଅନନ୍ତ ଶୁକମୁଖୁ ରାମନାମ ଶ୍ରବଣେ ନାମ ଚତୁର୍ଦ୍ଦଂଶୋଽଧ୍ୟାୟଃ

# ପଞ୍ଚବିଂଶ ଅଧ୍ୟାୟ
## ମେଲଚ୍ଛ ସମ୍ବାଦ
### ଚୈତନ୍ୟ ଉବାଚ

ଚୈତନ୍ୟ ଦେବ ଅନ୍ତତୋଷେ । କହଇ ମନ ରାଜା ପାଶେ ॥
ଶୁଣ ସୁମନ ଶୁଦ୍ଧଭାବେ । ମୁଁ ଯାହା କହୁଅଛି ଏବେ ॥
ନାମର ମହିମା ଅପାର । ନାମଟି ସର୍ବ ଶାସ୍ତ୍ରେ ସାର ॥
ନାମଟି ଗତି ମୁକ୍ତିଦାତ । ନାମଟି ଜୀବର କରତା ॥
ନାମଟି ଠୁଳ ଶୂନ୍ୟ ମୟୀ । ତାହାକୁ ବ୍ରହ୍ମ ବୋଲି କହି ॥
ବ୍ରହ୍ମ ଓଁ କାର ଜାତ ହୋଇ । ତହୁଁ ଜନ୍ମିଲେ ମହାମାୟୀ ॥
ତାହାଙ୍କ ତହୁଁ ଅବତାର । ହୋଇଲେ ବ୍ରହ୍ମା ବିଷ୍ଣୁ ହର ॥
ତାହାର ତହୁଁ ଏ ସଂସାର । ଜନ୍ମିଲେ ଅପାରୁ ଅପାର ॥
ଅଣ୍ଡ ଯହିଁରୁ ବୀଜ ହୁଇ । ସେ ରଜ ଦୁରୂର୍ଯ୍ୟ ବୋଲାଇ ॥
ଏ ବୃତ୍ୟଖାନ ତ ଭିତର । ଦେଖାଏ ଜନ୍ମର ବେଭାର ॥
ଏଥିରେ ନାମ ମୂଳ ବୀଜ । ହେ ମନ ହେତୁକରି ବୁଝ ॥
ତେଣୁ ତୁ ନାମ ଆଶ୍ରାକର । ହେଲେ ତରିବୁ ଏ ସଂସାର ॥
ଆବର କହୁଅଛି ତୋତେ । ହେ ମନ ଶୁଣ ଶୁଦ୍ଧଚିତ୍ତେ ।
ଅପୂର୍ବ କଥା ରସାମୃତ । ଭୁଷଣ୍ଡି ପୁରାଣେ ଉକତ ॥
ବଶିଷ୍ଠ ମୁନିଙ୍କ ଆଗରେ । ଯେ ଯାହା ଭୁଷଣ୍ଡି ବାକ୍ୟରେ ॥
ଯାହା କହିଣଛନ୍ତି ତୋଷେ । ନାମର ମହିମା ବିଶେଷେ ॥
ଏହା ପୁରାଣେ ଅଛି ଶୁଣି । ଏ ମୋର ହୃଦପଦ୍ମେ ଗୁଣି ॥
ତାହା କହିବ ତୋତେ ଏବେ । ହେ ମନ ଶୁଣ ଶ୍ରଦ୍ଧାଭାବେ ॥
ପୂର୍ବେ ଯେ ମେଲଚ୍ଛ ଗୋଟାଏ । ଅଛନ୍ତି ଦୁରଗ୍ଧର କାସ୍ତେ ॥
ଜାତିରେ ଅଟଇ ପଠାଣ । ଅତି ପାପିଷ୍ଠ ମୂଢ଼ଜନ ॥
ଅନେକ ପାପ ଅଛି କରି । କୋଟି ସଂଖ୍ୟାରେ ଜନ୍ମମରି ॥
ଗୋବଧ କଲା ଅପ୍ରମିତେ । କେ ଅବା କହିବ ତା ଶତେ ॥
ବ୍ରହ୍ମହତ୍ୟାହିଁ ଅଛି କରି । ଅନେକ ପରସ୍ତ୍ରୀ ହରି ॥

ମେଷ ମହିଷି ଆଦି ଯେତେ । ଦେଖିଲେ ମାରଇ ତୁରତେ ॥
ସୁରା ତାହାକୁ ନ ମିଳିଲେ । ଭୋଜନ ନକରଇ ଭଲେ ॥
ଆବର ଶ୍ରୀଫଳ ପଥର । ନୟନେ ଦେଖିଲେ ସ୍ଥାବର ॥
ବୃକ୍ଷ ମୂଳରୁ ଯାଏ କାଟି । କୂପ ଭିତରେ ଭରେ ମାଟି ॥
ଦେଖିଲେ ମଣ୍ଡପ ଅଟ୍ଟାଳି । ଅନଳ ସଙ୍ଗେ ଦିଏ ଜାଳି ॥
ଶିବ ଲିଙ୍ଗକୁ ଦେଖି ଭାଙ୍ଗେ । ବିଷ୍ଣୁ ପ୍ରତିମା ଦେଖି ଗଞ୍ଜେ ॥
ଦେଖିଲେ ସାଧୁ ବ୍ରହ୍ମଚାରୀ । ପଛେ ଗୋଡ଼ାଇ ତାକୁ ମାରି ॥
ଉଚ୍ଛୁଡ଼ି ନଏ ପରଧନ । ଦୟା ନଥାଇ ତାର ମନ ॥
ଆଉ ଇତର ପାପ ଯେତେ । କହ୍ମା ଜିରବ ତାର ଚତେ ॥
ଏମନ୍ତ ଅସଦ ମାର୍ଗରେ । ଦିନ ବଞ୍ଚଇ ନିରନ୍ତରେ ॥
ଯେତେକ କଥା ଅମଙ୍ଗଳ । କେବଳ ତାର କର୍ମମୂଳ ॥
ଏମନ୍ତ ପାପୀ ଦିନକର । ଯାଇଣ ଅଛି ଦେଶାନ୍ତର ॥
ଦଇବ ଯୋଗେ ଆସି ଜ୍ୱର । ଘୋଟିଲା ତାର କଳେବର ॥
ଅନେକ ପୀଡ଼ା ସେ ପାଇଲା । ଭୋଜନ କଲେ ନରୁଚିଲା ॥
ଅତି ଦୁର୍ବଳ ହେଲା ଦେହୀ । ପାଶେ ତା ସାହା ସଖା ନାହିଁ ॥
ଗ୍ରାମ ବାହାରେ ଅଛି ପଡ଼ି । ଉର୍ଦ୍ଧ୍ୱ ନିଶ୍ୱାସ ଖରେ ଛାଡ଼ି ॥
ମଳ ବାହାରଣ ଗୁହ୍ୟରେ । ମାଛିଏ ବସିଲେ ତହିଁରେ ॥
ମରଣ କାଳ ଆସି ହେଲା । ନୟନ ବେନି ବୁଲାଇଲା ॥
ଏମନ୍ତ ସମୟରେ ତହିଁ । ଗ୍ରାମ ଶୂକର ଗୋଟି ଯାଇ ॥
କରୁ ଯେ ଥିଲା ଖଣ୍ଡେ ଦୂରେ । ଦୁର୍ଗନ୍ଧ ପାଇ ନାଶଦ୍ୱାରେ ॥
ଦେଖିଣ ଚଲା ଅତି ବେଗେ । ମିଳିଲା ପଠାଣର ଆଗେ ॥
ଯାଇଁ ରହିଲା ତାର ପାଶେ । ଗଜନ ଦୁର୍ଗନ୍ଧର ଆଶେ ॥
ତାହାକୁ ଦେଖି ସେ ମେଲଚ୍ଛ । ସେ ତାର ଭକ୍ଷଇ ଅଭକ୍ଷ ॥
ତେଣୁ ଅସୁଖ ଭାବ ହୋଇ । ହରାମ ବୋଲି ଗାଳିଦେଇ ॥
ପ୍ରାଣ ଛାଡ଼ିଲା ସେହୁ ଯେହ୍ନେ । ଦୂତେ ବେଢ଼ିଲେ ତତକ୍ଷଣେ ॥
ଗଳାରେ କାଳଫାଶ ଦେଲେ । ସେ ଯମଦୂତେ ଘେନିଗଲେ ॥

ଏମନ୍ତେ କିଛି ଦୂର ନୟନ୍ତେ । ଆସି ମିଳିଲେ ବିଷ୍ଣୁ ଦୂତେ ॥
ବିବିଧ ମାଡ଼ ତାଙ୍କୁ ମାରି । ସେ କାଳପାଶ ଦୂରକରି ॥
ମ୍ଳେଛଙ୍କୁ ଧରି ଘେନିଗଲେ । ଦେବ ବିମାନେ ବସାଇଲେ ॥
ଅନେକ ଜୟ ଜୟ କରି । ପୁଷ୍ପଅଞ୍ଜଳି ମାନ ଧରି ॥
ବୃଷ୍ଟି ଯେ କଲେ ତା ମଉଳି । ଦେଇ ଅନେକ ହୁଳହୁଳି ॥
ଆନନ୍ଦ ହେଉଛି ମେଦିନୀ । ବାଜଇ ଜୟ ଶଂଖଧ୍ୱନି ॥
ରଥ ବାହୁଣି ଗଲେ ଚଳି । ବିଷ୍ଣୁ ଲୋକରେ ଯାଇ ମିଳି ॥
ବିଷ୍ଣୁଙ୍କୁ ଦରଶନ କଲା । ଦେବଲୋକରେ ଗଣାହେଲା ॥
ଏଣେ ଯେ ଯମଦୂତମାନେ । ପଳାଇ ଗଲେ ଅଭିମାନେ ॥
କହିଲେ ଯମର ଅଗରେ । ହେ ରାଜା ବୁଝ ଧାଡିକାରେ ॥
ଆମ୍ଭେ ଦେଖିଲୁ ଯାହା ଆଜ । କହି ନୁହଇ ଜନ୍ତୁରାଜ ॥
କିମ୍ପାଇଁ ଦଣ୍ଡ ଛୁଟି ହେଲା । ଚୋର କି ଯମପଣ ଗଲା ॥
ଅତ୍ୟନ୍ତ ମହାପାପୀ ଜାଣ । ଜାତିରେ ଅଟଇ ପଠାଣ ।
ତାହାକୁ ଆଣିଥିଲୁ ଟେରି । ଆମ୍ଭଙ୍କୁ ବିଷ୍ଣୁଗଣେ ମାରି ॥
ପାପୀକି ଛଡ଼ାଇଣ ନେଲେ । ପୁଷ୍ପକ ରଥେ ବସାଇଲେ ॥
ଅନେକ ଜୟ ଜୟ ଡାକ । ଘେନିଣ ଗଲେ ବିଷ୍ଣୁଲୋକ ॥
ଏତ ବଡ଼ଇ ଆଚମ୍ବିତ । ବହନ ବୁଝ ଜନ୍ତୁନାଥ ॥
ଦୂତଙ୍କ ମୁଖରୁ ଶୁଣି । ସେ ମହାକାଳ ଦଣ୍ଡପାଣି ॥
ଭ୍ୱରିତେ ପେଷିଣ ଦୂତଙ୍କୁ । ପୁଛିଲେ ଚିତ୍ରଗୁପତଙ୍କୁ ॥
ବୁଝିଲେ ପାପ ପୁଣ୍ୟ କଥା । ସେ ମହାପାପୀର ବ ବସ୍ଥା ॥
ତାହା ଶୁଣିଣ ମନ୍ତ୍ରୀ ବେନି । ଯେ ପାପ ପୁଣ୍ୟ ପାଞ୍ଜି ଘେନି ॥
କହିଲେ ରାଜାର ଅଗ୍ରତେ । ମ୍ଳେଚ୍ଛ ପାତକ ଅଛି ଯେତେ ॥
ହେ ରାଜା ଶୁଣ ମନ ଦେଇ । ସେ ମହା ପାତକ ଅଟଇ ॥
ଏ ଜନ୍ମ ଛାଡ଼ି ଅନ୍ୟ ଦେଶେ । ପୁଣ୍ୟ ସେ କରିନାହିଁ ଲେଶ ॥
ଏତେ ନିଷ୍ଠୁର ପାପୀ ଜାଣ । ଜାତିରେ ଅଟଇ ପଠାଣ ॥
ଲେଖି ମୋ ପଣେ ଠାବ ନାହିଁ । ଅଧିକ କି କହିବି ମୁହିଁ ॥

ମାହକ ପଠାଣଙ୍କ ଜାତ । ଶୂକରେ ହରାମ ବୋଲନ୍ତ ॥
ତେଣୁ ଏ ମରିବାର ବେଳେ । ଘୁଷୁରି ଦେଖି ବେନଡୋଳେ ॥
ହରାମ ବୋଲି ଡକା ପଡ଼ି । ପିଣ୍ଡୁ ପରାଣ ଗଲା ଛାଡ଼ି ॥
ଏତେକ ବୋଲିଛି କେବଳ । ଆଉ ତା କଛିନାହିଁ ଫଳ ॥
ଏଥିକୁ ବୁଝ ହେ ରାଜନ । କେତେ ବାହେଲା ତାର ପୁଣ୍ୟ ॥
ତା ଶୁଣି ଧର୍ମରାଜ ବସି । ଧର୍ମସଭାକୁ କଲା ପୁଛା ॥
ବୁଝ ହେ ପାପପୁଣ୍ୟ ତାର । କେ ଊଣା ଅଧିକ ତାହାର ॥
ତା ଶୁଣି ଧର୍ମ ସଭାଜନେ । କହନ୍ତି ରାଜା ସନ୍ନିଧାନେ ॥
ଶୁଣ ହେ ଜନ୍ତୁଙ୍କର ନାଥ । ଆମ୍ଭେ ଯା କହୁଅଛୁ ସତ ॥
ତାହାର ଯେତେ ପାପରାଶି । ସମସ୍ତେ ହେଲେ ଭସ୍ମରାଶି ॥
ସୁକୃତ ବଢ଼ିଲା ତାହାର । ତୋହର ନାହିଁ ଅଧିକାର ॥
ତାଠାରେ ପ୍ରଭୁପଣ କଲେ । ସମସ୍ତେ ନାଶଯିବା ଭଲେ ॥
ସାକ୍ଷାତେ ରାମନାମ ତାର । ମୁଖରୁ ହୋଇଲା ବାହାର ॥
ହରାମ ଶବଦ ବୋଇଲା । ପିଣ୍ଡୁ ପରାଣ ଛାଡ଼ିଗଲା ॥
ପାତକ ହୋଇ ଥିର କେତେ । ବଗ୍ଭର କର ଶୁଦ୍ଧ ଚିତ୍ତେ ॥
ପାଞ୍ଚଶକୋଟି ବସୁନ୍ଧରା । ମେରୁ ସାଗର ଆଦିକର ॥
ସଂସାର ଗୁରୁଦ୍ରବ୍ୟ ଯେତେ । ଅପରେ ପୁଣ୍ୟ ଆଉ କେତେ ॥
ନକତ ହେବ ଯେବେ ତୁଳ । ପଡ଼ିବ ରାମନାମ ବଳ ॥
ତୁ କ ନଜାଣୁ ଦେବରାଜ । ଆମ୍ଭ ଖୋଜିବା କବା କାର୍ଯ୍ୟ ॥
ଶୁଣି ଆନନ୍ଦ ହେଲା ଯମ । ଭଜନ କଲା ରାମନାମ ॥
ଶୁଣି ସୁମନ ଶୁଦ୍ଧଚିତ୍ତେ । ନାମର ମହିମା ଟି ଏତେ ॥
ଏବେ ହୋ ଶୁଣ ମନ ଦିଏ । ତୋତେ ଯେ କହିବା କଥାଏ ॥
ସଂସାରେ ପ୍ରାଣୀମାନଙ୍କର । ଯମକୁ ସିନା ଏତେ ଡର ॥
କହିବା ତହିଁକ ଉପାୟ । ଯେମନ୍ତେ ନୋହିବଟି ଭୟ ॥
ହୋଇଣ କ୍ଷତ୍ରୀ ଅବତାର । ଯମ ସଙ୍ଗତେ ଯୁଦ୍ଧ କର ॥
ତହିଁକ ଶାସ୍ତ୍ରମାନ ଅଛି । ଆଗହୁଁ ରଖିଥାଅ ବାଛି ॥

କେଶ ବସନ ଆଦ୍ୟ ଯେତେ । ରକ୍ଷିଣ ଥାଅ ତୋ ଅଗ୍ରତେ ॥
ଯେ ନାମ ଭଜେ ଶଙ୍ଖଧର । ସେ ଅଟେ ବିଷମ ଶୋପର ॥
ତାହାକୁ ଶିରେ ଥିଲେ ଭର । ଶତ୍ରୁ ଦେଖିଣ ଭୟୂକର ॥
ଶ୍ୟାମ ସୁନ୍ଦର ମଳ ଗଳେ । ପକାଇ ଦିଅ ଜ୍ଞାବ ଖେଳେ ॥
ଶ୍ରୀବାସୁଦେବ ବାଜୁ ବନ୍ଧ । ଭୁଜରେ ଆଣିକରି ବନ୍ଧ ॥
ରଙ୍ଗ ଅଧରେ ରଙ୍ଗ ଗୁଣ୍ଡି । ସର୍ବାଙ୍ଗଯାକ ଥାଅ ମଣ୍ଡି ॥
ଶ୍ରୀକୃପା ସିନ୍ଧୁ ଯେ କୁମର । ମହିମା ଅତି ଅଗୋଚର ॥
ଆଣେ କଟିରେ ଥାଅ ଭିଡ଼ି । ନ ଯିବ ସଂଗ୍ରାମକୁ ଛାଡ଼ି ॥
ପରମ ନନ୍ଦ ପଞ୍ଚଗୋଟି ବ୍ରହ୍ମାଣ୍ଡ ଯାକ ଥିବ ଘୋଟି ॥
ବାମ ହସ୍ତରେ ତାହା ଧର । କେବଳ ଆଣିକରି ମାର ॥
କୃଷ୍ଣ କୃପାରୁ ଅତି ଗାଢ଼ । ତହିଁରୁ ଖଣ୍ଡା ନାହିଁ ଦାଢ଼ ॥
ହାଣିଲେ ମେରୁ ଛିଡ଼ିଯିବ । ଶତ୍ରୁ ଦେଖିଲେ ପଳାଇବ ॥
ତାହା ଦକ୍ଷିଣ କରେ ଧର । ଯମ ସଙ୍ଗରେ ଯୁଦ୍ଧ କର ॥
ସେ ଖଣ୍ଡା ଥିଲେ ତୋର କର । କି କରି ପାରେ ଯମ ଛାର ॥
ଆବର କହୁଅଛି ତୋତେ । ଧନର ବିଦ୍ୟାଅଛି ଯେତେ ॥
ଖୋଜିଣ ଚନ୍ଦ ତଉତନା । ଶିରେ ତୁ ବରଅଛୁ କନା ॥
କରୁଣାକର କର୍ଣ୍ଣତଳେ । ଖଞ୍ଜିଣ ଥାଅ କର୍ଣ୍ଣମୂଳେ ॥
ଶ୍ରୀ ପଦ୍ମନାଭ ଯେ ପଦକ । ହୃଦ ପଦ୍ମରେ ତାହା ରଖ ॥
ବ୍ରଜବିନୋଦ ଖାରବାନା । ବାହେ ବାହୁଟି କରେ କନା ॥
କାଳେନ୍ଦୀ କୂଳଆ କାଛେଣି । କଟିରେ ଭିଡ଼ିଥାଅ ପୁଣି ॥
ଶ୍ରୀ ଜନାର୍ଦ୍ଦନ ଧନୁ ଯେଟି । ଅଚଳାଚଳ ବଳ ସେଟି ॥
ଲଗାଅ ଗୁଣମଣି ପୁଣ । ଯେବଣ ନାମ ନାରାୟଣ ॥
ସେ ଧନୁ ଗୋଟି କରେ ଧରି । କୃଷ୍ଣ କଷେଣୀ ଥିବୁ ଧରି ॥
ଅନନ୍ତ ଅକ୍ଷୟ ତୂଣୀର । ବାମ ଡାହାଣେ ତାହା ଭର ॥
ମୁକୁନ୍ଦ ମନ ଭେଦୀ ଶର । ବସାଇ ଧନୁଗୁଣ ଭର ॥
ଆଣିକରିଣ ତାହା ସନ୍ଧି । ଯେତେ ପାରିଲେ ତେତେ ବାନ୍ଧି ॥

ନୃସିଂହ ନାମେ ଯେ ନାରାଚ । କୋଟିଏ ଅଗ୍ନି ପ୍ରାପୁ ତେଜ ॥
ଶ୍ରୀହରି ନାମେ ଯେଉଁ ଶର । ବିଷମ ମୂନ ଅଟେ ତାର ॥
ଗୋବିନ୍ଦ ନାମେ ଯେଉଁ କାଣ୍ଡ । ତେଜେ ଗଞ୍ଜଇ ମାରତଣ୍ଡ ॥
ସେ ଶର ମନ ଥିଲେ କରି । କି କରି ପାରେ ନାଶକରି ॥
ମଧ୍ୟରେ ବାନ୍ଧୁ ଯଥ ଲଭେ । ପୁରୁଷୋତ୍ତମ ପାପଘ୍ନବେ ॥
ଯେ ପୀତାମ୍ବର ପୀତ ମାଳ । ଅଙ୍ଗେ ଉହାଡ଼ ଥାଅ ତୋର ॥
ଉଙ୍କନାଶନ ଝାଲଗୋଟି । ଯତ୍ନେ ବେଢ଼ାଇ ଥାଅ ପିଠି ॥
କୃପା ସମୁଦ୍ର କଟାରୀକ । କଟି ସ୍ଥଳରେ ଥାଅ ରଖି ॥
ତ୍ରୈଲୋକ୍ୟ ନାଥ ଚକ୍ରଆର । ଜାଗ୍ରତେ କରେ ଥାଅ ଧରି ॥
ଶ୍ରୀ ବାସୁଦେବ ଯେ ବରଛି । ଦକ୍ଷିଣ କରେ ଥାଅ ରଖି ॥
ସେ ମହା ଷଣଶୀଳ ଛେଲ । ଗୋଟିଏ ଯମ ଦାଢ଼ ତୁଲ ॥
ରଖିଣଥିବୁ ଯେବେ କତ୍ତ । କି କରିପାରେ ଯମ ଖଣ୍ଡ ॥
ଏମନ୍ତ ହୋଇ ଯୁଦ୍ଧ କଲେ । ଯମ ପଳାଇ ଯିବ ଭଲେ ॥
ନୋହିଲେ ଏମନ୍ତ ତୁ କରି । ସ୍ୱବେ ବଳିଆ ରୂପ ଧରି ॥
ଶ୍ରୀ ବନମାଳୀ ନାମେ ନଳ । ଭୁଜେ ପାରିବୁ ଯେବେ ତୋଳ ॥
ଯେ ଦାରୁବ୍ରହ୍ମ ବାରୁଦଇଁ । ଗୋବିନ୍ଦ ଗୁଳାକୁ ପକାଇ ॥
ଗଜଉଦ୍ଧାର ଗଜକାଠି । ନଳରେ ଧରିଥାଅ ଯୋଖି ॥
ଶଙ୍ଖ ଆଡ଼କୁ ସଳଖିବୁ । ଗୁଡ଼ରେ ପକାଇ ରଖିବୁ ॥
ଶ୍ରୀ ମଧୁସୂଦନ ମାଛ୍ରକ । ମନ ନୟନ ଥିବୁ ରଖି ॥
ଯେ ରଘୁନାଥ ରଞ୍ଜକରେ । ଭରିବୁ ସେ ନଳ ରନ୍ଧ୍ରରେ ।
ଅନନ୍ତ ଅନଳ ଲଗାଇ । ଆଜହୁଁ ରଖିଥିବୁ ଭୁଞ୍ଜି ।
ଶ୍ରୀରାମ ମୁରାରି ଲକ୍ଷିବୁ । ନିର୍ଭୟ ହୋଇ ଏକାଥିବୁ ।
ଶ୍ରୀ ଜଗନ୍ନାଥ ନାମ ଗୋଟି । ଛୁଟିଲେ ମେରୁ ଯିବ ଫୁଟି ।
ଶବଦ ଶୁଣି ଜନ୍ତୁସାଇଁ । ପଡ଼ିବ ମୂର୍ଚ୍ଛାଗତ ହୋଇ ।
ଚେତନା ପାଇଣ ଉଠିଲେ । ପଛକୁ ନ ଚାହିଁବ ଭଲେ ।
ପୁରକୁ ତା'ର ପଳାଇବ । ଥିଲେ କି ଜୀବନ ପାଇବ ।

କହିଁଲେ ଷଟ୍ଟୀ ବଦ୍ୟାସାର । ତୋ ମନ ଯାହା ଇଚ୍ଛାକର ॥
ଆବର କହୁଅଛୁ ତୋତେ । ସଂସାର ବ୍ୟାଧି ଅଛୁ ଯେତେ ॥
ତହିଁକ ଉପାୟ ଯେ ଅଛୁ । ତାହା ତୋ ଆଗରେ କହୁଛୁ ॥
ସକଳ ମଉଷଧି ମୂଳ । ଯେ ପ୍ରଭୁନାମ ଆଦମୂଳ ॥
ପତିତ ପାବନ ପିପ୍‌ପଳ । ଯେତେ ବା ଖାଇବାକୁ ଭଲ ॥
ତେତେ ମାଷକ ବାଛୁ ଧର । ଶ୍ରୀକୃଷ୍ଣ ନାମେ ଶୁଣ୍ଠି କର ॥
ଗୋବନ୍ଦ ନାମରେ ମରଚ । ବଜ ବଡ଼ଙ୍ଗ ଖଣ୍ଡ ପାଞ୍ଚ ॥
ଯେ ଦୟାନଧି ଦେବଦାରୁ । ଖଣ୍ଡିଏ କର ତହିଁରୁ ॥
ଶ୍ରୀହର ଅଳାଇଚ କହୁ । ଯେଣିବ ଗୋଟି କେତେ ବାଛୁ ॥
ନୃସିଂହ ନାମୋନାଗେଶ୍ୱର । ତୋଳା ପ୍ରମାଣେ ତାହାକର ॥
ଶ୍ରୀ ରଘୁନାଥ ନାମ ସାର । ରସରେ ସେ ରସସିନ୍ଦୂର ॥
ଯେ ପୀତାମ୍ବର ପିତା କହୁ । ଘେନ ଏ ନବ ଦ୍ରବ୍ୟ ବାଛୁ ॥
ଶ୍ରୀ ବାସୁଦେବ କ୍ଷମାଶୀଳ । ରଖ ସମସ୍ତ ଏକ ଠୁଳ ॥
ଶ୍ରୀପତି ଶିଳାପୁଆ ଧର । ଗୋବନ୍ଦ ନାମେ ଗୁଣ୍ଡାକର ॥
ଅନନ୍ତ ଅଦାରସ ସଙ୍ଗେ । ଗୋବନ୍ଦ ଚେତଣ ଶ୍ରୀଅଙ୍ଗେ ॥
ମଧୁସୂଦନ ମହୁ କହୁ । ପରୀକ୍ଷା କରବ ତହିଁକ ॥
ଶ୍ରୀରାମ ସୁମର ପିଇବ । ଅଜର ଅମର ହୋଇବ ॥
କହିଲ ଯେବଣ ଔଷଧି । ଏଣେ ଖଣ୍ଡଇ ଭବବ୍ୟାଧି ॥
ଏଥେ ମିଶଇ ଚିତ୍ତ ଯାର । କ କର ପାରେ ବ୍ୟାଧି ଜ୍ୱର ॥
ଶୁଣ ସୁମନ ହେତୁ ଦେଇ । ଏଥେ ନର୍ମଳ ଚିତ୍ତ ହୋଇ ॥
ଯେବଣ ପ୍ରାଣୀ ଥିବ ଶିଖି । ହୃଦ ପଦ୍ମରେ ଥିବ ରଖି ॥
ସେ ଯେଣେ ଇଚ୍ଛା ତେଣେ ଯାଉ । କାହୁଁହିଁ ଭୟ ନାହିଁ ଆଉ ॥
ଘୋର ସଂଗ୍ରାମେ ରାଜଦ୍ୱାରେ । ବନ ଗହନ ବପିନରେ ॥
ଜଳ ପବନ ହୁତାଶନ । କ ଅବା ବଦେଶେ ଗମନ ॥
ପଶୁଙ୍କ ଖଳଦନ୍ତ ଘାତ । ଭୁଜଙ୍ଗ ବଷର ସହିତ ॥
ଖଣ୍ଡେ ଯେ ଚଉର୍ଯ୍ୟ ସହିତେ । ଗ୍ରହପୀଡ଼ାହିଁ ପ୍ରେତ ଯେତେ ॥

ଲାଗିବ ନାହିଁ ଏହୁ ଭୟ । ନଷ୍ଟେ ଏଥିରେ ଥିଲେ ଲୟ ॥
ପ୍ରଭୁଙ୍କ ନାମ ଯେବେ ସତ । ସ୍ୱରୂପ ଯେବେ ସାଧୁପଥ ॥
ମହିମା ଯେବେ ସତ୍ୟ ପୁଣ । ଏବେ ଏ କଥା ପରମାଣ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ପ୍ରାକୃତ ବନ୍ଧେ କଲୁଁ ଗୀତ ॥
ସଦା ସମ୍ପୂର୍ଣ୍ଣ ଜୟକର । ରାମଚରିତ ଧନୁର୍ଦ୍ଧାରି ॥
ଜାନକୀ ବଲ୍ଲଭ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ସୁଜନେ କ୍ଷମାକର ଦୋଷ । ମନରେ ନ ଘେନିବ ରୋଷ ॥
କେବଳ ନ କର ନିରାଶ । ମୁଁ ତୁମ ଦାସଙ୍କର ଦାସ ॥
ଏ ମୋର ହୀନ ମୂଢ଼ମତି । ନ ଜାଣେ ପାଠ ଶାସ୍ତ୍ର ଗତି ॥
ନ ବସେ ସାଧୁଙ୍କ ସଙ୍ଗତେ । ପାପକୁ ଭୟ ନାହିଁ ଚିତ୍ତେ ॥
ଦାମ୍ଭିକ ନାସ୍ତିକ କପଟୀ । ନିରତେ ବିଷୟ ଲମ୍ପଟୀ ॥
ଆସନ ଶୟନ ସ୍ୱପନେ । କେବଳ ଧ୍ୟାନ ଚିନ୍ତା ମନେ ॥
ନାରୀ ସଙ୍ଗମ ମହାସୁଖ । ଦେବା ଦୟାରେ ମୁଁ ବିମୁଖ ॥
ପରହିଂସ୍ରକ ବାଧା କ୍ରୋଧୀ । ସାଧୁ ସେବାରେ ନାହିଁ ବୁଦ୍ଧି ॥
ଯେ ମନ ମୋହର ଆୟତ୍ତେ । ରହିଲା ନାହିଁ କଦାଚିତେ ॥
ଏଣୁ ମୁଁ ସାଧୁଙ୍କ ଚରଣ । ଶରଣ ମାଗେ ଅନୁକ୍ଷଣ ॥
ସୁଜନେ ଏହି ଭାବେ ଭାବ । ଏ ଭବ ସଂସାରୁ ତରିବ ॥
ଏବଡ଼ ଅପୂର୍ବ ଚରିତ । ଶୁଣି ଶରଧା ଯାର ଚିତ୍ତ ॥
ତାର କଳୁଷ ଥିବ ଯେତେ । ରହିବ ନାହିଁ କଦାଚିତେ ॥
ଜୀବନ୍ତେ ଇନ୍ଦ୍ରଲୋକେ ବାସ । ମଲେ ବୈକୁଣ୍ଠପୁରେ ବାସ ॥
ଅପୁତ୍ରୀ ପୁତ୍ରକୁ ଲଭିବ । ଅନ୍ଧହିଁ ଲୋଚନ ପାଇବ ॥
ଏ କଥା ଅଟଇ ପ୍ରମାଣ । ସୁଜନେ ମନ ଦେଇ ଶୁଣ ॥
କହଇ ରାମଦାସ ଦ୍ୱିଜ । ବିଶ୍ୱାସ ଅଟେ ମୂଳବୀଜ ॥
ବିଶ୍ୱାସ ବିନା ଯେତେ କର୍ମ । ପର ଅପର ଗୃହାଶ୍ରମ ॥
ଏ ଦାର୍ଢ୍ୟଭକ୍ତି କଥାମାନ । ପଚିଶ ଅଧ୍ୟାରେ ସମ୍ପୂର୍ଣ୍ଣ ॥
ଶ୍ରୀ ବୀରକେଶ୍ୱରଦେବଙ୍କ । ସମ୍ପୂର୍ଣ୍ଣ ବୟାଳିଶ ଅଙ୍କ ॥

ସେ ଭୁଲ ପଞ୍ଚମୀ ଦିବସେ । ଶୁଦ୍ଧ ଶୁକଳ ପକ୍ଷରେ ସେ ॥
ଚିତ୍ରା ନକ୍ଷତ୍ର ରବିବାରେ । ଚତୁଷ୍ପଦା ନାମ କରଣରେ ॥
ଶୁଭ ନାମରେ ଯେଉଁ ଯୋଗ । ପଞ୍ଚାଶ ଦଣ୍ଡ ଥିଲା ଭୋଗ ॥
ଏମନ୍ତେ ଶୁଭ ଅନୁକୂଳେ । ପ୍ରାଣୀଙ୍କ ଶ୍ରବଣେ ମଙ୍ଗଳେ ॥
ସମ୍ପୂର୍ଣ୍ଣ ହେଲା ଏ ଚରିତ । କହଇ ଲକ୍ଷ୍ମଣ ସୁତ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ ମେଳଙ୍କ ହାଗ୍ରମ ଶବ୍ଦ ମୋକ୍ଷଣେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

———



ମୁଦ୍ରାକର—ଶ୍ରୀ ଆନନ୍ଦଚନ୍ଦ୍ର ସାହୁ, ବିମଳା ପ୍ରେସ, କଟକ-୨

# ରସାମୃତ

## ଦ୍ୱିତୀୟ ଖଣ୍ଡ



## ଷଡ଼ବିଂଶ ଅଧ୍ୟାୟ

## କୁଳଶିଖର ରଜା ସମ୍ବାଦ

ଚୈତନ୍ୟ ଉବାଚ

ନମୋ ଶାରଦା ଗଣନାଥ । ତୁମ୍ଭ ଚରଣେ ମୋର ମାଥ ॥
କହେ ଚୈତନ୍ୟ ଅଭିତୋଷେ । ସୁମନ ନୃପତିର ପାଶେ ॥
ହେ ରାଜା ହୁଅ ସାବଧାନ । କହିବି ଅପୂର୍ବ ବିଧାନ ॥
ପବିତ୍ର ଓଡ଼ିଶା ଖଣ୍ଡରେ । ଏକ ନୃପତି ରାଜ୍ୟ କରେ ॥
ସମସ୍ତ ରଜାଙ୍କ ଅଗ୍ରଣୀ । ନୃପତିପଣେ ତାଙ୍କୁ ଗଣି ॥
ନାମ ତା ଶ୍ରୀକୁଳଶିଖର । ବଡ଼ ପ୍ରତାପୀ ଦଣ୍ଡଧର ॥
ତେଜସ୍ୱୀ ପଣେ ଦିବାକର । ହୃଦୟ ଗମ୍ଭୀର ସାଗର ॥
ଧୈର୍ଯ୍ୟ ପଣେ ମହାମେରୁ । ଦାତାପଣରେ କଳ୍ପତରୁ ॥
ପଣ୍ଡିତ ପଣେ ବୃହସ୍ପତି । ସହିଷ୍ଣୁ ପଣେ ବସୁମତୀ ॥
ସୁନ୍ଦରପଣେ କାମଦେବ । ଛନ୍ଦିହୁ ପଣେ ସଦାଶିବ ॥
ଶୁଦ୍ଧ ବିବେକ ଶୁଚୀମନ୍ତ । ପାପକୁ ମହାଭୟ ଚିତ୍ତ ॥
ରାଜ ସମ୍ପଦ ଅପ୍ରମିତ । କୁବେର ସମ ଧନବନ୍ତ ॥
ଦୁଃଖୀ ଦରିଦ୍ର ଦୁଃଖ ହର । ପ୍ରଜା ପାଳଇ ପୁତ୍ରପରି ॥

ଦେବ ବ୍ରାହ୍ମଣେ ଅତି ପ୍ରିୟ । ଶ୍ରୀଗୁରୁ ପାଦେ ଭକ୍ତିମୟ ॥
ଯେ ରାଜା ଧର୍ମ ପରାୟଣ । ସେବଇ ଶ୍ରୀଗୁରୁ ଚରଣ ॥
ସାଧୁଙ୍କ ସେବା କରୁଥାଇ । ହରି ଚରଣେ ମନଦେଇ ॥
ଶ୍ରୀକୃଷ୍ଣ କଥା ବିନୁ ଆନ । ନ ଜାଣେ କେବେ ତାର ମନ ॥
ଶ୍ରୀହରି ଜନ୍ମରସ ପୁଣ । ନିରତେ ପଠନ ଶ୍ରବଣ ॥
ସର୍ବଦା କାଳେ ଶୁଚିମନ୍ତ । ସତ୍ୟ ବଚନ ଦୃଢ଼ମତ ॥
ଏମନ୍ତେ ରାଜା ଏକଦିନ । ବିଜୟେ ରତ୍ନ ସିଂହାସନ ॥
ସୈନ୍ୟ ଅଛନ୍ତି ପଛୁଆରି । ଗଜ ତୁରଙ୍ଗ ଆଦିକରି ॥
ସଭା ମନ୍ତ୍ରୀଙ୍କ ନୃପଗଣ । କରି ଅଛନ୍ତି ବେଢ଼ିରଣ ॥
ସାଧୁ ବୈଷ୍ଣବ ଆଦିକରି । ବିପ୍ର ସନ୍ନ୍ୟାସୀ ବ୍ରହ୍ମଚାରୀ ॥
ଦେଶୀ ବିଦେଶୀ ଏ ସଭାରେ । ସମସ୍ତ ଗୋଷ୍ଠି ଏକଠାରେ ॥
ଶ୍ରୀହରି ରସ କଥା ମାନ । କହୁ ଅଛନ୍ତି ସାଧୁଜନ ॥
ରାଜା ଶ୍ରବଣ ତାହା କରି । ଅଛନ୍ତି ଦେହ ବୁଦ୍ଧି ହାରି ॥
ଏମନ୍ତ ସମୟରେ କଥା । ଶୁଣ ସୁମନ ମହାରଥା ॥
ଶ୍ରୀଗୁରୁଦେବ ତାହାଙ୍କର । ବିଜୟ କଲେ ସେହିଠାର ॥
ଦେଖି ସେ ରାଜା ଅତିତୋଷେ । ମିଳିଲେ ଯାଇ ଗୁରୁପାଶେ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ି ହସ୍ତ ॥
ଅତି ବିନୟ ଭାବ ହୋଇ । ଗୁରୁଙ୍କୁ ଦିବ୍ୟାସନ ଦେଇ ॥
ଦେଖି ସେ ନୃପତିର ଭାବ । ଆସନେ ବସି ଗୁରୁଦେବ ॥
ରାଜାଙ୍କୁ ବସ ହୋ ବୋଇଲେ । ଶୁଣି ନୃପତି ବିଜେକଲେ ॥
ଶ୍ରୀ ଗୁରୁ ଆଜ୍ଞା ପାଇ ବସି । ପୁଣି ଶ୍ରୀହରି ଭାବେ ରସି ॥
ଏମନ୍ତ ବେଳେ ମାଛି ଗୋଟି । ଉଡ଼ି ସେ ଅଇଲା ଚହଟି ॥
ବସିଲା ରାଜାର କପାଳେ । ରୁଧିର ପିଏ କୁତୁହଳେ ॥
ରାଜା ଅସୁଖ ଭାବ ହୋଇ । ଶ୍ରୀହସ୍ତେ ଦେଲେକ ଉଡ଼ାଇ ॥
ଲଲାଟେ ଶ୍ରୀହସ୍ତ ବାଜିଲା । ମାଛି ତକ୍ଷଣେ ଉଡ଼ିଗଲା ॥
କପାଳୁ ଦଣ୍ଡବତ ଧୂଳି । ଝଡ଼ି ପଡ଼ିଲା ମହୀସ୍ଥଳି ॥

ତା ଦେଖି ଗୁରୁଦେବ ହସି । ମଥା ପୋଡ଼ଣ ମୌନେ ବସି ॥
ତାହା ଜାଣିଲେ ନୃପମଣି । ସେତ ବିବେକ ଚୂଡ଼ାମଣି ॥
ତକ୍ଷଣେ ଉଠି ଉଭାହୋଇ । ଜଣାନ୍ତ ଗଦ ଗଦ ହୋଇ ॥
ମୂର୍ଖ ମଳିନ କି ନିମନ୍ତେ । ଏକଥା ଆଜ୍ଞା ହେଉ ମୋତେ ॥
ତା ଶୁଣି ଗୁରୁଦେବ ଭଣି । ଶୁଣ ହେ ନୃପତି ଅଗ୍ରଣୀ ॥
ଯେ ଜନ ଶ୍ରୀଗୁରୁ ସମ୍ମୁଖରେ । ସାଷ୍ଟାଙ୍ଗେ ଦଣ୍ଡବତ କରେ ॥
ତା ଅଙ୍ଗେ ଲାଗେ ଯେତେ ଧୂଳି । ତେତେ ଜନ୍ମର ପାପ ଦଳି ॥
ସେ ଧୂଳି ଦେଖି ଯେଉଁ ନର । ହସ୍ତରେ ଝାଡ଼ି କରେ ଦୂର ॥
ତାର ପାତକ ହୁଏ କେତେ । ବିଚାର କର ହୃଦଗତେ ॥
ତୋର ସ୍ୱହସ୍ତ ବାଜିବାରୁ । ଧୂଳି ଝଡ଼ିଲା କପାଳରୁ ॥
ତେଣୁ ପୋଡ଼ିଲୁ ଆମ୍ଭେ ମଥା । ତୁ କି ନ ଜାଣୁ ମହାରଥା ॥
ଶୁଣି ନୃପତି କମ୍ପମାନ । ବଦନୁ ନ ସ୍ଫୁରେ ବଚନ ॥
ଶୋକେ ପୂରିତ କଳେବର । କମ୍ପଇ ରାଜାର ଅଧର ॥
ସଜଳ କରି ନେତ୍ର ଦୁଇ । ରହିଲେ ସ୍ତମ୍ଭୀଭୂତ ହୋଇ ॥
କେତେହେଁବେଳେ ଗୁହାଁଦେଲେ । ଗୁରୁଙ୍କୁ ପାଶେ ନ ଦେଖିଲେ ॥
ଉଭାରି ରାଜା ସଭା ମୁଖେ । ପୁଚ୍ଛିଲେ ଅତି ମନଦୁଃଖେ ॥
ହେ ମହା ସଭାଜନେ ଶୁଣ । ମୋ ପାପହୁଏ ଯା ପ୍ରମାଣ ॥
ଶ୍ରୀଗୁରୁ ଦ୍ରୋହ ଦୋଷ ମୋର । କେମନ୍ତେ ହେବ ଏବେ ଦୂର ॥
ଏଥକୁ ଦେଖି ଶାସ୍ତ୍ରପଥ । କିବା ଲେଖିଛି ପ୍ରାୟଶ୍ଚିତ୍ତ ॥
ନୋହିଲେ ମରିବି ଅବଶ୍ୟ । ଏ ରାଜପଦେ ନାହିଁ ଆଶ ॥
ତାହା ଶୁଣିଣ ବିପ୍ରଜନ । ଖୋଜି ସକଳ ଶାସ୍ତ୍ରମାନ ॥
ଶ୍ରୀଗୁରୁଦେବ ପଦ୍ଧତିରେ । ଦେଖିଲେ ଲେଖିଛି ତହିଁରେ ॥
ଅତଏବରେ କାଷ୍ଠା କଥା । କରି ଯେ ନୁହଇ ସର୍ବଥା ॥
ଏମନ୍ତ ଦେଖି ବୃଦ୍ଧଜନେ । ନ କହି ରହିଲେ ମଉନେ ॥
ତା ଶୁଣି ବୋଲେ ନୃପବର । ନ କହ କଥା ଗୋପ୍ୟକର ॥
ଏ ମୋର ପାପକ୍ଷୟ ଅର୍ଥେ । ସେବା ଲେଖିଛି ଶାସ୍ତ୍ରପଥେ ॥

ତାହା କରିବ ସତ୍ୟ ମୋର । ଏଥକୁ ସାକ୍ଷ୍ୟ ଦିବାକର ॥
ଏମନ୍ତ ଶୁଣି ବିପ୍ର ଭଲେ । ପ୍ରବନ୍ଧ ଫିଟାଇ ପଢ଼ିଲେ ॥
ହେ ରାଜା ଶୁଣ ସାବଧାନେ । ଗୁରୁ ଚରଣେ ଯେଉଁମାନେ ॥
ସାଷ୍ଟାଙ୍ଗେ ଦଣ୍ଡବତ କରି । ଗୁମୁରେ ରହନ୍ତି ଉଭରି ॥
ତା ଅଙ୍ଗେ ଥାଇ ରେଣୁ ଯେତେ । ତେତେ ଜନମ ପରିଯନ୍ତେ ॥
ସଞ୍ଚରି ଥାଇ ଯେ କଳୁଷ । ତକ୍ଷଣେ ହୋଏ ସବନାଶ ॥
ବଡିମାପଣେ ଯେଉଁମାନେ । ସେ ରେଣୁ ଝାଡ଼ନ୍ତି ଅଜ୍ଞାନେ ॥
ତାଙ୍କ ସୁକୃତ ଆଉ ନାହିଁ । କେବଳ କଥାଏ ଅଛଇ ॥
ଏମନ୍ତ କରି ଯେବେ ପାରି । ସେ ଗୁରୁଦ୍ରୋହ କଷ୍ଟ ତରି ॥
ତମ୍ବା ପଟାଏ ଗଢ଼ାଇବ । ଦ୍ୱାଦଶହାତ ଦୀର୍ଘ ହେବ ॥
ପ୍ରସ୍ଥ ଯେ ଛନହାତ ଜାଣ । ଚଉକେ ବହଳ ପ୍ରମାଣ ॥
ପୋତାଇ ତମ୍ବା ସ୍ତମ୍ଭଖମ୍ବ । ସେ ପଟା କରିଥିବ ଦମ୍ଭ ॥
ଅଙ୍ଗାର ଅଗ୍ନି ତଥି ତଳେ । ଦେଇଣ ମହାଯନ୍ତ୍ର ଜାଳେ ॥
ସେ ପଟା ତାତି ଅଗ୍ନିପ୍ରାୟ । ଦିଶିବ ଅତି ତୋରାମୟ ॥
ତହିଁରେ ଶତ ଅଷ୍ଟବାର । ପ୍ରଣାମ କରିବ ସେ ନର ॥
ତେବେତ ଗୁରୁଦ୍ରୋହ ଦୋଷ । ତା ଦେହୁ ହୋଇବ ବିନାଶ ॥
ନୋହିଲେ ଆନ ନାହିଁପାର । ଏହା ଲେଖିଛି ବେଦବର ॥
ଏମନ୍ତ ଶୁଣି ସେ ନରେନ୍ଦ୍ର । ମୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ଲୋମ ଉଦ୍‌ଗମ ଭାବ ବହି । ଆନନ୍ଦ କେ ପାରିବ କହି ॥
ହସି କହଇ ନୃପବଣି । ଏବେ ମୋ ହୋଇଲା କାରର୍ଣ୍ଣ ॥
ଏମନ୍ତ କହି ତାମ୍ବିଙ୍କୁ । ହକାରି ତୁରିତେ ପାଶକୁ ॥
ତମ୍ବା ଲେଖାଇ ଦେଲେ ଯେତେ । ପଟା ନିର୍ମାଅ ବିଧିମତେ ॥
ତାମ୍ବିମାନେ ଆଜ୍ଞା ପାଇ । ପଟାନିର୍ମାଣ କଲେ ଯାଇଁ ॥
ରଜା ଗୁମୁରେ ଦେଲେ ନେଇ । ଦେଖି ଆନନ୍ଦ ନରସାଇଁ ॥
ସୁଆସୀ ବଳକୁ ହକାରି । ଖମ୍ବ ପୋତାଇ ହର୍ଷ କରି ॥
ସେ ପଟା ଥାପି ସେହି ଖମ୍ବେ । ନିଷ୍ଟୁଳ କରି ମହାଦମ୍ଭେ ॥

ତଳେ ଅଙ୍ଗାର ଅଗ୍ନି ନେଇ । ଜାଳିଲେ ମହାଯନ୍ତ୍ର ତାଇ ॥
ପ୍ରବଳ ହୋଇ ଅଗ୍ନି ଗୋଷ୍ଠା । ଲଗି ପାଇଲା ତମ୍ବାପଟା ॥
ସେ ମହାଅଗ୍ନି ତେଜପାଇ । ପାଶେ ନ ପାରେ କେହି ରହି ॥
ଏମନ୍ତ ବେଳେ ସେ ରାଜନ । ତୀର୍ଥଜଳରେ କରି ସ୍ନାନ ॥
କଣ୍ଠ ହୃଦରେ ବେନି ଭୁଜେ । ଲଲାଟେ ତିଳକ ବିରାଜେ ॥
ମସ୍ତକେ ତୁଳସୀ ମଞ୍ଜରୀ । ଗଳାରେ ସେହି ମାଳାଭରି ॥
ପିନ୍ଧିଣ ଅମଳାନ ବାସ । କାଛେଣି ଯେହ୍ନେ ବୀରବେଶ ॥
ବିଭୂତି ବିଲେପନ କାୟେ । ଦିଶନ୍ତି ବ୍ରହ୍ମବେତ୍ତା ପ୍ରାୟେ ॥
ଶ୍ରୀମୁଖେ ନିର୍ମାଲ୍ୟ କୈବଲ୍ୟ । କରି ବିଜୟେ ମହୀପାଳ ॥
ଚଉଦିଗରେ ନର ନାରୀ । ବେଢ଼ିଣି ଶତେପୁର କରି ॥
ଅଛନ୍ତି ପାତ୍ର ଅମାତ୍ୟ । ବନ୍ଧୁ ବାନ୍ଧବ ଇଷ୍ଟମିତ୍ର ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବୈଷ୍ଣବ ଦୁର୍ଭିକ୍ଷ ଭିକାରୀ ॥
ବ୍ରହ୍ମ କ୍ଷତ୍ର ସୂ ଚାରିଜାତି । ଅପରେ କେତେ ଲୋକଛନ୍ତି ॥
ସ୍ତ୍ରୀ ସ୍ରୀ ପୁରୁଷ ଆଦିକରି । ଜନ ଗହଳେ ସୃଷ୍ଟିପୂରି ॥
ସଂସାରେ ପଡ଼ୁଅଛି ହୁରି । ଯେ ବାଳବୃଦ୍ଧ ଆଦିକରି ॥
ବାଦ୍ୟ ନିଶାଣ ମୁଖଗୋଳ । ମେଦିନୀ ହୁଏ ଟଳ ମଳ ॥
ଏମନ୍ତ ଦେଖି ସର୍ବଜନ । ବୋଲନ୍ତି ହେ ମହାରାଜନ ॥
ଏ କଥା କେବେହେଁ ନ କର । ବୃଥା ନ ନାଶ କଳେବର ॥
ଆମ୍ଭଙ୍କୁ ନ କର ଅନାଥ । ବୋଲି ମସ୍ତକେ ଦେଲେ ହସ୍ତ ॥
ତା ଶୁଣି ନୃପ ଚୂଡ଼ାମଣି । ବୋଲନ୍ତି ଶୁଣ ନରଶ୍ରେଣୀ ॥
କିମ୍ପାଇଁ ହୋଇବ ଅନାଥ । ସବୁରି ପ୍ରଭୁ ଜଗନ୍ନାଥ ॥
ମୋ ଜୀବ ଯିବାକୁ ସଂଶୟେ । ନ କର କାହାରି ହୃଦୟେ ॥
ଜନ୍ମ ଲଭିଲେ ନିଶ୍ଚେ ମରି । ମରଣ ଗୁରେ କିମ୍ପା ଡରି ॥
କିମ୍ପା ମୁଁ ଗୁରୁଦ୍ରୋହ ଦୋଷେ । ଗଞ୍ଜି ହୋଇବି ଯମପାଶେ ॥
ସ୍ଥାବର ଆଦି ଦେହ ବହି । ନିଷ୍ଫଳ ହୋଇ କେହି ନାହିଁ ॥
ଏ କଥା ନୁହଇ ଉଚିତ । ନୋହିବ ମୋର ଆନମତ ॥

ଯାଉ ବା ଥାଉ ଏ ଶରୀର । ଏହା ଜାଣନ୍ତୁ ଚକ୍ରଧର ॥
ତୁମ୍ଭେ ସମସ୍ତେ ବୋଲହରି । ବାଳକ ବୃଦ୍ଧ ଆଦିକରି ॥
ଏମନ୍ତେ କହୁ ଦଣ୍ଡଧାରୀ । ଚିନ୍ତିଲେ ନିଳାଦ୍ରି ବିହାରୀ ॥
ଜୟ ହେ ଶଙ୍ଖ ଚକ୍ରପାଣି । କମଳା ଦେବୀ ପ୍ରାଣମଣି ॥
ବ୍ରହ୍ମା ଇନ୍ଦ୍ରାଦି ଏ ଜଗତ । ଯାର ଆଜ୍ଞାରେ ଯାତାୟାତ ॥
ଶଶାଙ୍କ ରବି ଆଖଣ୍ଡଳ । ସେ ଆଦି ସର୍ବଦିଗପାଳ ॥
ମେରୁ ବସୁଧା ସିନ୍ଧୁ ବାରି । ଏ ନିତ୍ୟେ ଯାର ଆଜ୍ଞାକାରୀ ॥
ସୁର ମହେଶ ପୁରନ୍ଦର । ଯକ୍ଷ ରକ୍ଷସ ସେ କିନ୍ନର ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ଚିନ୍ତନ୍ତି ଯେ ହରି ଚରଣ ॥
ମୁଁ ଅବା ସାମାନ୍ୟ ମାନବ । କାହୁଁ ଜାଣିବ ତାଙ୍କ ଭାବ ॥
ହେ ପ୍ରଭୁ ତୁମ୍ଭେ ଆଦିମୂଳ । ସମସ୍ତେ ତୋର ପଦ ଡାଳ ॥
ଏଣୁ ତୋ ଅଭୟ ଚରଣ । ଆଜ ମୁଁ ପଶିଲ ଶରଣ ॥
ତୁ ନାଥ ବାଞ୍ଛା କଳ୍ପତରୁ । ମହାମହିମା ମହାମେରୁ ॥
ଜନ ଆରତ ଖଣ୍ଡିବାରେ । ତୋ ସମ ନାହିଁ ବ୍ରହ୍ମାଣ୍ଡରେ ॥
ଚିନ୍ତାର୍ଥି ଚିନ୍ତା ତୃଣବନ । ତୁ ଯେ ପ୍ରବଳ ହୁତାଶନ ॥
ବିପତ୍ତି ସାଗର ବିନାଶି । ତୁ ଯେ ଅଗସ୍ତି ମହାଋଷି ॥
ବିଷୟୀ ବିଷକୁ ଯେ ଗଦ । ତୋର ଅଭୟ ପଦ୍ମପାଦ ॥
ଭୃତ୍ୟ କୁମୁଦ ବନପାଳ । ତୁମ୍ଭେ ଯେ ଚନ୍ଦ୍ରମା ମଣ୍ଡଳ ॥
ଚିନ୍ତାର୍ଥିଜନ ଚିନ୍ତାମଣି । ଅଶେଷ ବ୍ରହ୍ମାଣ୍ଡ କାରେଣୀ ॥
ଏ ମୋ ଆରତ ନିବାରଣେ । ତୁମ୍ଭହୁଁ ନାହିଁ ଅନ୍ୟ ଜଣେ ॥
ଏ ମୋର ଅନଳ ଜ୍ୱାଳାରୁ । ଉଦ୍ଧରି ଧର ମହାମେରୁ ॥
ରଖ ନ ରଖ ତୁମ୍ଭ ଇଚ୍ଛା । ମୁଁ ଏବେ ଘେନିଲ ଏ ଦୀକ୍ଷା ॥
ଯାଉ ବା ଥାଉ ଏ ଶରୀର । ନ ଲାଗୁ ଗୁରୁଦ୍ରୋହ ମୋର ॥
ଏମନ୍ତ ବୋଲି ମହାବଳୀ । ମୁଖେ ରଟିଲେ ନାମାବଳୀ ॥
ଶ୍ରୀରାମ ଶ୍ରୀକୃଷ୍ଣ ଶ୍ରୀହରି । ମୁକୁନ୍ଦ ମାଧବ ମୁରାରି ॥
ଅଚ୍ୟୁତ ଅନନ୍ତ ଗୋବିନ୍ଦ । ଶ୍ୟାମସୁନ୍ଦର ସଦାନନ୍ଦ ॥

ବ୍ରଜସୁନ୍ଦର ବଂଶୀ ପାଣି । ରାଧାବଲ୍ଲଭ ପ୍ରାଣମଣି ॥
ଦୟାସାଗର ଦାଶରଥି । ଶ୍ରୀଧର ଶ୍ରୀକର ଶ୍ରୀପତି ॥
ଲକ୍ଷ୍ମୀନାୟକ ଚକ୍ରପାଣି । ସୀତାବଲ୍ଲଭ ରଘୁମଣି ॥
ହେ ବନମାଳୀ ହେ କଂସାରି । ଶ୍ୟାମସୁନ୍ଦର ଦଇତ୍ୟାରି ॥
ଶ୍ରୀବତ୍ସ ଲାଞ୍ଛନ କେଶବ । ଦୀନବାନ୍ଧବ ବାସୁଦେବ ॥
ଭବମୋଚନ ଭଗବାନ । ଜଗଜ୍ଜୀବନ ଜନାର୍ଦ୍ଦନ ॥
ଏମନ୍ତେ ନାମାବଳୀ ଗଣି । ମୁଖେ ଉଚ୍ଚାରେ ନରମଣି ॥
ହରି କଥନେ କର୍ଣ୍ଣ ଡେରି । ନୟନେ ହରିରୂପ ଧରି ॥
ହରି ସ୍ମରଣ କରି ହୃଦେ । ମନ ନବେଶି ହରିପାଦେ ॥
ଅନେକ କରି ପ୍ରଣମିତ । ରଜା ହରଷ କରି ଚିତ୍ତ ॥
ନମିଣ ଚନ୍ଦ୍ର ଦିବାକର । ଉଠିଲେ ପଟାରି ଉପର ॥
ଅନଳ ତେଜ ମହାବଳୀ । କଞ୍ଚା ଦାରୁହିଁ ଯିବ ଜଳି ॥
ତହିଁ ନୃପତି ଦଣ୍ଡବତ । କରି ଉଠିଲେ ସେ ତ୍ୱରିତ ॥
ପ୍ରବଳ ଅଗ୍ନି ଶିଖା ତହିଁ । ଜଳି ଉଠିଲା ରଜାଦେହୀ ॥
କର ଚରଣ ରଜା ମୁଣ୍ଡ । ଛୁଟି ହୋଇଲା ଖଣ୍ଡ ଖଣ୍ଡ ॥
ତହିଁ ରଜାର ନାହିଁ ଭୟ । ଚିତ୍ତେ ଚିନ୍ତଇ ଦେବଦ୍ୱୟ ॥
ପୁଣି କପୋଳେ କର ଦେଇ । ସାଷ୍ଟାଙ୍ଗେ ପାଦେ ପଡ଼ି ଶୋଇ ॥
ତାହା ଜାଣିଲେ ଆଦିମୂଳ । ଯେ ପ୍ରଭୁ ଭକତବତ୍ସଳ ॥
କରୁଣା କଲେ ଭାବଗ୍ରାହୀ । ଅନଳ ଜଳପ୍ରାୟ ହୋଇ ॥
ରଜା ଶ୍ରୀହଙ୍ଗ କଅଁଳିଲା । ପୋଡ଼ିଲା ଶୀତଳ ହୋଇଲା ॥
ଏମନ୍ତ ଦେଖି ସର୍ବଜନ । ଆକୁଳେ କରନ୍ତି ରୋଦନ ॥
ମସ୍ତକେ କରୁଛନ୍ତି କର । ବୋଇଲେ ଆହେ ନୃପବର ॥
ଆଉ କେ ଏ ରଜ୍ୟ ପାଳିବ । ଆମ୍ଭଙ୍କୁ ଛାଡ଼ିଲ ଦଇବ ॥
ଏମନ୍ତେ ବସୁଛନ୍ତି ଜନେ । ସେକ୍ଷଣି ଉଠିଲେ ରଜନେ ॥
ତେଜ ବିରଜମାନ କାୟେ । ଦିଶନ୍ତି ଦ୍ୱାଦଶ ସୂର୍ଯ୍ୟ ପ୍ରାୟେ ॥
ପୁଣି ମସ୍ତକେ ଦେଇ ହସ୍ତ । ଲେଉଟି କଲେ ଦଣ୍ଡବତ ॥

ପ୍ରବଳ ନଦୀଜଳେ ମିଳି । ହଂସ ଯେସନେ କରେ କେଳି ॥
ସେହି ପ୍ରକାରେ ପୁଣି ପୁଣି । କେଶରୀ ବଂଶ ନୃପମଣି ॥
ପୁଣି କରନ୍ତ ଦଣ୍ଡବତ । ତା ଦେଖି ଲୋକେ ଆଚମ୍ବିତ ॥
ଶିବ ପ୍ରତିମା ପ୍ରାପ୍ତ ହୋଇ । ସମସ୍ତେ ଅଛନ୍ତି ଅନାଇ ॥
ଛତିଶବାର ଏହିପରି । ସେ ରାଜା ଦଣ୍ଡବତ କରି ॥
ମେଦିଣୀ ହେଲା ଟଳମଳ । କମ୍ପିଲେ ଦଶଦିଗପାଳ ॥
ତାହା ଜାଣିଲେ ନରହରି । ବେଗେ ତେଜିଲେ ନୀଳଗିରି ॥
ଅତି ଅପୂର୍ବ ଶୋଭାକର । ବିଧାତା ନିର୍ମାଣୁ ବାହାର ॥
ଜଗନ୍ମୋହନ ରୂପଧର । ପଛା ପାରୁଶେ ବଜେକର ॥
ଶ୍ରୀକର ବଢ଼ାଇଣ ଦେଲେ । ରାଜାଙ୍କୁ ଝିଙ୍କି ପକାଇଲେ ॥
ବୋଇଲେ ରହିଲା ତୋ କୀର୍ତ୍ତି । ସଂସାର ମଧ୍ୟେ ହେ ନୃପତି ॥
ତୋହର ପରି ପୁଣ୍ୟବନ୍ତ । ନାହିଁ ନୋହିବ ଏ ଜଗତ ॥
ସକଳ ପାପୁ ହେଲୁ ପାର । ଲଭ ପରମଗତି ସାର ॥
ତା ଶୁଣି ରାଜା କରଯୋଡ଼ି । ବିପ୍ର ଚରଣ ତଳେ ପଡ଼ି ॥
ବୋଇଲେ ମୋତେ କହ ସତ୍ୟ । କେ ତୁମ୍ଭେ ଅଟ ହେ ପବିତ୍ର ॥
ଏ ମୋର ଚର୍ମଚକ୍ଷୁ ହୀନ । ତୁମ୍ଭଙ୍କୁ ନ ପାରିଲି ଚିହ୍ନି ॥
ଶୁଣି ବୋଲନ୍ତି ଭଗବାନ । ଉଠି ତୁ ଦେଖ ହେ ନୟନ ॥
ଯାହାକୁ ଚିନ୍ତୁଥିଲୁ ତୁହି । ନିଶ୍ଚୟ ଜାଣ ଆମ୍ଭେ ସେହି ॥
ଶୁଣି ନୃପତି ଉଭାହେଲେ । ନିର୍ମଳ ନେତ୍ରେ ଅନାଇଲେ ॥
ଦେଖିଲେ ଶଙ୍ଖଚକ୍ରଧାରୀ । ଗଦା ପଙ୍କଜ ଭୁଜ ଚାରି ॥
ଜଗନ୍ମୋହନ କୃପାସିନ୍ଧୁ । ଶରଣ ଜନଙ୍କର ବନ୍ଧୁ ॥
ଅଭୟ ବର ତାଙ୍କୁ ଦେଇ । ଅନ୍ତର ହେଲେ ଭାବଗ୍ରାହୀ ॥
ପ୍ରଭୁ ମାୟାରେ ନରଶ୍ରେଣୀ । ଏ ସର୍ବ ନ ପାରିଲେ ଜାଣି ॥
ଶୁଣ ହେ ମନୁ ନୃପଗଣ । ସେ ରାଜା ଭାଗ୍ୟବନ୍ତ ପୁଣ ॥
ସାକ୍ଷାତ ପ୍ରଭୁଙ୍କୁ ଦେଖିଲା । ସଂସାରେ କୀରତି ରଖିଲା ॥
ଅତି ଆନନ୍ଦେ ନରେଶ୍ୱର । ବିଜୟେ କଲେ ଧୀର ଧୀର ॥

